# ସାମନ୍ତ ଚନ୍ଦ୍ରଶେଖର

## ( ଜୀବନୀ )

ଶ୍ରୀ ଚନ୍ଦ୍ରଶେଖର ମିଶ୍ର

# Samanta Chandrasekhar

(*Life of Mahamahopadhyaya Samanta Chandrasekhar Sinha Harichandan Mahapatra*)

BY


Pandit—
Chandrasekhar Mishra Kavyatirtha.
*Hd. Pandit. Sambalpur Zila School.*


# ସାମନ୍ତ ଚନ୍ଦ୍ରଶେଖର

## ( ଜୀବନୀ )

ଲେଖକ


ପଣ୍ଡିତ ଶ୍ରୀ ଚନ୍ଦ୍ରଶେଖର ମିଶ୍ର କାବ୍ୟତୀର୍ଥ
ହେଡ୍‌ପଣ୍ଡିତ, ସମ୍ବଲପୁର ଜିଲ୍ଲା ସ୍କୁଲ ।


ମୂଲ୍ୟ ୦ ୧ ।୵ ଏକଟଙ୍କା ଛଅଅଣା ମାତ୍ର

# ଉତ୍ସର୍ଗପତ୍ର

ଦଶବର୍ଷବୟସ୍କ ମାଦୃଶ ଅଧମପୁତ୍ରର ହସ୍ତଦ୍ୱୟ ସ୍ୱର୍ଗାରୋହଣ ସମୟରେ ମଧ୍ୟ ଯହାଙ୍କ ପାଦସମ୍ବାହନରେ ନିୟୋଜିତ ହୋଇ ନ ଥିଲା, ମହାଙ୍କ ବାଲରୁପଲ୍ଲବଶତଃ ଯାହାଙ୍କର ତଦୋଗାତ୍ମନ କୋମଳ ଶାସନ ବଷବତ୍ ପ୍ରତୀୟମାନ ହେଉଥିଲା, ଚନ୍ଦ୍ରଶେଖର ସିଂହଙ୍କର ଅଜୀବନ ସୁହୃତ୍ ମୋହର ପରମାରାଧ୍ୟ ସେହି ପିତୃଦେବଙ୍କ ପବିତ୍ର ନାମରେ ଉଦାଗାତ୍ମନ ଅନୁବୁଦ୍ଧି ଜନିତ ଆନ୍ତରିକ ପିତୃଭକ୍ତିର ନିଦର୍ଶନ ସ୍ୱରୂପ ଏହି ଗ୍ରନ୍ଥ ଉତ୍ସୃଷ୍ଟ ହେଲା । ଇତି ।

ପ୍ରଣେତା

# ନିବେଦନ

ସାମନ୍ତ ଚନ୍ଦ୍ରଶେଖର ସିଂହଙ୍କର ସ୍ୱର୍ଗାରୋହଣ ସମୟଠାରୁ ତଦୀୟ ପୂର୍ଣ୍ଣ ଜୀବନବୃତ୍ତାନ୍ତ ଜାଣିବା ନିମନ୍ତେ ଉତ୍କଳବାସୀଙ୍କର ଆଗ୍ରହାତିଶୟ୍ୟ ଦୃଷ୍ଟ ହୋଇ ଆସୁଥିବାରୁ ତାହା ଲିପିବଦ୍ଧ କରି ପ୍ରକାଶ କରିବାକୁ କେତେକ ବନ୍ଧୁ ମୋତେ ଅନୁରୋଧ କରିଥିଲେ । କାରଣ ମୁଁ ସାମନ୍ତଙ୍କର ପ୍ରତିବେଶୀ । ତେଣୁ ମୁଁ ବ ୫ ର୍ଷ ପୂର୍ବରୁ ଉକ୍ତ ଜୀବନଚରିତ ସଂଗ୍ରହ କରିବାକୁ ଆରମ୍ଭ କରିଥିଲି । ମଦୀୟ ଆଳସ୍ୟବଶତଃ ସେହି ଉଦ୍‌ଯୋଗ କାର୍ଯ୍ୟରେ ପରିଣତ ହୋଇପାରୁ ନ ଥିଲା । ଇତିମଧ୍ୟରେ ଉତ୍କଳ-ସାହିତ୍ୟ-ସମାଜପକ୍ଷରୁ ଚନ୍ଦ୍ରଶେଖରଙ୍କର ଜୀବନ-ଚରିତ ସମ୍ବନ୍ଧୀୟ ପ୍ରବନ୍ଧ ଲେଖିବାକୁ ପୁରସ୍କାର ଘୋଷିତ ହେବାରୁ ମୁଁ ଉକ୍ତ ପ୍ରବନ୍ଧ ଲେଖି ଟ ୬୦ ୯ ପୁରସ୍କାର ଲାଭକଲି । ସେଥିରେ ମୁଁ ଉତ୍ସାହାନ୍ୱିତ ହେବାରୁ ସେହି ପ୍ରବନ୍ଧକୁ ପରିବର୍ଦ୍ଧିତ କରି ପୁସ୍ତକାକାରରେ ପ୍ରକାଶ କଲି । ସୁତରାଂ ସାହିତ୍ୟ ସମାଜ ନିକଟରେ ମୁଁ ଋଣୀ ।

ସାମନ୍ତଙ୍କର ଜୀବନବୃତ୍ତାନ୍ତ ସଂଗ୍ରହ ବିଷୟରେ ତଦୀୟ ମଧ୍ୟମ ପୁତ୍ର ମୋହର ଅନ୍ତରଙ୍ଗବନ୍ଧୁ ଶ୍ରୀଯୁକ୍ତ ଗଦାଧର ସିଂହ ସାମନ୍ତ ଏକମାତ୍ର ସମ୍ବଳ କହିଲେ ଅତ୍ୟୁକ୍ତି ହେବ ନାହିଁ । ତାହାଙ୍କର ସାହାଯ୍ୟ ବ୍ୟତିରେକେ ମୁଁ ଏବମ୍ବିଧ କାର୍ଯ୍ୟରେ କଦାପି ସମର୍ଥ ହୋଇପାରି ନ ଥାନ୍ତି । ତେଣୁ ତାହାଙ୍କ ନିକଟରେ ଚିରକୃତଜ୍ଞତା-ପାଶରେ ଆବଦ୍ଧ ହୋଇ ଭଗବଚ୍ଚରଣାରବିନ୍ଦରେ ତଦୀୟ ଦୀର୍ଘଜୀବନ ଓ ଯଶୋଲାଭ ପ୍ରାର୍ଥନା କରୁଅଛି । ମଦୀୟ ଯୌବନସଖା ସ୍ୱର୍ଗୀୟ ପଣ୍ଡିତ ମୃତ୍ୟୁଞ୍ଜୟ ରଥ ଚନ୍ଦ୍ରଶେଖରଙ୍କ ସମ୍ବନ୍ଧରେ କେତେକ ବିଷୟର ଆଭାସ ଦେଇ ମୋହର କୃତଜ୍ଞତା-ଭାଜନ ହୋଇ ଯାଇ ଅଛନ୍ତି । ମହାତ୍ମାଙ୍କ ପ୍ରଣୀତ ସିଦ୍ଧାନ୍ତ-

ଦର୍ପଣ ଗ୍ରନ୍ଥରୁ ସୂର୍ଯ୍ୟଙ୍କର ଭ୍ରମଣ ଓ ପୃଥିବୀର ସ୍ଥିରତା ସମ୍ବନ୍ଧୀୟ ଶ୍ଳୋକଗୁଡ଼ିକର ଅନୁବାଦୀକରଣ ବିଷୟରେ ମାନନୀୟ ପଣ୍ଡିତ ପଦ୍ମାକ୍ଷିତ ଦାଶ ଶର୍ମା ଏବଂ ମୋହର ସ୍ନେହାସ୍ପଦ ବନ୍ଧୁ ହରିହର ରଥ B. A. ଉକ୍ତ ଗ୍ରନ୍ଥର ଇଂରାଜୀ ମୁଖବନ୍ଧ ଉତ୍କଳ ଭାଷାରେ ଅନୁବାଦିତ କରି ଦେଇ ମୋତେ ସାହାଯ୍ୟ କରିଥିବାରୁ ସେ ଦୁହିଁଙ୍କ ନିକଟରେ ମୁଁ ବିଶେଷ କୃତଜ୍ଞ ।

ମୁଁ ସଂସ୍କୃତ ଭାଷାରେ ବତ୍ରିଶ ରାଜବଂଶାଖ୍ୟ ଗୋଟିଏ ଖଣ୍ଡକାବ୍ୟ ଏବଂ ଉତ୍କଳଭାଷାରେ ବାଳକାବନ୍ଧୁ ନାମକ ଖଣ୍ଡିଏ କ୍ଷୁଦ୍ର ପୁସ୍ତିକା ପଦ୍ୟାକାରରେ ରଚନା କରିଥିଲେହେଁ ଗଦ୍ୟାକାରରେ ଏହି ପୁସ୍ତକ ମୋହର ନବୋଦ୍ୟମପ୍ରସୂତ । ସୁତରାଂ ଏହା ଭ୍ରମପ୍ରମାଦପୂର୍ଣ୍ଣ ହେବା ସ୍ୱାଭାବିକ । ଅତଏବ ସଜ୍ଜନମାନଙ୍କର କ୍ଷମାସମ୍ପଦ ମୋହର ଏକମାତ୍ର ପ୍ରାପ୍ୟ ବୋଲି ଭରସା କରିଅଛି । ମୋହର ସାଧ୍ୟାନୁସାରେ ଜୀବନଚରିତର ଉପାଦାନଗୁଡ଼ିକ ବହୁ ଅନୁସନ୍ଧାନପୂର୍ବକ ଯଥାର୍ଥଭାବରେ ଲିପିବଦ୍ଧ କରିଅଛି । ମାତ୍ର ଜ୍ୟୋତିଷ ଶାସ୍ତ୍ରରେ ମୋହର ଅନଭିଜ୍ଞତାବଶତଃ ସଂସ୍କୃତ ଶ୍ଳୋକଗୁଡ଼ିକର ଅର୍ଥପ୍ରକାଶ ବିଷୟରେ ଯଦି କିଛି ତ୍ରୁଟି ଲକ୍ଷିତ ହୁଏ ତେବେ ସୁଧୀ ପାଠକବୃନ୍ଦ ସଦୟ ହୋଇ ତାହା ପ୍ରଦର୍ଶନ କରିଦେଲେ ପରବର୍ତ୍ତୀ ସଂସ୍କରଣରେ ତହିଁର ସଂଶୋଧନ କରି ଦେଇ ବିଶେଷ ଉପକୃତ ହେବି ।

ପରିଶେଷରେ ବକ୍ତବ୍ୟ ଏହି ଯେ ଚନ୍ଦ୍ରଶେଖର ସାମନ୍ତ ଜଣେ ଅସାଧାରଣ ହିନ୍ଦୁ ଥିବାରୁ ତାହାଙ୍କ ପବିତ୍ର ଜୀବନ-ଚରିତରେ ହିନ୍ଦୁ ଧର୍ମ-ସମ୍ବନ୍ଧୀୟ କେତେକ ବିଷୟର ଉଲ୍ଲେଖ କରିଅଛି । ତାହା ସମ୍ପ୍ରଦାୟୁଁ ବିଶେଷରେ ଅନାଦୃତ ହୋଇପାରେ । କିନ୍ତୁ ତାହାଙ୍କ ଆଦର୍ଶଜୀବନର କାର୍ଯ୍ୟାବଳୀ ପର୍ଯ୍ୟାଲୋଚନା କଲେ ଲୋକସାଧାରଣଙ୍କର ଯେ ଉଚ୍ଚଶିକ୍ଷା

ଲବ୍ଧ ହେବ ସେଥିରେ ସନ୍ଦେହର କୌଣସି କାରଣ ନାହିଁ । ସୁତରାଂ ପାଠକବର୍ଗଙ୍କ ସମୀପରେ ମୋହର ଏକମାତ୍ର ସାନୁନୟ ପ୍ରାର୍ଥନା ଯେ ସେମାନେ ସ୍ୱକୀୟ ବହୁମୂଲ୍ୟ ସମୟରୁ କିଛି ବ୍ୟୟ କରି ଏହି ପୁସ୍ତକଟି ଥରେ ଆମୂଳାନ୍ତ ସାଭିନିବେଶ ପାଠ କଲେ ମୋହର ଶ୍ରମ ସାର୍ଥକ ହେବ । ଇତି ।

ବିନୀତ
ଲେଖକ



# ସୂ ଚୀ ପ ତ୍ର



ବିଷୟ ପୃଷ୍ଠାଙ୍କ

## ପ୍ରଥମଭାଗ

| ବିଷୟ | ପୃଷ୍ଠା |
|---|---|


## ଦ୍ୱିତୀୟ ଭାଗ



## ତୃତୀୟ ଭାଗ







ମହାମହୋପାଧ୍ୟାୟ

୰ ସାମନ୍ତ ଚନ୍ଦ୍ରଶେଖର ସିଂହ ହରିଚନ୍ଦନ ମହାପାତ୍ର

# ସାମନ୍ତ ଚନ୍ଦ୍ରଶେଖର

## ପ୍ରଥମ ଭାଗ



### ଜୀବନ-ବୃତ୍ତାନ୍ତ

**ଉପକ୍ରମ**—ଏହି ଭାରତବର୍ଷରେ ଆର୍ଯ୍ୟ ଋଷିମାନଙ୍କର ପରବର୍ତ୍ତୀ ଯେଉଁସବୁ ଗଣିତ ଜ୍ୟୋତିର୍ବିତ୍ ମନୀଷୀଗଣ ଅବତୀର୍ଣ୍ଣ ହୋଇ ସ୍ୱୀୟ ଜ୍ଞାନାଲୋକରେ ପୃଥିବୀକୁ ଉଦ୍ଭାସିତ କରିଥିଲେ ସେମାନଙ୍କ ମଧ୍ୟରେ ବରାହମିହିର, ଭାସ୍କରାଚାର୍ଯ୍ୟ, ଆର୍ଯ୍ୟଭଟ୍ଟ, ବ୍ରହ୍ମଗୁପ୍ତ, ଗଣେଶ, ସୁଧାକର ଦ୍ୱିବେଦୀ, ଶତାନନ୍ଦ, କମଳାକର ଭଟ୍ଟ, ଲୁଠନାଚାର୍ଯ୍ୟ, ଲଲ୍ଲାଚାର୍ଯ୍ୟ, ବାପୁଦେବ ଶାସ୍ତ୍ରୀ ଓ ମାଧବ ମିଶ୍ର ପ୍ରଭୃତି ପ୍ରଧାନ । ସ୍ୱକୀୟ ଗ୍ରନ୍ଥର ଅପ୍ରକାଶବଶତଃ ଆଜି କେତେ ପଣ୍ଡିତଙ୍କର ନାମ ଯେ କାଳଗର୍ଭରେ ଲୀନ ହୋଇଅଛି ତାହା କିଏ କହିପାରେ ? ଉକ୍ତ ପଣ୍ଡିତମାନଙ୍କ ମଧ୍ୟରୁ କେହି କେହି ଏବଂ ଅନ୍ୟ କେତେକ ପଣ୍ଡିତ ମଧ୍ୟ ବହୁ ଫଳିତ ଜ୍ୟୋତିର୍ଗ୍ରନ୍ଥ ପ୍ରଣୟନ କରିଥିଲେ ।

ଯେଉଁ ଫଳିତ ଜ୍ୟୋତିଷର ଉପାସକ ବର୍ତ୍ତମାନ ଭାରତର ପ୍ରାୟ ପ୍ରତ୍ୟେକ ସହର ଓ ଗ୍ରାମରେ ଅବସ୍ଥାନ କରୁଅଛନ୍ତି ସେମାନଙ୍କର ଫଳିତ ଜ୍ୟୋତିଷ ସମ୍ବନ୍ଧୀୟ କୃତିମ ବିଜ୍ଞାନଦ୍ୱାରା ଗଣିତ ଜ୍ୟୋତିଷର ପ୍ରକୃତ ବିଜ୍ଞାନ ବିତାଡ଼ିତ ହୋଇଅଛି । ବାସ୍ତବିକ ଅନେକ ଲୋକ ଅଛନ୍ତି ସେମାନେ ବଂଶପ୍ରଭାବରେ ସିଦ୍ଧାନ୍ତର କେତେକ ଶ୍ଳୋକ ମୁଖସ୍ଥ କରିଅଛନ୍ତି ଏବଂ

ଲିଖିତ ତାଲିକା ସାହାଯ୍ୟରେ କେବଳ ପଞ୍ଜିକାର ଗଣନା କରିପାରନ୍ତି । ମାତ୍ର ଭାସ୍କରାଚାର୍ଯ୍ୟ କହିଅଛନ୍ତି ଯେ—

ଭୋଜ୍ୟଂ ଯଥା ସର୍ବରସଂ ବିନାଜ୍ୟଂ ରାଜ୍ୟଂ ଯଥା ରାଜବିବର୍ଜ୍ଜିତଞ୍ଚ ।
ସଭା ନ ଭାତୀବ ସୁବକ୍ତୃହୀନା ଗୋଲାନଭିଜ୍ଞୋ ଗଣକ ସ୍ତଥୈବ ॥

ଅର୍ଥାତ୍ ଗୋଳ ବା ନାକ୍ଷତ୍ରିକ ଜଗତର ଜ୍ଞାନବିହୀନ ଗଣକ ଘୃତହୀନ ଅନ୍ନ ତୁଲ୍ୟ, ରାଜଶୂନ୍ୟ ରାଜ୍ୟ ପରି ଓ ସୁବକ୍ତୃବର୍ଜ୍ଜିତ ସଭାର ସମାନ ଅଟନ୍ତି ।

ଗଣିତ ଜ୍ୟୋତିଷର ଆଲୋଚନା କରିବା ଯେଉଁମାନଙ୍କର କର୍ତ୍ତବ୍ୟ ସେମାନେ ତାହାକୁ ବିଜ୍ଞାନ ସଦୃଶ ଚର୍ଚ୍ଚା କରନ୍ତି ନାହିଁ । କେବଳ ସାଧାରଣର ଜ୍ଞାତବ୍ୟ କେତେକ ବିଷୟ ଶିକ୍ଷା କରନ୍ତି ଏବଂ କଳ୍ପ ଓ ଯୁଗର ରହସ୍ୟ ମଧ୍ୟରେ ପ୍ରବେଶ ନ କରି କ୍ୱଚିତ୍ ଆକାଶ ପର୍ଯ୍ୟବେକ୍ଷଣପୂର୍ବକ କେବଳ ଭବିଷ୍ୟତ୍ କଥନର ପ୍ରତାରଣା କରନ୍ତି । ଯେଉଁମାନଙ୍କର ଏହି ବିଜ୍ଞାନ ଚର୍ଚ୍ଚା କରିବାର ଅଭିଳାଷ ଅଛି ସେମାନେ ଅର୍ଥଶୂନ୍ୟ; ପୁନଶ୍ଚ ଯେଉଁମାନଙ୍କର ଅର୍ଥ ଅଛି ସେମାନଙ୍କର ଗ୍ରହ, ଉପଗ୍ରହ ପ୍ରଭୃତିର ଗତି ବିଧି ନିରୂପଣ କରିବା ନିମନ୍ତେ ଅଭିଳାଷ ନାହିଁ । ଇଦାନୀଂ ଇଂରାଜି କଲେଜର ଛାତ୍ରମାନେ ସମ୍ଭାବିତ ପ୍ରଶ୍ନସମୂହର ଉତ୍ତରଗୁଡ଼ିକ ମୁଖସ୍ଥ କରିବାରେ ବ୍ୟସ୍ତ ଏବଂ ଶିକ୍ଷକମାନେ ମଧ୍ୟ ଏତେ କାର୍ଯ୍ୟବ୍ୟସ୍ତ ଯେ ଦେଶର ଶିଳ୍ପ ଓ ବିଜ୍ଞାନର ପୁନରୁଦ୍ଧାର ସକାଶ ଚିନ୍ତା କରିବାକୁ ସେମାନଙ୍କର ଅବସର ନାହିଁ । ସେହି ହେତୁରୁ ଏହି ଗଣିତ ଜ୍ୟୋତିଷ ଅର୍ଦ୍ଧଶିକ୍ଷିତ, ଜ୍ୟୋତିଷ ଜାତୀୟ ବ୍ୟକ୍ତି ଓ ଭବିଷ୍ୟତ୍ ବକ୍ତାମାନଙ୍କ ହସ୍ତରେ ପତିତ ହେବା ଆଶ୍ଚର୍ଯ୍ୟର ବିଷୟ ନୁହେ ।

ସ୍ୱଦେଶ ବିଜ୍ଞାନର ଈଦୃଶ ଅବସ୍ଥାରେ ସର୍ବବିଧ ନୂତନ ଶିକ୍ଷାର ଓ ବିଦେଶାଗତ ପାଶ୍ଚାତ୍ୟ ସଭ୍ୟତାର ଦୂରରେ ରହି ଏବଂ ଉତ୍କଳର

ଅରଣ୍ୟାଚ୍ଛାଦିତ ପ୍ରଦେଶରେ ଜନ୍ମଗ୍ରହଣ କରି ଏପରି କଠିନ ଗଣିତ ବିଜ୍ଞାନର ଚର୍ଚ୍ଚାରେ କୃତିତ୍ୱ ଲାଭ କରିବା କେତେଦୂର ଆଶ୍ଚର୍ଯ୍ୟଜନକ ତାହା ସହଜରେ ଅନୁମେୟ । ଧୈର୍ଯ୍ୟାବଲମ୍ବନପୂର୍ବକ ସତ୍ୟାନୁସନ୍ଧାନ ଓ ଜ୍ଞାନୋପାର୍ଜ୍ଜନ ନିମିତ୍ତ କଠୋର ଅଧ୍ୟବସାୟଦ୍ୱାରା କଣ ହୋଇପାରେ ପାଠକବୃନ୍ଦ ତାହାର ଜ୍ୱଳନ୍ତ ଓ ଜୀବନ୍ତ ଉଦାହରଣ ଆଲୋଚ୍ୟ ଜୀବନ-ବୃତ୍ତାନ୍ତରୁ ସମ୍ୟକ୍ ଉପଲବ୍ଧି କରିପାରିବେ । ପୁନଶ୍ଚ କୌଣସି ବ୍ୟକ୍ତିଙ୍କର ମହତ୍ତ୍ୱ ବୁଝିବାକୁ ହେଲେ ତତ୍ପ୍ରଣୀତ ଗ୍ରନ୍ଥ ସଙ୍ଗରେ ତଦୀୟ ସମାନଧର୍ମୀ ଗ୍ରନ୍ଥଲେଖକଙ୍କର ଗ୍ରନ୍ଥମାନଙ୍କୁ ତୁଳନା କରିବା ବିଧେୟ । ବର୍ଣ୍ଣନୀୟ ମହାତ୍ମାଙ୍କର ପ୍ରକୃତ ମାହାତ୍ମ୍ୟ ବୁଝିବା ନିମିତ୍ତ ଅସ୍ମଦୀୟ ପ୍ରାଚୀନ ଗଣିତ ଜ୍ୟୋତିର୍ବେତ୍ତାମାନଙ୍କର ବିଷୟ ସଂକ୍ଷେପରେ ବର୍ଣ୍ଣନା କରୁଅଛୁ ।

ହିନ୍ଦୁ ଗଣିତ ଜ୍ୟୋତିଷ ବେଦପରି ପ୍ରାଚୀନ । ସୁତରାଂ ଇତିହାସର ମୂଳଭିତ୍ତି ସ୍ଥାପିତ ହେବା ଦିନଠାରୁ ଗ୍ରନ୍ଥକର୍ତ୍ତାମାନଙ୍କର ନାମ ଓ ବିଷୟ ଯଥାସମ୍ଭବ ଲକ୍ଷିତ ହେଉଅଛି । ଭାରତବର୍ଷରେ ପଞ୍ଚ ସିଦ୍ଧାନ୍ତର ନାମ ସାଧାରଣବିଦିତ ଅଟେ । ଯଥା—ସୂର୍ଯ୍ୟସିଦ୍ଧାନ୍ତ, ବ୍ରହ୍ମସିଦ୍ଧାନ୍ତ, ସୋମସିଦ୍ଧାନ୍ତ, ରୋମଶସିଦ୍ଧାନ୍ତ ଓ ଆର୍ଯ୍ୟସିଦ୍ଧାନ୍ତ । ସୂର୍ଯ୍ୟସିଦ୍ଧାନ୍ତ ଭିତରେ ଆଦି ସିଦ୍ଧାନ୍ତ । ତାହା ଆର୍ଷ ଏବଂ ସେଥିରେ ସ୍ୱୟଂ ସୂର୍ଯ୍ୟାଂଶ-ସମ୍ଭୂତ ପୁରୁଷ ମୟନାମକ ଦାନବକୁ ଉପଦେଶ ଦେଇଅଛନ୍ତି । ବ୍ରହ୍ମସିଦ୍ଧାନ୍ତ ବ୍ରହ୍ମାଙ୍କଦ୍ୱାରା ପ୍ରଣୀତ ଏବଂ ନାରଦଙ୍କଦ୍ୱାରା ପ୍ରକାଶିତ । ସୋମସିଦ୍ଧାନ୍ତ ଚନ୍ଦ୍ରଙ୍କକର୍ତ୍ତୃକ ପ୍ରଣୀତ ଏବଂ କୌଣସି ଋଷିଙ୍କଦ୍ୱାରା ପ୍ରକାଶିତ । ରୋମଶସିଦ୍ଧାନ୍ତ ରୋମଶ ଋଷିପ୍ରଣୀତ ଓ ତତ୍କର୍ତ୍ତୃକ ପ୍ରକାଶିତ । କେହି କେହି ତାହାକୁ ରୋମକସିଦ୍ଧାନ୍ତ ମଧ୍ୟ କହନ୍ତି । ଆର୍ଯ୍ୟସିଦ୍ଧାନ୍ତ ପ୍ରସିଦ୍ଧ ଆର୍ଯ୍ୟଭଟ୍ଟଙ୍କକର୍ତ୍ତୃକ ପ୍ରଣୀତ ଓ ପ୍ରକାଶିତ ହୋଇଅଛି ।

ପାଟଳୀପୁତ୍ର ବା କୁସୁମପୁରନିବାସୀ ପଣ୍ଡିତ ଆର୍ଯ୍ୟଭଟ୍ଟ ବ ୨୩ ବର୍ଷ ବୟସରେ ଶକାବ୍ଦ ୩୯୮ ବା ଖ୍ରୀଷ୍ଟାବ୍ଦ ୪୭୬ ରେ ତାଙ୍କର ପ୍ରସିଦ୍ଧ ଗ୍ରନ୍ଥ 'ଆର୍ଯ୍ୟସିଦ୍ଧାନ୍ତ' ରଚନା କରିଥିଲେ । ଏଥିରୁ ତାହାଙ୍କର ଆବିର୍ଭାବକାଳ ୫ମ ଶତାବ୍ଦୀ ଥିବା ସ୍ପଷ୍ଟ ପ୍ରମାଣିତ ହେଉଅଛି । ଭାରତରେ ସେ ପୃଥିବୀର ଆହ୍ନିକଗତିର ପ୍ରଥମ ପ୍ରବର୍ତ୍ତକ ହେଲେହେଁ ସ୍ୱୀୟ ମତକୁ ଦୃଢ଼ଭିତ୍ତି ଉପରେ ସ୍ଥାପନ କରିବାକୁ ଅପାରଗ ହେବାରୁ ଜନସାଧାରଣରେ ଅପମାନିତ ହୋଇଥିଲେ । ମାତ୍ର ସେ ସ୍ୱକୀୟ ଗ୍ରନ୍ଥରେ ସମୀକରଣର ପ୍ରମାଣ କରିବାକୁ ଚେଷ୍ଟା କରି କୃତକାର୍ଯ୍ୟ ହୋଇଅଛନ୍ତି ଏବଂ ଅନୁମାନଦ୍ୱାରା ପ୍ରାଚୀନ ଗଣିତ ଜ୍ୟୋତିଷର ଉନ୍ନତି ସାଧନ କରି ଓ ପ୍ରଥମ ପର୍ଯ୍ୟବେକ୍ଷଣକାରୀ ହୋଇ ସେ ବିଶେଷ ଗୌରବ ଉପାର୍ଜନ କରିଯାଇଅଛନ୍ତି ।

ବିକ୍ରମାଦିତ୍ୟଙ୍କ ସଭାର ନବରତ୍ନଙ୍କ ମଧ୍ୟରୁ ଅନ୍ୟତମ ପଣ୍ଡିତ ଅବନ୍ତୀ ବା ଉଜ୍ଜୟିନୀନିବାସୀ ବରାହମିହିର ବୃହତ୍‌ସଂହିତା, ପଞ୍ଚସିଦ୍ଧାନ୍ତିକା ପ୍ରଭୃତି ଗ୍ରନ୍ଥ ପ୍ରଣୟନ କରିଥିଲେ । ତାହାଙ୍କ 'ପଞ୍ଚସିଦ୍ଧାନ୍ତିକା' ଶକାବ୍ଦ ୪୨୭ ବା ଖ୍ରୀଷ୍ଟାବ୍ଦ ୫୦୫ରେ ରଚିତ ହୋଇଥିଲା । ସୁତରାଂ ସେ ପଞ୍ଚମ ଶତାବ୍ଦୀ ମଧ୍ୟରେ ଜନ୍ମଗ୍ରହଣ କରିଥିଲେ । ସ୍ୱକୀୟ ନିଖିଳ ଶାସ୍ତ୍ର-କୁଶଳତା ତାହାଙ୍କୁ ଗୌରବାନ୍ୱିତ କରିଥିଲା । ମୌଳିକ ଲେଖକଭାବରେ ଓ ଅଦ୍ୱିତୀୟ ସଂଗ୍ରହକାରୀରୂପରେ ସେ ଅଦ୍ୟାପି ସ୍ମରଣୀୟ ହେଉଅଛନ୍ତି ଏବଂ ହିନ୍ଦୁ ଗଣିତ ଜ୍ୟୋତିଷର ମହତ୍ତ୍ୱ ବିଦ୍ୟମାନ ଥିବାପର୍ଯ୍ୟନ୍ତ ସ୍ମରଣୀୟ ରହିବେ ।

ବରାହ ନିଜର ବୃହତ୍‌ସଂହିତାରେ ପ୍ରକୃତ ଗଣକ ବା ଜ୍ୟୋତିଷୀର ଆବଶ୍ୟକ ଗୁଣାବଳୀ ସୂଚିତ କରିଅଛନ୍ତି । ସେ କହିଅଛନ୍ତି ଯେ ବିଭିନ୍ନ ସିଦ୍ଧାନ୍ତର ପ୍ରଭେଦ ବୁଝାଇବା, ସୂର୍ଯ୍ୟଙ୍କର ଉତ୍ତରାୟଣ ଓ ଦକ୍ଷିଣାୟନର ସମୟ ଯନ୍ତ୍ର ସାହାଯ୍ୟରେ ନିରୂପଣ କରିବା, ପ୍ରଧାନ ଦିଗଂଶ ଓ ମଧ୍ୟାହ୍ନ

ରେଖାରେ ସୂର୍ଯ୍ୟଙ୍କର ପ୍ରବେଶ ନିର୍ଣ୍ଣୟ କରିବା ଏବଂ ପର୍ଯ୍ୟବେକ୍ଷଣ ସହିତ ଗଣନାର ସାମଞ୍ଜସ୍ୟ ପ୍ରଦର୍ଶନ କରିବା ପ୍ରଭୃତି ବିଷୟରେ ଯେ ସାମର୍ଥ୍ୟ ଲାଭ କରନ୍ତି ସେ ଯଥାର୍ଥ ଗଣକ ଅଟନ୍ତି ।

ଜିଷ୍ଣୁପୁତ୍ର ବ୍ରହ୍ମଗୁପ୍ତ ଇତିହାସରେ ସଂସ୍କୃତ ଗଣିତ ଜ୍ୟୋତିଷର ଏକ ପ୍ରଧାନ ପରିଚ୍ଛେଦର ଅବତାରଣା କରିଅଛନ୍ତି । ସେ ରେବାର ନିକଟବର୍ତ୍ତୀ କୌଣସି ସ୍ଥାନରେ ଜନ୍ମଗ୍ରହଣ କରି ୩୦ ବର୍ଷ ବୟସରେ ଗ୍ରନ୍ଥ ରଚନା କରିଥିଲେ । ତାହାଙ୍କ 'ବ୍ରହ୍ମସ୍ଫୁଟ ସିଦ୍ଧାନ୍ତ' ଗ୍ରନ୍ଥ ଶକାବ୍ଦ ୫୫୦ ବା ଖ୍ରୀଷ୍ଟାବ୍ଦ ୬୨୮ରେ ରଚିତ ହୋଇଥିବାରୁ ୬ଷ୍ଠ ଶତାବ୍ଦୀର ଶେଷଭାଗରେ ଅଥବା ସପ୍ତମ ଶତାବ୍ଦୀର ପ୍ରାରମ୍ଭରେ ତାହାଙ୍କର ଜନ୍ମ ସମୟ ଥିବାର ଅନୁମିତ ହୁଏ । ସେ ପ୍ରାଚୀନ ଜ୍ୟୋତିର୍ଗ୍ରନ୍ଥମାନଙ୍କ ମଧ୍ୟରୁ କେତେକର ସଂଶୋଧନ କରିଥିଲେ । ବାସ୍ତବିକ ବର୍ତ୍ତମାନ ହିନ୍ଦୁ ଗଣିତ ଜ୍ୟୋତିଷ ଯେ ଆକାର ଧାରଣ କରିଅଛି ତାହା ସେହି ସମୟରୁ ଆରବ୍ଧ ହୋଇଅଛି । ସେ ଜଣେ ଉତ୍କୃଷ୍ଟ ବୀଜଗଣିତଜ୍ଞ ଥିଲେ । ତାହାଙ୍କଠାରୁ ଆରବୀୟମାନେ ଜ୍ୟୋତିର୍ବିଜ୍ଞାନର ଆଲୋକ ପାଇଥିଲେ । ସମୀକରଣ ସମ୍ବନ୍ଧରେ ସେ ଯେଉଁ ପ୍ରମାଣ କରିଅଛନ୍ତି ତାହା ସପ୍ତଦଶ ଶତାବ୍ଦୀରେ ଇଉରୋପରେ ସମସ୍ୟାର ବିଷୟୀଭୂତ ହୋଇଥିଲା ।

ପଣ୍ଡିତ ସୁଧାକର ଦ୍ୱିବେଦୀ ଦଶମ ଶତାବ୍ଦୀର ଲୋକ ଥିବାର ଅନୁମିତ ହୁଏ; କାରଣ ତାହାଙ୍କ 'ଗଣକ-ତରଙ୍ଗିଣୀ' ବା 'ମୁଞ୍ଜଲା' ଖ୍ରୀଷ୍ଟାବ୍ଦ ୯୩୩ରେ ପ୍ରଣୀତ ହୋଇଥିଲା । ଏକାଦଶ ଶତାବ୍ଦୀରେ ଅଭି ଜଣେ ଜ୍ୟୋତିର୍ବିତ୍ ପଣ୍ଡିତ ଜନ୍ମଗ୍ରହଣ କରିଥିଲେ, ତାହାଙ୍କର ନାମ ଶତାନନ୍ଦ । ତତ୍ ପ୍ରଣୀତ 'ଭାସ୍ୱତୀ' ନାମକ ଗ୍ରନ୍ଥ ୧୦୨୧ ଶକାବ୍ଦ ବା ୧୦୯୯ ଖ୍ରୀଷ୍ଟାବ୍ଦରେ ଲିଖିତ ହୋଇଥିଲା । ତତ୍ପରେ ପ୍ରସିଦ୍ଧ ଭାସ୍କରାଚାର୍ଯ୍ୟ ପିଣ୍ଡମଧ୍ୟାଟ ସହ୍ୟାଦ୍ରି ନିକଟବର୍ତ୍ତୀ ସ୍ଥାନରେ ଶକାବ୍ଦ ୧୦୩୬ ବା ଖ୍ରୀଷ୍ଟାବ୍ଦ

୧୧୧୪ରେ ଜନ୍ମଗ୍ରହଣ କରିଥିଲେ । ତାହାଙ୍କର ଗୌରବ ତତ୍‌ପୂର୍ବବର୍ତ୍ତୀ ଜ୍ୟୋତିଷିକମାନଙ୍କୁ ଆବୃତ କରିପକାଇଥିଲା । ଏକ ଅସଭ୍ୟ ଜାତିର ବାରମ୍ବାର ଆକ୍ରମଣ ଅନେକ ବିପଦ ଉପସ୍ଥାପିତ କରିଥିଲା ଏବଂ ସେହି ବିପଦ ସମୟରେ ବିଦ୍ୟାଧିଷ୍ଠାତ୍ରୀ ଦେବୀ ନିର୍ବାସିତା ହୋଇ ଦାକ୍ଷିଣାତ୍ୟ ପ୍ରଦେଶର ଲୁଣ୍ଠ୍ୟକାରିଦଳଙ୍କ ମଧ୍ୟରେ ନିଜକୁ ଲୁକ୍କାୟିତ ରଖିଥିଲେ । ପରବର୍ତ୍ତୀ ଅନ୍ଧକାର-ଯୁଗରେ କେତେକ ଅଂଶିକ ସ୍ୱାଧୀନ ରାଜ୍ୟର ବିବାଦ ମଧ୍ୟରେ ଜ୍ଞାନଚର୍ଚ୍ଚା ସ୍ପନ୍ଦନହୀନ ଭାବରେ ରହିଥିଲା । ଲୋକମାନେ କେବଳ ପୂର୍ବ ଲେଖକଗଣଙ୍କ ଲେଖାର ଚର୍ବିତ ଚର୍ବଣ କରୁଥିଲେ । ଏହି ସମୟରେ କେବଳ ଜଣକର ନାମ ଉଲ୍ଲେଖଯୋଗ୍ୟ । ତାହାଙ୍କର ନାମ ଗଣେଶ । ଭାସ୍କର ଭାରତୀୟ ଗୌରବର ସ୍ଥଳ ଓ ପାଶ୍ଚାତ୍ୟବାସୀ-ମାନଙ୍କର ବିସ୍ମୟୋତ୍ପାଦକ ଥିଲେ । ସେ 'ସିଦ୍ଧାନ୍ତଶିରୋମଣି' 'କରଣକୁତୂହଳ' ପ୍ରଭୃତି ଗ୍ରନ୍ଥର ପ୍ରଣେତା ଥିଲେ । ଶିରୋମଣି ବର୍ତ୍ତମାନ ଯୁଗର ଗୋଟିଏ ଆଦର୍ଶ ପ୍ରବନ୍ଧ । ଭାସ୍କର ବ୍ୟାସଗଣିତ ବ୍ୟବହାର କରିଥିବାର ଅନୁମିତ ହୁଏ । ତାହାଙ୍କ ମୃତ୍ୟୁ ସଙ୍ଗେ ସଙ୍ଗେ ଭାରତରୁ ଗଣିତ ବିଜ୍ଞାନର ପ୍ରାଣବାୟୁ ଉଡ଼ି ଯାଇଥିଲା ।

ସର୍ବଶେଷରେ ନନ୍ଦଗ୍ରାମନିବାସୀ ଗଣେଶ ନାମକ ଜଣେ ପଣ୍ଡିତ ଥିଲେ । ଗଣେଶ ୧୫୨୦ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରି ଉତ୍ତାର୍ସ୍ଥ 'ଗ୍ରହଲାଘବ' ଗ୍ରନ୍ଥ ରଚନା କରିଥିଲେ । ସେହି ପୁସ୍ତକ ଖଣ୍ଡକ ଦେଶର କେତେକାଂଶରେ ଲୋକମାନଙ୍କର ହାତବହି ପରି ବ୍ୟବହୃତ ହେଉଥିଲା । ଆରବୀୟ ପ୍ରଭାବରେ ଓ ଶେଷରେ ପାଶ୍ଚାତ୍ୟ ସଂଘର୍ଷଣରେ ଏହି ବିଜ୍ଞାନର ବିଶେଷ ଉନ୍ନତି ସାଧିତ ହୋଇ ନ ଥିଲା । ଜୟପୁରରେ ଜୟସିଂହଙ୍କ ରାଜତ୍ୱକାଳରେ ୧୭ ଶ ଶତାବ୍ଦୀରେ ଆରବିକ୍ ଇଉକ୍ଲିଡ଼ (ଜ୍ୟାମିତି) ର ସଂସ୍କୃତାନୁବାଦ କରା ଯାଇଥିଲା ଏବଂ ତାହାଙ୍କର

ଅଦେଶରେ ଉତ୍ତର ଭାରତର ବିଭିନ୍ନ ସ୍ଥାନରେ ପର୍ଯ୍ୟବେକ୍ଷଣିକା ସ୍ଥାପିତ ହୋଇଥିଲା ।

ମହାତ୍ମା ଚନ୍ଦ୍ରଶେଖରଙ୍କ ପୂର୍ବରୁ ପ୍ରାୟ ୪୦୦ ବର୍ଷ ହେଲା ଭାରତରେ କମଳାକର ଭଟ୍ଟଙ୍କ ଭିନ୍ନ ଆଉ କୌଣସି ପ୍ରସିଦ୍ଧ ଜ୍ୟୋତିଷୀ ପଣ୍ଡିତ ଜନ୍ମଗ୍ରହଣ କରି ନ ଥିବାର ପ୍ରମାଣ ମିଳେ । ମାତ୍ର ଏହି ସମୟ ମଧ୍ୟରେ ବର୍ତ୍ତମାନ ପରି କେତେକ ଗଣକ ଜାତ ହୋଇଥିଲେ । ସେମାନଙ୍କ ମଧ୍ୟରୁ କେତେକ ଅଳ୍ପକାଳ ନିମନ୍ତେ ସ୍ଥାନୀୟ ପ୍ରଶଂସାଭାଜନ ହୋଇଥିଲେହେଁ ବିଜ୍ଞାନୋନ୍ନତି ବିଷୟରେ କୌଣସି ସ୍ଥାୟୀ ଚିହ୍ନ ରଖି ଦେଇ ଯାଇନାହାନ୍ତି ।

୧୫୮୦ ଶକାବ୍ଦରେ ଦିଲ୍ଲୀ ସମ୍ରାଟ୍ ଜାହାଙ୍ଗୀରଙ୍କର ସଭାପଣ୍ଡିତ ଶ୍ରୀକୃଷ୍ଣ ଦୈବଜ୍ଞଙ୍କର ପୌତ୍ର ଓ ନୃସିଂହଙ୍କର ପୁତ୍ର ଶ୍ରୀ କମଳାକର ଭଟ୍ଟ 'ସିଦ୍ଧାନ୍ତ-ତତ୍ତ୍ୱ-ବିବେକ' ନାମକ ପ୍ରସିଦ୍ଧ ଗ୍ରନ୍ଥ ପ୍ରଣୟନ କରିଥିଲେ । ଭାସ୍କରାଚାର୍ଯ୍ୟଙ୍କର ମତ ଖଣ୍ଡନପୂର୍ବକ ପ୍ରାଚୀନ ସୂର୍ଯ୍ୟସିଦ୍ଧାନ୍ତ ମତର ଦୃଢ଼ କରଣ ନିମିତ୍ତ ଉକ୍ତ ଗ୍ରନ୍ଥର ଅବତାରଣା କହିଲେ ଅତିରଞ୍ଜିତ ହେବ ନାହିଁ । ଏହି ଗ୍ରନ୍ଥ ସକୃତ୍ ମୁଦ୍ରିତ ହୋଇଥିବାରୁ ସମ୍ପ୍ରତି ଦୁର୍ଲଭ ହୋଇଅଛି ଏବଂ ଅଦ୍ୟାବଧି ତାହାର କୌଣସି ଟୀକାକାର ଜନ୍ମଗ୍ରହଣ କରି ନାହାନ୍ତି । ସୁତରାଂ ଜଟିଳତା ଦୃଷ୍ଟିରେ ଗ୍ରନ୍ଥ ଅନାଦୃତ ଓ ଉପେକ୍ଷିତ ହେବା ସ୍ୱାଭାବିକ । ଉଲ୍ଲିଖିତ ଗ୍ରନ୍ଥମାନଙ୍କ ମଧ୍ୟରୁ କେବଳ ସୂର୍ଯ୍ୟସିଦ୍ଧାନ୍ତ, ସିଦ୍ଧାନ୍ତଶିରୋମଣି, ବ୍ରହ୍ମସିଦ୍ଧାନ୍ତ ଏବଂ ବର୍ତ୍ତମାନ ମହାତ୍ମାଙ୍କ ପ୍ରଣୀତ ସିଦ୍ଧାନ୍ତଦର୍ପଣ ଇଦାନୀଂ ବିଶେଷ ବ୍ୟବହୃତ ହେଉଥିବାର ପରିଦୃଷ୍ଟ ହୁଏ ।

ସୂର୍ଯ୍ୟଙ୍କର ଭ୍ରମଣ ଓ ପୃଥିବୀର ସ୍ଥିରତା ସମ୍ବନ୍ଧରେ ମହାତ୍ମା ଚନ୍ଦ୍ରଶେଖରଙ୍କ ସହିତ ଆର୍ଯ୍ୟଭଟ୍ଟଙ୍କ ଭିନ୍ନ ଉଲ୍ଲିଖିତ ସମସ୍ତ ପଣ୍ଡିତଙ୍କର

ଏକମତ୍ୟ ଦେଖାଯାଏ । ତାହାହିଁ ପ୍ରାଚୀନ ଆର୍ଯ୍ୟଋଷିମାନଙ୍କର ମତ । କେବଳ ଆର୍ଯ୍ୟଭଟ୍ଟ ପୃଥିବୀର ଆହ୍ନିକ ଗତିର କଳ୍ପନା କରିଥିଲେ ; ମାତ୍ର ସେହି କଳ୍ପନାକୁ ଦୃଢ଼ଭିତ୍ତି ଉପରେ ସ୍ଥାପନ କରିବାକୁ ଅପାରଗ ହୋଇଥିଲେ । ତେଣୁ ତାହା ଲୋକସମାଜରେ ଅନାଦୃତ ହେଲା ।

ମହାତ୍ମା ଓ ମହାପୁରୁଷମାନଙ୍କର ଜୀବନଚରିତ ଜାତିର ଅମୂଲ୍ୟ ସମ୍ପଦ ଓ ପରମଶିକ୍ଷକ । ସେମାନଙ୍କର ଧର୍ମ ଓ ଆଚାର ବ୍ୟବହାର ପ୍ରତ୍ୟେକ ଜାତିକୁ ମହାଶିକ୍ଷା ପ୍ରଦାନ କରେ । ସେମାନଙ୍କର ଜୀବନବୃତ୍ତାନ୍ତ ଜାତୀୟ ଜୀବନ ଗଠନର ପ୍ରଧାନ ସାମଗ୍ରୀ । ଏହି ସାମଗ୍ରୀ ଯେତେ ଅଧିକ ପରିମାଣରେ ସଂଗୃହୀତ ହୁଏ ଜାତୀୟ ଉନ୍ନତିପକ୍ଷରେ ତେତେ କଲ୍ୟାଣକର । ବ୍ୟକ୍ତିଗତ ଜୀବନହିଁ ଜାତୀୟ ଉନ୍ନତି; କାରଣ ଜାତି ବ୍ୟକ୍ତିମାନଙ୍କର ସମଷ୍ଟି ମାତ୍ର । ବିଜ୍ଞାନ, ଶିଳ୍ପ, ସାହିତ୍ୟ, ଜ୍ୟୋତିର୍ବେଦ ଓ ଆୟୁର୍ବେଦ ପ୍ରଭୃତି ଭାବଜାତୀୟ ଉନ୍ନତି ଜାତୀୟ ଅଭ୍ୟୁଦୟର ଅଙ୍ଗୀଭୂତ । ମହାତ୍ମା-ମାନଙ୍କର ଜୀବନର କାର୍ଯ୍ୟାବଳୀ ପର୍ଯ୍ୟାଲୋଚନା କଲେ ମାନବର ଚରିତ୍ର ଗଠିତ ହୁଏ, ହୃଦୟ ପ୍ରଶସ୍ତ ହୁଏ, ନାସ୍ତିକତା ଅପସାରିତ ହୋଇ ଆସ୍ତିକ୍ୟ ବୁଦ୍ଧି ବର୍ଦ୍ଧିତ ହୁଏ ଏବଂ ନବୀନ ଭାବରାଶିର ଦ୍ୱାର ଉଦ୍‌ଘାଟିତ ହୁଏ । ମୂଳତଃ ପ୍ରକୃତ ମନୁଷ୍ୟତା ଲାଭ ହେବା ସଙ୍ଗେ ସଙ୍ଗେ ଜୀବନ ସାର୍ଥକତା ଲାଭ କରେ । ଶ୍ରେଷ୍ଠ ବ୍ୟକ୍ତିମାନେ ଯାହା ଆଚରଣ କରନ୍ତି ଅନ୍ୟାନ୍ୟମାନେ ତାହାର ଅନୁକରଣ କରନ୍ତି । ଗୀତାରେ ଉକ୍ତ ଅଛି :—

ଯଦ୍ ଯଦାଚରତି ଶ୍ରେଷ୍ଠ ସ୍ତତ୍ତଦେବେତରେ ଜନାଃ ।
ସ ଯତ୍ ପ୍ରମାଣଂ କୁରୁତେ ଲୋକସ୍ତଦନୁବର୍ତ୍ତତେ ।

ସୁତରାଂ ସେହିସବୁ ଜୀବନ ବୃତ୍ତାନ୍ତ ଆଲୋଚନା କରିବା ନିମିତ୍ତ ଶିକ୍ଷିତ ବ୍ୟକ୍ତିମାନେ ଆଗ୍ରହାନ୍ୱିତ ହେବା ସ୍ୱାଭାବିକ । କିନ୍ତୁ ମାଦୃଶ ସ୍ୱଳ୍ପବିଦ୍ୟ ବିଶେଷତଃ ଜ୍ୟୋତିଃଶାସ୍ତ୍ରାନଭିଜ୍ଞ ବ୍ୟକ୍ତି ପକ୍ଷରେ ବୃହସ୍ପତି-

ପ୍ରଥମ ଚନ୍ଦ୍ରଶେଖରଙ୍କର ଜୀବନବୃତ୍ତାନ୍ତ ଲିପିବଦ୍ଧ କରିବାର ଚେଷ୍ଟା ଧୃଷ୍ଟତାର ପରିଚୃୟକ ମାତ୍ର । ତଥାପି ଖଣ୍ଡପଡ଼ାରେ ଜନ୍ମଗ୍ରହଣ କରି ମହାତ୍ମାଙ୍କର ପ୍ରତିବେଶିତ୍ୱ ଲାଭ କରିଥିବାରୁ ସଜ୍ଜନମାନଙ୍କର କ୍ଷମାଗୁଣ ଉପରେ ନିର୍ଭର କରି ଯତ୍‌କିଞ୍ଚିତ୍ ଆଲୋଚନା କରିବାକୁ ପ୍ରବୃତ୍ତ ହେଲି ।

କୌଣସି ମହାତ୍ମାଙ୍କର ଜୀବନ ଚରିତ ପୁସ୍ତକାକାରରେ ସାଧାରଣଙ୍କର ନେତ୍ରପଥରେ ପଥିକ କରିବାକୁ ହେଲେ ତଦୀୟ ଜୀବନର ପ୍ରଧାନ କାର୍ଯ୍ୟକୁ ଯଥାସମ୍ଭବ ବିଶଦଭାବରେ ପ୍ରଦର୍ଶନ କରିବା ଆବଶ୍ୟକ ହୁଏ ଏବଂ ତାହାଙ୍କ ସମ୍ବନ୍ଧରେ ବିଶିଷ୍ଟ ବ୍ୟକ୍ତିମାନଙ୍କର ମତଗୁଡ଼ିକ ପୁସ୍ତକରେ ସ୍ୱତନ୍ତ୍ରଭାବେ ସମାବେଶ କରିବାର ପ୍ରୟୋଜନ ହୁଏ । ସୁତରାଂ ଚନ୍ଦ୍ରଶେଖରଙ୍କ ଜୀବନ ଚରିତକୁ ସାଧାରଣତଃ ତିନିଭାଗରେ ବିଭକ୍ତ କରିବାକୁ ଇଚ୍ଛା କରୁଅଛି । ପ୍ରଥମଭାଗରେ ଜୀବନ-ବୃତ୍ତାନ୍ତ, ଦ୍ୱିତୀୟଭାଗରେ ସିଦ୍ଧାନ୍ତଦର୍ପଣ ପ୍ରଭୃତି ପ୍ରଧାନ କାର୍ଯ୍ୟଗୁଡ଼ିକର ବିବରଣ ଏବଂ ତୃତୀୟଭାଗରେ ପରିଶିଷ୍ଟ ପ୍ରକରଣରେ ତାହାଙ୍କ ସମ୍ବନ୍ଧରେ କେତେକ ବ୍ୟକ୍ତିଙ୍କର ଲିଖିତ ମତ ପ୍ରକାଶ କରାଯିବ ।

ଯେଉଁ ମହାତ୍ମାଙ୍କର ପ୍ରତିଭା ସନ୍ଦର୍ଶନରେ ଭାରତ କାହିଁକି ପ୍ରାୟ ସମସ୍ତ ଭୂମଣ୍ଡଳ ବିମୋହିତ, ଉତ୍କଳର ଅରଣ୍ୟାକୀର୍ଣ୍ଣସଙ୍କୁଳ ତମୋମୟ ଗଡ଼ଜାତ ପ୍ରଦେଶରେ ଜନ୍ମଗ୍ରହଣ କଲେହେଁ ଯାହାଙ୍କର ମନ ସର୍ବଦା ଜ୍ୟୋତିଷ୍କ ମଧ୍ୟରେ ବିଚରଣ କରୁଥିଲା, ଯେ ସ୍ୱକଳ୍ପିତ ନଳକାଦି ଯନ୍ତ୍ର ସାହାଯ୍ୟରେ ଦୂରବୀକ୍ଷଣ ଯନ୍ତ୍ରର ଅସାଧ୍ୟ ସ୍ଥାନମାନଙ୍କର ସୂକ୍ଷ୍ମ ପରିମାଣ କରଣରେ କୃତିତ୍ୱ ପ୍ରଦର୍ଶନ କରିଯାଇ ଅଛନ୍ତି, ବିନା ଯନ୍ତ୍ରରେ କେବଳ ବୁଦ୍ଧିଦ୍ୱାରା ସାଧିତ ହୋଇଥିବାରୁ ଯାହାଙ୍କର ଗ୍ରନ୍ଥ ଦୃକ୍‌ସିଦ୍ଧ ସିଦ୍ଧାନ୍ତଦର୍ପଣ ଆଖ୍ୟା ଧାରଣ କରିଅଛି, ଗମ୍ଭୀର ପାଣ୍ଡିତ୍ୟ ଓ ଭଗବଦ୍‌ଭକ୍ତି ଯାହାଙ୍କଠାରେ ମଣିକାଞ୍ଚନର ସୁଯୋଗ ଲାଭ କରିଥିଲା ଏବଂ ଘୋର କଷ୍ଟସହିଷ୍ଣୁତା,

ବିଷୟପ୍ରତି ଅନାସକ୍ତି ଓ ସୁଖ ଦୁଃଖରେ ଅବିଚଳିତତା ପ୍ରଭୃତି ଗୁଣଦ୍ୱାରା ଯାହାଙ୍କଠାରେ ମହାପୁରୁଷତ୍ୱ ସୂଚିତ ହେଉଥିଲା; ସେହି ସାମନ୍ତ ଚନ୍ଦ୍ରଶେଖର ସିଂହ ଖଣ୍ଡପଡ଼ା ନାମକ ଗଡ଼ଜାତରେ ଅବତୀର୍ଣ୍ଣ ହୋଇଥିଲେ । ତାହାଙ୍କର ପୂର୍ଣ୍ଣନାମ ସାମନ୍ତ ଚନ୍ଦ୍ରଶେଖର ସିଂହ ହରିଚନ୍ଦନ ମହାପାତ୍ର । ହରିଚନ୍ଦନ ମହାପାତ୍ର ପୁରୀରାଜପ୍ରଦତ୍ତ ଉପାଧି । ଖଣ୍ଡପଡ଼ାର ତଦାନୀନ୍ତନ ରାଜା ନଟବର ସିଂହ ପୁରୀରେ ରାଜଶାଢ଼ୀ ବନ୍ଧାଇବା ସମୟରେ ଚନ୍ଦ୍ରଶେଖର ଉକ୍ତ ଉପାଧି ପ୍ରାପ୍ତ ହୋଇଥିଲେ ।

ପ୍ରୋକ୍ତ ପଣ୍ଡିତମାନଙ୍କ ମଧ୍ୟରୁ କେହି କେହି ବହୁ ଗ୍ରନ୍ଥ ରଚନା କରି ଯାଇଅଛନ୍ତି । ମାତ୍ର ଚନ୍ଦ୍ରଶେଖର ଏକମାତ୍ର ସିଦ୍ଧାନ୍ତଦର୍ପଣ ଭିନ୍ନ ଅନ୍ୟ କିଛି ପ୍ରଣୟନ କରି ପାରିନାହାନ୍ତି । ସିଦ୍ଧାନ୍ତଦର୍ପଣ ତାହାଙ୍କର ଜୀବନବ୍ୟାପୀ ପରିଶ୍ରମର ଏକମାତ୍ର ଫଳ । ଅନ୍ୟାନ୍ୟ ମନୀଷୀଗଣ ଜ୍ୟୋତିଷଚର୍ଚ୍ଚାରେ ଜୀବନର ଅଧିକାଂଶ ସମୟ ଯାପନ କରିଥିବାରୁ କିମ୍ବା କୌଣସି ଦେବତାଙ୍କର ଉପାସନାରେ ସିଦ୍ଧିଲାଭ କରିଥିବାରୁ ବୋଧହୁଏ ଏକାଧିକ ଗ୍ରନ୍ଥ ରଚନାରେ ଅବସର ପ୍ରାପ୍ତ ହୋଇଥିଲେ । କିନ୍ତୁ ଚନ୍ଦ୍ରଶେଖରଙ୍କର ପ୍ରଣାଳୀ ସ୍ୱତନ୍ତ୍ର । ସେ ନିଜ ଚକ୍ଷୁରେ ଯାହା ଯାହା ଦେଖୁଥିଲେ ତାହାହିଁ ଲିପିବଦ୍ଧ କରୁଥିଲେ । ତେଣୁ ବହୁ ସମୟ ବ୍ୟୟିତ ହେଉଥିଲା । ବିଶେଷତଃ ସେ ପରମ ବିଷ୍ଣୁଭକ୍ତ ଥିବାରୁ ଭକ୍ତିଗ୍ରନ୍ଥର ସମାଲୋଚନା ଓ ନିତ୍ୟକର୍ମାଦିରେ ତାହାଙ୍କର ଅଧିକାଂଶ ସମୟ ଯାପିତ ହେଉଥିଲା । ସୁତରାଂ ଗ୍ରନ୍ଥାନ୍ତର ରଚନା କରିବାକୁ ତାହାଙ୍କର ଅବସର ନ ଥିଲା । କେବଳ ଦର୍ପଣସାର ନାମକ ତାହାଙ୍କ ରଚିତ ଖଣ୍ଡିଏ କ୍ଷୁଦ୍ର ପୁସ୍ତକ ମୁଦ୍ରିତ ହୋଇଅଛି । ଦର୍ଣଦୀପିକା ନାମକ ସ୍ୱତନ୍ତ୍ର ଷୋଡ଼ଶଟି ଶ୍ଳୋକ ମଧ୍ୟ ସେ ରଚନା କରିଥିଲେ । ତାହା ମୁଦ୍ରିତ ହୋଇ ପାରିନାହିଁ । ତାହାଙ୍କର ୩୪ ବର୍ଷ ସମୟରେ ସିଦ୍ଧାନ୍ତ-ଦର୍ପଣର ରଚନା ଶେଷ ହୋଇଥିଲା ଏବଂ ଗ୍ରନ୍ଥ ସମାପ୍ତି ସକାଶେ ସେ ୨୦ ବର୍ଷ

କାଳ ଦିବାରାତ୍ର କଠୋର ଅଧ୍ୟବସାୟରେ ଆପଣାକୁ ନିୟୋଜିତ କରିଥିଲେ । ଅତଏବ ୧୪ ବର୍ଷଠାରୁ ସେ ଜ୍ୟୋତିଷତତ୍ତ୍ୱର ଗବେଷଣାରେ ପ୍ରବୃତ୍ତ ହୋଇଥିଲେ । ବହୁକାଳ ଅନିୟମିତ ପରିଶ୍ରମରେ ସେ ରୁଗ୍‌ଣ ହୋଇ ପଡ଼ିବାରୁ ଗ୍ରନ୍ଥାନ୍ତର ରଚନାରେ ପ୍ରୟାସୀ ହୋଇନଥିଲେ । ଅନ୍ୟଗ୍ରନ୍ଥ ରଚନା କରିବା ବିଷୟରେ ତାହାଙ୍କର ପ୍ରବୃତ୍ତି ମଧ୍ୟ ନଥିଲା । କାରଣ ସାମନ୍ତ ଗ୍ରନ୍ଥ ମୁଦ୍ରିତ କରାଇ କବି ପଦବୀ ଲାଭ କରିବାକୁ କଳ୍ପନା ସୁଦ୍ଧା କରି ନଥିଲେ । ତଦୀୟ ଗ୍ରନ୍ଥ ରଚନାର ୩୦ ବର୍ଷ ପରେ ପୁସ୍ତକ ମୁଦ୍ରିତ ହୋଇଥିବା ତହିଁର ଜ୍ୱଳନ୍ତ ନିଦର୍ଶନ । ସିଦ୍ଧାନ୍ତଦର୍ପଣର ରଚନା ୧୮୬୯ ସାଲରେ ଶେଷ ହୋଇଥିଲା ଏବଂ ୧୮୯୯ ସାଲରେ ପୁସ୍ତକ ମୁଦ୍ରିତ ହୋଇଅଛି । ପ୍ରାଚୀନ ସିଦ୍ଧାନ୍ତ ଗଣନାରେ ଭ୍ରମ ପ୍ରମାଦ ଦେଖି ତହିଁର ଯାଥାର୍ଥ୍ୟ ଉପଲବ୍ଧି କରିବା ସକାଶ ଅଧ୍ୟବସାୟ କରୁ କରୁ 'ଘୁଣାକ୍ଷର' ନ୍ୟାୟରେ ଗୋଟିଏ ଗ୍ରନ୍ଥ ହୋଇ ପଡ଼ିଲା । ଜ୍ୟୋତିର୍ଗଣନାରେ ଅତ୍ୟାସକ୍ତିବଶତଃ ତଦୀୟ ନିତ୍ୟକର୍ମ ସମୟରେ ଗଣିତ ବିଷୟ ସ୍ମୃତିପଥାରୂଢ଼ ହେବାରୁ ସେ ଅନେକ ବ୍ୟକ୍ତିଙ୍କ ନିକଟରେ ଦୁଃଖ ପ୍ରକାଶ କରିଅଛନ୍ତି ଏବଂ ସିଦ୍ଧାନ୍ତଦର୍ପଣର ପଞ୍ଚଦଶ ପ୍ରକାଶ ୭୧ ଶ୍ଳୋକରେ ମଧ୍ୟ ତହିଁର ଉଲ୍ଲେଖ କରିଅଛନ୍ତି । ସେହି ଶ୍ଳୋକ ଏହି :—

ଯସ୍ୟେଚ୍ଛା ମେ ନିଜ ଭଜନତୋ ଦୂରମୁତ୍ସାର୍ଯ୍ୟ ବୁଦ୍ଧିଂ,
ଦୈବାଧୀନାଂ ଗଣିତ ବିପଣୌ ପାତୟତ୍ୟାତତାୟାମ୍ ।
ସଙ୍ଖ୍ୟାତୀତାନୁଗତ ପତିତୋଦ୍ଧାର କାରୁଣ୍ୟ ସିନ୍ଧୁଃ,
ସ ସ୍ୟାଚ୍ଚେତଃ ଶରଣଚରଣଃ ସିନ୍ଧୁଜା ପ୍ରାଣବନ୍ଧୁ ॥

ଅର୍ଥାତ୍ ଯାହାଙ୍କର ଇଚ୍ଛା ମୋହର ଦୈବାଧୀନ ବୁଦ୍ଧିକୁ ନିଜ ଭଜନରୁ ଅପସାରିତ କରି ବିସ୍ତୃତ ଗଣିତ ଶାସ୍ତ୍ରରୂପ ବିପଣିରେ ପାତିତ କରିଅଛି, ଅସଂଖ୍ୟ ପତିତ ସେବକଙ୍କର ଉଦ୍ଧାରକାରୀ କରୁଣାସାଗର ସେହି

ଲକ୍ଷ୍ମୀପ୍ରାଣନାଥ ପରମେଶ୍ୱର ସ୍ୱୀୟ ପାଦପଦ୍ମରେ ମଦୀୟ ଚିତ୍ତକୁ ଅଶ୍ରୟଦାନ କରନ୍ତୁ ।

ସାମନ୍ତ ଜ୍ୟୋତିର୍ବିଷୟ ଓ ଭଗବଦ୍ଭକ୍ତି ବିଷୟ ଭିନ୍ନ ଅନ୍ୟ କୌଣସି ବିଷୟରେ ଗୋଟିଏ ସୁଦ୍ଧା ଶ୍ଳୋକ ରଚନା କରିବାକୁ କୁଣ୍ଠିତ ହେଉଥିଲେ । ଚନ୍ଦ୍ରଶେଖର ଫଳିତ ଜ୍ୟୋତିଃଶାସ୍ତ୍ରର ଗଣନା ଓ ବିଗ୍ଭର କରୁଥିଲେ । ମାତ୍ର ସେହିସବୁ ଆର୍ଷଶାସ୍ତ୍ରମାନଙ୍କରେ ପଣ୍ଡିତମାନଙ୍କକଳ୍ପିତ ବହୁ ବାକ୍ୟ ପ୍ରକ୍ଷିପ୍ତ ହୋଇଥିବାରୁ ଉକ୍ତ ଗଣନାକୁ ଅଭ୍ରାନ୍ତ ବୋଲି ବିଶ୍ୱାସ କରୁନଥିଲେ । ସେ ଅଲୌକିକ ସ୍ମୃତି ପଣ୍ଡିତ ଥିଲେ । ଚନ୍ଦ୍ରଶେଖର ପୁରୁଷୋତ୍ତମ କ୍ଷେତ୍ରକୁ ଅତ୍ୟନ୍ତ ଆଦର କରୁଥିଲେ ଏବଂ ସେଠାରେ ଦେହତ୍ୟାଗ କରିବାର ବାସନା ତାହାଙ୍କର ଚିରପୋଷିତ ଥିଲା । ତଦୀୟ ଗ୍ରନ୍ଥର ଚତୁର୍ଦ୍ଦଶ ପ୍ରକାଶରେ କେବଳ ପୁରୁଷୋତ୍ତମ ଓ ଜଗନ୍ନାଥଦେବଙ୍କର ବର୍ଣ୍ଣନା ବିଷୟୀଭୂତ ହୋଇଅଛି । ଲୋକେ ତାହାଙ୍କର ଧୈର୍ଯ୍ୟ ଓ ସହିଷ୍ଣୁତା ସନ୍ଦର୍ଶନ କରି ଚମତ୍କୃତ ହେଉଥିଲେ । ତାହାଙ୍କର ଗୁରୁଭକ୍ତି ପ୍ରସଙ୍ଗର ବର୍ଣ୍ଣନା କଲେ ଅଧୁନାତନ ଯୁଗରେ କେହି କେହି ଉପହାସ କରିପାରନ୍ତି । ତଦୀୟ ଦେବତା ବ୍ରାହ୍ମଣ ବିଶ୍ୱାସ ଯୁଗାତୀତ ଥିଲା । ସେ କେବଳ ଯେ ସଂସ୍କୃତ ସାହିତ୍ୟ ଓ ଜ୍ୟୋତିର୍ଗଣିତର ଚର୍ଚ୍ଚା କରିଥିଲେ ତାହା ନୁହେ । କର୍ମକାଣ୍ଡ ଓ ଆୟୁର୍ବେଦ ଶାସ୍ତ୍ରରେ ତାହାଙ୍କର ଅସାଧାରଣ ବ୍ୟୁତ୍ପତ୍ତି ଥିଲା । ସେ ସମସ୍ତ ବିଷୟ ପୃଥକ୍‌ରୂପେ ଯଥାସ୍ଥାନରେ ସଂକ୍ଷିପ୍ତ ଭାବରେ ଆଲୋଚିତ ହେବ ।

ପ୍ରାକୃତିକ ଓଡ଼ିଶା ମୋଗଲବନ୍ଦୀ ଓ ଗଡ଼ଜାତ ଭେଦରେ ସଂଗଠିତ । ସେଥି ମଧ୍ୟରୁ ମୋଗଲବନ୍ଦୀ ଏକଭାଗ ଏବଂ ଗଡ଼ଜାତ ପ୍ରାୟ ତିନିଭାଗ ସ୍ଥାନ ଅଧିକାର କରିଅଛି । ଏହି ଗଡ଼ଜାତହିଁ ଓଡ଼ିଶାର ସୌନ୍ଦର୍ଯ୍ୟ ଓ ମହିମା ବର୍ଦ୍ଧନ ବିଷୟରେ ପ୍ରଧାନ ପୃଷ୍ଠପୋଷକରୂପେ ଚିରକାଳ ବିଦ୍ୟମାନ ରହିଅଛି । ଏହାହିଁ ପ୍ରକୃତି ଦେବୀଙ୍କର ଚିରବିହାରକ୍ଷେତ୍ରରୂପେ ନାନାବିଧ

ମହାର୍ଘ ଉପକରଣ ସୁସଜ୍ଜିତ କରି ରଖିଅଛି । ଏହି ଗଡ଼ଜାତର ସ୍ୱୀୟ ଔଦାର୍ଯ୍ୟ ଗୁଣରେ ସମସ୍ତଙ୍କ ସକାଶ ଧନରତ୍ନାଦି ପ୍ରଚ୍ଛନ୍ନ ଭାବରେ ନିଜ ଗର୍ଭରେ ସଞ୍ଚାଇ ରଖିଅଛି । ଗଡ଼ଜାତର ପ୍ରସାଦରୁ ଧାନ୍ୟାଦି ଶସ୍ୟ, କାଷ୍ଠାଦି ଗୃହନିର୍ମାଣସାମଗ୍ରୀ ଏବଂ ଶ୍ରମଜୀବୀ ପ୍ରଭୃତି ଲାଭ କରି ମୋଗଲବନ୍ଦୀ ବାହିନୀ ଭାରତର ବହୁ ପ୍ରଦେଶ ଉପକୃତ ହୋଇ ଆସୁଅଛି । ତାହାର ଗଗନରେ କେତେ ଯେ ଉଜ୍ଜ୍ୱଳ ଜ୍ୟୋତିଷ୍କ ଉଦିତ ହୋଇ ଲୟପ୍ରାପ୍ତ ହୋଇ ଅଛନ୍ତି ତାହା ଅଗଣନୀୟ । ସେଥି ମଧ୍ୟରୁ କେତେକ ଲୋକଲୋଚନର ବିଷୟୀଭୂତ ହୋଇ ଅଛନ୍ତି ଏବଂ କେତେକ ମାନବ ଦୃଷ୍ଟିପଥର ବହିର୍ଭୂତ ହୋଇ କାଳର କରାଳ କବଳରେ ପତିତ ହୋଇ ଅଛନ୍ତି । ନିକଟ ଅତୀତରେ ଶ୍ରୀଧର, ଭଗୀରଥ, ରାମଚନ୍ଦ୍ର ପ୍ରଭୃତି କେତେଗୋଟି ସୁସନ୍ତାନର ପିତୃତ୍ୱ ଲାଭ କରି ଗଡ଼ଜାତ ସ୍ୱୀୟ ଖ୍ୟାତି ବିସ୍ତାର କରିଅଛି । ତିଗିରିଆନିବାସୀ ପଣ୍ଡିତ ଭୁବନେଶ୍ୱର ବଡ଼ପଣ୍ଡା ଓ ଗୋବିନ୍ଦ କବିଭୂଷଣ ସାମନ୍ତରାୟ ସ୍ୱୀୟ ପାଣ୍ଡିତ୍ୟ ବଳରେ ଚିରସ୍ମରଣୀୟ ହୋଇ ଅଛନ୍ତି । ସ୍ୱର୍ଗୀୟ ବଡ଼ପଣ୍ଡା ମହୋଦୟ 'ଆନନ୍ଦଦାମୋଦରଚମ୍ପୂ' ଓ ସାମନ୍ତରାୟ 'ସଚିତ୍ରସର୍ବସ୍ୱ' ଗ୍ରନ୍ଥ ପ୍ରଣୟନ କରି ଅଛନ୍ତି । ସୂତ୍ରସର୍ବସ୍ୱରେ ଯଜ୍ଞାଦି ବୈଦିକ କର୍ମ, ଦେବପୂଜା ଓ ନିତ୍ୟକର୍ମାଦିର ବିଧାନ ବର୍ଣ୍ଣିତ ଅଛି । ଅଳ୍ପଦିନ ପୂର୍ବରେ ସେହି ଗଡ଼ଜାତ ମଧ୍ୟରେ ମହାତ୍ମା ଚନ୍ଦ୍ରଶେଖର ନିଜର ସୂର୍ଯ୍ୟୋପମ ତେଜରେ ପୃଥିବୀକୁ ଆଲୋକିତ କରି ଯାଇଅଛନ୍ତି । ଗଡ଼ଜାତର ସମସ୍ତ ବିଷୟ ଲେଖିବାକୁ ଗଲେ ଗୋଟିଏ ସ୍ୱତନ୍ତ୍ର ପ୍ରବନ୍ଧ ହେବ । ମାତ୍ର ଉପସ୍ଥିତ କ୍ଷେତ୍ରରେ ତାହା ଉଦ୍ଦିଷ୍ଟ ନଥିବାରୁ ପରିତ୍ୟକ୍ତ ହେଲା । କେବଳ ଖଣ୍ଡପଡ଼ା ଆଲୋଚ୍ୟ ପ୍ରବନ୍ଧର ବିଷୟୀଭୂତ ହେବାରୁ ସେ ସମ୍ବନ୍ଧରେ କେତେକ ବିବରଣ ପ୍ରକାଶ କରିବା ଅସଙ୍ଗତ ହେବ ନାହିଁ ।

**ଖଣ୍ଡପଡ଼ା**—ଏହା ଉତ୍କଳର ଚତୁର୍ବିଂଶତି କରଦ ରାଜ୍ୟ ମଧ୍ୟରୁ ଗୋଟିଏ କ୍ଷୁଦ୍ର ଗଡ଼ଜାତ । ଖଣ୍ଡିଏ ଖଣ୍ଡିଏ ପଡ଼ାର ମିଶ୍ରଣରେ ରାଜ୍ୟଟି

ଗଠିତ ହୋଇ ଥିବାରୁ ଖଣ୍ଡପଡ଼ା ନାମର ଉତ୍ପତ୍ତି ହୋଇଥିବାର ପ୍ରବାଦ ଅଛି । ତାହାର ସଂସ୍କୃତ ନାମ ଖଣ୍ଡପତ୍ତନ । ଖଣ୍ଡପଡ଼ା କ୍ଷୁଦ୍ର ରାଜ୍ୟ ହେଲେହେଁ ପ୍ରତିଷ୍ଠା ସମ୍ବନ୍ଧରେ ଅପର ଗଡ଼ଜାତମାନଙ୍କ ମଧ୍ୟରେ ତାହାର ସ୍ଥାନ ନ୍ୟୂନ ନୁହେ । ପ୍ରାୟ ୨୦୦ ଦୁଇଶତ ବର୍ଷ ପୂର୍ବରେ ଏହି ରାଜ୍ୟରେ ଖଡ୍‌ଗରାୟୋପାଧିକ ଧାନବନ୍ଧୁ ମିଶ୍ର ନାମକ ଜଣେ ଭକ୍ତକବି ଅବତୀର୍ଣ୍ଣ ହୋଇଥିଲେ । ତତ୍‌ପ୍ରଣୀତ କେତେକ ଗ୍ରନ୍ଥ ମଧ୍ୟରେ ସଂସ୍କୃତ ଭାଗବତର ଉତ୍କଳ ପଦ୍ୟାନୁବାଦ ଉଲ୍ଲେଖ ଯୋଗ୍ୟ । ତାହା 'ଖଡ଼ଗାଙ୍କ ଭାଗବତ' ନାମରେ ପ୍ରସିଦ୍ଧ । ଉକ୍ତ ଗ୍ରନ୍ଥ ଅଦ୍ୟାପି ମୁଦ୍ରିତ ନ ହୋଇ ଅପ୍ରକାଶିତ ଭାବେ ରହିଅଛି । ଧାନବନ୍ଧୁ ମିଶ୍ରଙ୍କର ଭକ୍ତି, ବଦ୍‌ବତ୍ତ୍ୱ, ସାଦୃଶ୍ୟ ଓ ତ୍ୟାଗ ସମ୍ବନ୍ଧରେ ନାନା ଗଳ୍ପ ଶ୍ରୁତିଗୋଚର ହୁଏ । ସେ ବିଷୟ ସ୍ଥାନାନ୍ତରେ ଲିଖିତ ହେବ ।

ଖଣ୍ଡପଡ଼ାର ପୂର୍ବରେ ବାଙ୍କି ଓ ଖୋରଧା, ଦକ୍ଷିଣରେ ନୟାଗଡ଼, ପଶ୍ଚିମରେ ଦଶପଲ୍ଲା ଏବଂ ଉତ୍ତରରେ ନରସିଂହପୁର ଓ ବଡ଼ାମ୍ବା ଗଡ଼ଜାତ । ଏହି ରାଜ୍ୟ ଖୋରଧାରୋଡ଼ ଷ୍ଟେସନଠାରୁ ୪୧ ମାଇଲ ପଶ୍ଚିମରେ ଅବସ୍ଥିତ । ଖଣ୍ଡପଡ଼ାର କ୍ଷେତ୍ରଫଳ ୨୪୪ ବର୍ଗ ମାଇଲ । କଥାରେ କହନ୍ତି ଖଣ୍ଡପଡ଼ା ରାଜ୍ୟ ୧୪ କୋଶ । ତହିଁର ଲୋକସଂଖ୍ୟା ୬୪୨୮୯ । ଖଣ୍ଡପଡ଼ା କାଣ୍ଟିଗଡ଼ ତାହାର ରାଜଧାନୀ । ଏଥିର ଭୂକର, ବନକର ଓ ଶିକ୍ଷା ଟିକସ୍ଥା କର ପ୍ରଭୃତି ସମସ୍ତ ପ୍ରକାର ବାର୍ଷିକ ଆୟର ପରିମାଣ ପ୍ରାୟ ଟ ୧୦୦୦୦୦୯ ଏକଲକ୍ଷ ଏବଂ କର୍ମଚାରୀଙ୍କ ବେତନ ଓ ଶିକ୍ଷା ଟିକସ୍ଥା ପ୍ରଭୃତିର ସର୍ବବିଧ ବାର୍ଷିକ ବ୍ୟୟ ପ୍ରାୟ ଟ ୯୯୦୦୦୯ ଅନେଶ୍ୱତ ହଜାର । ଖଣ୍ଡପଡ଼ାର ପେସ୍-କେସ୍ ବା ରାଜସ୍ୱ ଟ ୪୨୧୧୮ ପାହି । ତହିଁର ରାଜା ଶ୍ରୀମାନ୍ ହରିହର ସିଂହ ଦେବ ମର୍ଦ୍ଦରାଜ ଭ୍ରମରବର ରାୟଙ୍କ ସୁଶାସନରେ ସମ୍ପ୍ରତି ରାଜ୍ୟଟି ଉତ୍ତରୋତ୍ତର ଉନ୍ନତି ମାର୍ଗରେ ଅଗ୍ରସର ହେଉଅଛି । ରାଜା ମହୋଦୟ ରାୟପୁର ରାଜକୁମାର କଲେଜରୁ ଉତ୍ତୀର୍ଣ୍ଣ ହୋଇଥିବାରୁ ଅଧୁନିକ

ଯୁଗୋପଯୋଗୀ ଶାସନ ପ୍ରଣାଳୀରେ ସୁଦକ୍ଷ ଅଟନ୍ତି । ଖଣ୍ଡପଡ଼ାର ଦେବ-ମନ୍ଦିରଗୁଡ଼ିକ ଏକତ୍ର ସମାବିଷ୍ଟ ଥିବାରୁ ଅତ୍ୟନ୍ତ ରମଣୀୟ ହୋଇଅଛି । ଏଠାର ଗୋପୀନାଥ ଓ ରାଧିକା ମୂର୍ତ୍ତି ସତ୍ୟବାଦୀ ଭିନ୍ନ ଓଡ଼ିଶାର ଅନ୍ୟତ୍ର ଅତୁଳନୀୟ ବୋଲି ବୋଧହୁଏ ।

ଖଣ୍ଡପଡ଼ାରେ ହିନ୍ଦୁ ଧର୍ମାବଲମ୍ବୀ ବଉଦ୍ଧ ସମ୍ପ୍ରଦାୟର ଲୋକ ବାସ କରନ୍ତି । ମୁସଲମାନମାନଙ୍କ ସଂଖ୍ୟା ନଗଣ୍ୟ । କନ୍ଧ, କୋଲ୍ହ, ଶବର, ହାଡ଼ି, ପାଣ, କଣ୍ଡରା, ମାଟିଆ, ଡୁଅଁଳା, କୁନ୍ଦୁରା ପ୍ରଭୃତି ଅନାର୍ଯ୍ୟମାନଙ୍କ ସଂଖ୍ୟା ନିତାନ୍ତ ଅଳ୍ପ ନୁହେ । ଯବ, ବୁଟ ପ୍ରଭୃତି କେତେକ ଶସ୍ୟ ଭିନ୍ନ ଧାନ, ଗହମ, ମୁଗ, ବିରି, ସୋରିଷ, ଚଣା, କୋଳଥ, ବରଗୁଡ଼ି ଓ ରାଶି ପ୍ରଭୃତି ବହୁବିଧ ଶସ୍ୟ ଏହି ରାଜ୍ୟରେ ଉତ୍ପନ୍ନ ହୁଏ । ଦେଶୀ ଆଖୁ ଓ ବମ୍ବେଇ ଆଖୁ ଏବଂ ତଦୁତ୍ପନ୍ନ ଉତ୍କୃଷ୍ଟ ଗୁଡ଼ ପ୍ରଚୁର ପରିମାଣରେ ମିଳେ । ଆମ୍ବ ଏଠାରେ ଗୋଟିଏ ବିଶିଷ୍ଟ ଫସଲ । ଏଠାରେ ଯେତେ ପରିମାଣରେ ଏବଂ ଯେପରି ସୁମିଷ୍ଟ ଆମ୍ବ ମିଳେ ଗଡ଼ଜାତ ପ୍ରଦେଶର ଅନ୍ୟତ୍ର ସେପରି ଦୃଷ୍ଟ ହୁଏ ନାହିଁ । ନନ୍ଦନବନ ନାମକ ଗୋଟିଏ ବୃହତ୍ ଆମ୍ରବାଟିକା ଏହି ରାଜ୍ୟର ସ୍ୱର୍ଗୀୟ ରାଜା କୁଞ୍ଜବିହାରୀ ଓ ନଟବର ସିଂହଙ୍କ ସ୍ୱହସ୍ତରୋପିତ । ଈଦୃଶ ବୃହତ୍ ଆମ୍ରୋଦ୍ୟାନ ଓଡ଼ିଶାର କୌଣସିଠାରେ ପରିଲକ୍ଷିତ ହୁଏ ନାହିଁ । ଏହି ଗଡ଼ଜାତରେ ମଧ୍ୟ ପ୍ରଚୁର ପରିମାଣରେ ପଣସ ଗଛ ପରିଦୃଷ୍ଟ ହୁଏ । ସମୁଦାୟ ଷ୍ଟେଟରେ ପ୍ରାୟ ଦଶଲକ୍ଷ ଆମ୍ରବୃକ୍ଷ ବିଦ୍ୟମାନ ଅଛି । କେବଳ ନନ୍ଦନବନ ନାମକ ଉଦ୍ୟାନରେ ଅଷ୍ଟାଦଶ ସହସ୍ର ଆମ୍ର ଓ ପଣସ ବୃକ୍ଷ ରୋପିତ ହୋଇଅଛି । ଏଠାର ପ୍ରଧାନ ପର୍ବତ ରାଜଗିରିର ଉଚ୍ଚତା ୨୯୦୨ ଫୁଟ । ଗୋବିନ୍ଦ ପର୍ବତ ରାଜଗିରିର ସମକକ୍ଷ ନ ହେଲେହେଁ ଅନ୍ୟାନ୍ୟ ପର୍ବତର ତୁଳନାରେ କ୍ଷୁଦ୍ର ନୁହେ । ଅତି ପ୍ରାଚୀନ କାଳରେ ଗୋବିନ୍ଦ ନାମକ ଦୈତ୍ୟ ଏହି ପର୍ବତରେ ବାସ କରୁଥିବାରୁ ଏହାର ନାମ ଗୋବିନ୍ଦ ହୋଇଅଛି ବୋଲି ପ୍ରବାଦ ଅଛି । ମହୁଷାଶୁଣି, ଚଢ଼େଇ

ବସା ପଲ୍ଲୁଡ ବଲ୍ଲ ନାମଧାରୀ ଅଛ୍ଛ କେତେଗୁଡଏ କ୍ଷୁଦ୍ର ପର୍ବତ ଏହ ଗ୍ରଜ୍ୟରେ ବଦ୍ୟମାନ । ଗ୍ରଜ୍ୟର ପ୍ରାୟୁ ଅଷ୍ଟମାଂଶ ଅରଣ୍ୟାଚ୍ଛାଦତ । ବ୍ୟାଘ୍ର, ଭଲ୍ଲୁକ ପ୍ରଭୃତ ହଂସ୍ର ପଶୁମାନଙ୍କର ସଂଖ୍ୟା ନତାନ୍ତ କମ ନୁହେ । ପ୍ରତବର୍ଷ ଏହ ହଂସ୍ର ଜନ୍ତୁମାନଙ୍କଦ୍ୱାର ଗୋ, ମେଷାଦ ଅନେକ ପଶୁ ନହତ ହୁଅନ୍ତ ।

ମହାନଦୀ (ଚନ୍ଦ୍ରୋତ୍ପଳା) ଖଣ୍ଡପଡ଼ାର ଉତ୍ତରାଞ୍ଚଳରୁ କେତେକ ସ୍ଥାନ ଗ୍ରାସ କରୁଥିଲା । ମାନ ସୁପରିଣ୍ଟେଣ୍ଡେଣ୍ଟ ମହୋଦୟଙ୍କ ଯତ୍ନରେ ବନ୍ଧ ନର୍ମିତ ହେବାରୁ ଆଉ ସେପର ଗ୍ରାସ କରବାର ଅଶଙ୍କା ନାହିଁ । କୁସୁମୀ, ଶାଳମା, କୁଅଁରିଆ, ଡାହୁକା, ସୁନାମୁହଁ ଓ କାଳଗିରୀ ଏହ ଛଅଗୋଟି ନଦୀ ରାଜ୍ୟ ମଧ୍ୟଦେଇ ପ୍ରବାହତା । ଏଥିମଧ୍ୟରୁ ସୁନାମୁହାଁ ବା ସ୍ୱର୍ଣ୍ଣମୁଖୀ ଗିରନଦୀଟିର ଜନ୍ମସ୍ଥାନ ଓ ପତନସ୍ଥାନ ସେହ ଖଣ୍ଡପଡ଼ା । ରାଜ୍ୟମଧ୍ୟରେ କଣ୍ଟିଲୋ, ପଦ୍ମାବତୀ, ଖଳସାହି, ବାଇଗଣିଆ ଓ ଗୁଣ୍ଡୁଣୀ ଏହ ପାଞ୍ଚଗୋଟି ବଡ଼ଗ୍ରାମ । କଣ୍ଟିଲୋ ଓ ପଦ୍ମାବତୀ ବାସନ ସକାଶ ଏବଂ ଖଳସାହି ଓ ବାଇଗଣିଆ ଯଥାକ୍ରମେ ଶିଳ୍ପବସ୍ତ୍ର ନମନ୍ତେ ପ୍ରସିଦ୍ଧ । କଣ୍ଟିଲୋ ଶ୍ରୀ ନୀଳମାଧବ ଦେବଙ୍କର ମନ୍ଦର ଯୋଗେ ଭାରତବଖ୍ୟାତ । ରେଲମାର୍ଗର ନର୍ମାଣପୂର୍ବରୁ ବହୁ ପଶ୍ଚିମା ଯାତ୍ରୀ ପୁରୀଧାମକୁ ଗମନ କରବା ସମୟରେ କଣ୍ଟିଲୋରେ ଅବସ୍ଥାନ କର ମାଧବଜଉଙ୍କର ଦର୍ଶନ ଲାଭରେ କୃତାର୍ଥ ହେଉଥିଲେ । ଅଧୁନା ବୌଦ, ସୋନପୁର, ରାୟପୁର ଓ ବଲାସପୁର ପ୍ରଭୃତର ବହୁ ପାଦଚାରୀ ଯାତ୍ରୀ ମଧ୍ୟ ଏହ କଣ୍ଟିଲୋ ଦେଇ ଶ୍ରୀ କ୍ଷେତ୍ରକୁ ଗମନ କରନ୍ତ । ଏହ ଗ୍ରାମରେ ଚନ୍ଦ୍ରୋତ୍ପଳା ତୀରରେ ବ୍ରହ୍ମାଦ୍ର ଉପରେ ଶ୍ରୀ ନୀଳମାଧବ ଦେବଙ୍କ ମନ୍ଦର ବରାଜତ । ଏହାର ପ୍ରାଚୀନତା ସମ୍ବନ୍ଧରେ କପିଳସଂହତା ପ୍ରଭୃତ ପୁରାଣମାନ ସାକ୍ଷ୍ୟ ପ୍ରଦାନ କରୁଅଛ୍ଛ । ଏହ ମନ୍ଦର ଶ୍ରୀଧାମର ସଂକ୍ଷିପ୍ତ ଅନୁକୃତ କହଲେ ଅତ୍ୟୁକ୍ତ ହେବ ନାହିଁ । ଏଠାରେ ମାଧବ'

ଶମ୍ଭୁଙ୍କର ଚରଣାରବିନ୍ଦରୁ ନିତ୍ୟସ୍ରାବିଣୀ କ୍ଷୀଣଜଳଧାରା ଗଙ୍ଗାଦେବୀ ସର୍ବଦା ସମଭାବରେ ପ୍ରବାହିତା ହୋଇ ଭକ୍ତପିପାସା ଦୂର କରୁଅଛନ୍ତି ଏବଂ ପର୍ବତ ଦେଶରେ ଅନ୍ୟତ୍ର ପ୍ରସ୍ରବଣର ଚିହ୍ନମାତ୍ର ଦୃଷ୍ଟ ହୋଇ ନ ଥିବାରୁ ଅବିଶ୍ୱାସୀ ନାସ୍ତିକଗଣର ହୃଦା ମୂର୍ତ୍ତିପୂଜାପ୍ରତି ବିଶ୍ୱାସ ଜନ୍ମାଉଅଛନ୍ତି । ମନ୍ଦିରର ବେଢ଼ାରେ ସିଦ୍ଧେଶ୍ୱରାଖ୍ୟ ଯେଉଁ ବାଣଲିଙ୍ଗ ବିରାଜିତ ତାହାଙ୍କର ଗାତ୍ର ସୂର୍ଯ୍ୟଙ୍କର ଉତ୍ତରାୟଣ ଓ ଦକ୍ଷିଣାୟନ ଗତି ସଙ୍ଗେ ପରିବର୍ତ୍ତିତ ହେଉଥିବା ପୂର୍ବ ରାଜପୁରୁଷମାନଙ୍କର କଠୋର ପରୀକ୍ଷାରେ ସତ୍ୟ ବୋଲି ପ୍ରମାଣିତ ହୋଇଅଛି । ଶ୍ରୀଧାମରେ ବିମଳା ଦେବୀ, ଭୁବନେଶ୍ୱରୀ ଦେବୀ, ଲକ୍ଷ୍ମୀ ଦେବୀ ଓ ସରସ୍ୱତୀ ଦେବୀ ପ୍ରଭୃତିଙ୍କର ଯେଉଁସବୁ ମନ୍ଦିର ବିରାଜିତ, ଏଠାରେ ମଧ୍ୟ ଠିକ ସେହିପରି ଦେବଦେବୀଙ୍କର ମନ୍ଦିର କ୍ଷୁଦ୍ରାକାରରେ ବିଦ୍ୟମାନ । ପୁରୀଧାମସଦୃଶ ଏଠାରେ ମଧ୍ୟ ରୋହଣୀ କୁଣ୍ଡ, କାକଚତୁର୍ଭୁଜ, ଲକ୍ଷ୍ମୀପାଦପଦ୍ମ, ମୁକ୍ତି ମଣ୍ଡପ ଓ ଝୁଲଣ ମଣ୍ଡପ ପ୍ରଭୃତି କ୍ଷୁଦ୍ରାକୃତିରେ ବିରାଜିତ ରହିଅଛି । ମୂଳତଃ ଏହି ସ୍ଥାନଟି ଦ୍ୱିତୀୟ ପୁରୀଧାମ ଓ ଗୋଟିଏ ପ୍ରସିଦ୍ଧ ଦର୍ଶନୀୟ ସ୍ଥାନ । ସମ୍ପ୍ରତି ଏହି ମନ୍ଦିର ଜୀର୍ଣ୍ଣ ହୋଇ ଯାଇଥିବାରୁ ତାହାର ସଂସ୍କାରନିମିତ୍ତ ଖଣ୍ଡପଡ଼ାର ସୁପେରିଣ୍ଟେଣ୍ଡେଣ୍ଟ ବାବୁ ଭକ୍ତବଲ୍ଲଭ ଦାସ ପ୍ରାଣପଣ ଯତ୍ନ କରୁଥିଲେ । ସେହି ଯତ୍ନ ସଫଳ ହୋଇଥିଲେ ଭଗତବାବୁଙ୍କର ବିଶେଷ ସୁଖ୍ୟାତି ହୋଇଥାନ୍ତା । ମାତ୍ର ତାହାଙ୍କର ସ୍ଥାନାନ୍ତର ଗମନ ହେବାରୁ ମନୋରଥ ଅପୂର୍ଣ୍ଣ ରହିଗଲା । ଭକ୍ତବଲ୍ଲଭ ବାବୁଙ୍କର ପିତା ପରମ ଧାର୍ମିକ ବାବୁ ରାଜମଣି ଦାସ ଏଠାର ସ୍ୱର୍ଗତ ରାଜା ନଟବର ସିଂହଙ୍କ ରାଜତ୍ୱ ସମୟରେ ଏହି ରାଜ୍ୟର ଦେବାନ ପଦରେ ନିଯୁକ୍ତ ହୋଇଥିଲେ । ସେ ପ୍ରାୟ ୪୦ ବର୍ଷକାଳ ପ୍ରଶଂସିତ ଭାବରେ କାର୍ଯ୍ୟ କରି ପ୍ରସିଦ୍ଧି ଲାଭ କରିଥିଲେ ଏବଂ ନଟବର ସିଂହଙ୍କର ସ୍ୱର୍ଗାରୋହଣପରେ ଭୂତପୂର୍ବ ରାଜା ରାମଚନ୍ଦ୍ର ସିଂହଙ୍କ ରାଜତ୍ୱର କେତେକ ସମୟ ଭୋଗକରି ବହୁ ସମ୍ମାନଲାଭ ପୁରଃସର କାର୍ଯ୍ୟରୁ

ଅବସର ଗ୍ରହଣ କଲେ । ସେ ପ୍ରାୟ ବ ୨୦ବର୍ଷ କାଳ ଖଣ୍ଡପଡ଼ା ରାଜକୋଷରୁ ମାସିକ ୫୨୫୯ ଲେଖାଏଁ ପେନ୍‌ସନ୍ ଭୋଗକରି ୮୨ ବର୍ଷରେ ପରଲୋକ ଗମନ କରିଅଛନ୍ତି । ଭକ୍ତବତ୍ସଳ ବାବୁ ସେହି ରାଜମନ୍ତ୍ରୀଙ୍କର ଜ୍ୟେଷ୍ଠପୁତ୍ର ଅଟନ୍ତି । ଭକ୍ତବତ୍ସଳ କଲେଜଶିକ୍ଷାର ସମାପନାନନ୍ତର ଓଡ଼ିଶା ବିଭାଗୀୟ କମିସନରଙ୍କର ପେସ୍କାରପଦରେ ନିଯୁକ୍ତ ହେଲେ । ସେଠାରେ ଦକ୍ଷତାର ସହିତ କାର୍ଯ୍ୟ କରି ଉପରିସ୍ଥ କର୍ମଚାରୀମାନଙ୍କର ସନ୍ତୋଷଭାଜନ ହୋଇଥିଲେ । ତେଣୁ ସ୍ୱୀୟ ପିତାଙ୍କର ଅବସର ଗ୍ରହଣ ପରେ ରାମଚନ୍ଦ୍ର ସିଂହଙ୍କ ରାଜତ୍ୱରେ ୧୯୧୮ସାଲରେ ଖଣ୍ଡପଡ଼ାରେ ପୈତୃକ ପଦବୀକୁ ଅଭିଷିକ୍ତ ହେଲେ । ରାମଚନ୍ଦ୍ର ସିଂହଙ୍କର ପରଲୋକ ପ୍ରାପ୍ତି ପରେ ରାଜ୍ୟଟି Court of wards ହେବାରୁ ଭକ୍ତବତ୍ସଳ ତତ୍ରତ୍ୟ ସୁପରିଂଟେଣ୍ଡେଣ୍ଟ ପଦରେ ଅଧିଷ୍ଠିତ ହେଲେ । ସେ ବର୍ତ୍ତମାନ ରେଢ଼ାଖୋଲ ଷ୍ଟେଟର ଦେବାନ ହୋଇଅଛନ୍ତି ।

ଖଣ୍ଡପଡ଼ା ନଅଗଡ଼ର ଅଧିବାସୀମାନଙ୍କ ମଧ୍ୟରେ ଅଧିକାଂଶ ବ୍ରାହ୍ମଣ, କରଣ ଓ କ୍ଷତ୍ରିୟ ଅଟନ୍ତି । ସ୍ୱର୍ଗୀୟ ଚନ୍ଦ୍ରଶେଖର ସାମନ୍ତଙ୍କ ଭଳି ଖଣ୍ଡପଡ଼ାରେ ଆଉ କେତେଜଣ କୃତୀ ସନ୍ତାନ ଥିଲେ । ସେଥି ମଧ୍ୟରୁ ଭକ୍ତପ୍ରବର ସାନବନ୍ଧୁ ମିଶ୍ରଙ୍କ ନାମ ବିଶେଷ ଉଲ୍ଲେଖଯୋଗ୍ୟ । ସାନବନ୍ଧୁ ମିଶ୍ରଙ୍କର ରାଜଦତ୍ତ ଉପାଧି ଖାଡ଼ଙ୍ଗା ( ଖଡ୍‌ଗରାୟ ) ଥିଲା । ସେ ଯେପରି ମହାପଣ୍ଡିତ ଥିଲେ ସେହିପରି ଜଣେ ପରମ ବୈଷ୍ଣବ ଥିଲେ । ସଂସ୍କୃତ ଶ୍ରୀମଦ୍‌ଭାଗବତରେ ତାହାଙ୍କର ସମ୍ପୂର୍ଣ୍ଣ ପାରଦର୍ଶିତା ଥିଲା । ତଦାନୀନ୍ତନ ଭକ୍ତ ରାଜା ନାରାୟଣ ମଙ୍ଗରାଜ ଖାଡ଼ଙ୍ଗାଙ୍କର ପଟ୍ଟଶିଷ୍ୟ ଥିଲେ । ପ୍ରତ୍ୟହ ସନ୍ଧ୍ୟା ସମୟରେ ଗୁରୁଦେବ ଶ୍ରୀମଦ୍‌ଭାଗବତ ଅର୍ଥ କରନ୍ତି ଏବଂ ଶିଷ୍ୟ ରାଜା ଉତ୍କଣ୍ଠ ହୋଇ ତାହା ଶ୍ରବଣ କରନ୍ତି । ପୁରାଣପାଠର ଶେଷ ସମୟକୁ ଗୁରୁଙ୍କର ଶୁଦ୍ର ଗାମୁଛା ( କରିଆ ଗାମୁଛା ) ଓ ଶିଷ୍ୟଙ୍କର ରୁମାଲ ଅଜନଧାରାରେ ଆର୍ଦ୍ର ହୋଇ ଯାଇଥାଏ ।

ଖାଡ଼ଙ୍ଗା ମହୋଦୟଙ୍କର ଅଷ୍ଟାଦଶ ସହସ୍ର ଭାଗବତ ଶ୍ଳୋକ ମୁଖସ୍ଥ ଥିବାରୁ ସେ ପୁରାଣ ପାଠ ସମୟରେ କେବଳ ପୂଜା ନିମନ୍ତେ ପୁସ୍ତକର ବ୍ୟବହାର କରୁଥିଲେ । ଦୀନବନ୍ଧୁ ପ୍ରକୃତରେ ଦୀନବନ୍ଧୁ ଥିଲେ । କିଛି ନା କିଛି ବିତରଣ କରିବା ତାହାଙ୍କର ଦୈନନ୍ଦିନ ବ୍ରତ ଥିଲା । ରାଜା ଗୁରୁଦେବଙ୍କୁ ଯାହା ପ୍ରଦାନ କରନ୍ତି, ଗୁରୁ ତହିଁର ଅଧିକାଂଶ ଦରିଦ୍ର-ମାନଙ୍କୁ ଅର୍ପଣ କରନ୍ତି । ଏପରି କି ଭୋଜନରେ ବସିବା ପୂର୍ବରୁ ଯଦି କେହି କ୍ଷୁଧାର୍ତ୍ତ ଅତିଥି ଉପସ୍ଥିତ ହୁଏ ତେବେ ନିଜପାଇଁ ବଢ଼ା ହୋଇଥିବା ଅନ୍ନାଦି ତାହାଙ୍କୁ ପ୍ରଦାନ କରନ୍ତି ଏବଂ ସ୍ୱୟଂ ଗୃହରେ ଥିବା ଅବଶିଷ୍ଟ ଖାଦ୍ୟ ଭୋଜନ କରନ୍ତି । ସମୟେ ସମୟେ ଏପରି ଘଟିଥାଏ ଯେ ସ୍ୱୀୟ ଅନ୍ନ ଅତିଥିଙ୍କୁ ଦେଇ ଗୃହରେ ଆଉ ପ୍ରସ୍ତୁତ ଅନ୍ନାଦିର ଅଭାବରୁ ସେ ଉପବାସରେ ରହନ୍ତି । ସେଥିରେ ତାହାଙ୍କର ବିଶେଷ ଆନନ୍ଦ ଅନୁଭୂତ ହୋଇଥାଏ । ଅଧୁନାତନ ଯୁଗରେ ଏ କଥା ଅନ୍ୟ ନିକଟରେ ପ୍ରକାଶ କଲେ କେହି କେହି ସେପରି ଦାତାଙ୍କୁ ଓଲ୍ଡ ବୋଲି କହିବେ । ଥରେ ରାଜା ମଫସଲରେ ଥିବା ଖମାରରୁ ୧୮ ଖାଉଡ଼ି ବା ୩୬ ବସ୍ତା ଧାନ ଗୁରୁଙ୍କୁ ଜମା ପ୍ରଦାନ କଲେ । ଗୁରୁ ମହାଶୟ ଧାନଗୁଡ଼ିକ ଗୃହକୁ ଅଣୁ ଅଣୁ ବାଟରେ ଯାଚକମାନଙ୍କୁ ସେଥିରୁ ୩୫ ବସ୍ତା ଧାନ ବିତରଣ କରି ଏକ ବସ୍ତା ମାତ୍ର ଗୃହକୁ ନେଲେ । ଏ ବିଷୟ ରାଜା ଜାଣିପାରି ସନ୍ଧ୍ୟା ସମୟରେ ଗୁରୁଦେବଙ୍କୁ ପଚାରିଲେ, "ସବୁ ଧାନଗୁଡ଼ିକ ବିତରଣ ହୋଇଗଲା ପରା ?" ଗୁରୁଦେବ ଉତ୍ତର ଦେଲେ, "ନା, ଏକବସ୍ତା ମାତ୍ର ବିତରଣ ହୋଇଅଛି ।" ଏହାର ଗୂଢ଼ ଅର୍ଥ ଏହି ଯେ ଯାହା ପରିବାର-ମାନଙ୍କ ବ୍ୟବହାରରେ ଲାଗିଲା ତାହାହିଁ ବିତରିତ ହେଲା; ଅନ୍ୟକୁ ପ୍ରଦତ୍ତ ଧାନଗୁଡ଼ିକ ଭବିଷ୍ୟତକୁ ସଞ୍ଚିତ ରହିଲା । ଏହିପରି ଅଦ୍ଭୁତ ଅନେକ ବିଚିତ୍ର ଘଟନା ତାହାଙ୍କ ଜୀବନରେ ଘଟିଥିବାର ଶ୍ରୁତିଗୋଚର ହୁଏ । ଗ୍ରନ୍ଥର ବାହୁଲ୍ୟ ଭୟରେ ସେ ସବୁ ପରିତ୍ୟକ୍ତ ହେଲା ।

ମୁଁ ପୂର୍ବରେ ଲେଖିଛି ଯେ ସଂସ୍କୃତ ଶ୍ରୀମଦ୍ଭାଗବତକୁ ଖାଡ଼ଙ୍ଗା ମହାଶୟ ନବାକ୍ଷରୀ ପଦ୍ୟରେ ଉତ୍କଳ ଭାଷାରେ ଅନୁବାଦିତ କରିଥିଲେ । ଏପରି ପଦ୍ୟାନୁବାଦ ଆଜିକାଲି ଦେଖାଯାଏ ନାହିଁ । ଶ୍ରୀଧରସ୍ୱାମୀଙ୍କର ଟୀକାନୁସାରେ ପ୍ରତି ଶ୍ଳୋକର ଅନୁବାଦ ହୋଇଅଛି । ଉକ୍ତ ଅନୁବାଦ ପାଠକଲେ ସଂସ୍କୃତଜ୍ଞ ବ୍ୟକ୍ତିମାନେ ମୂଳ ଶ୍ଳୋକର ଅନ୍ୱୟ କରିପାରିବେ । ପଣ୍ଡିତ ମହାଶୟ ଓଡ଼ିଶା, ବଙ୍ଗ ଓ ବିହାର ପ୍ରଦେଶରୁ ତାଳପତ୍ର ପୁସ୍ତକ ଆଣାଇ ପାଠାନ୍ତର ଦୃଷ୍ଟିରେ ପଦ୍ୟାନୁବାଦ କରିଥିବାର ତଦୀୟ ଗ୍ରନ୍ଥରେ ଲେଖିଯାଇଅଛନ୍ତି । ତାହା ଏହି—

× × ×

| | |
|---|---|
| ମୋହର ନାମ ଦୀନବନ୍ଧୁ | । ମୋ ପ୍ରଭୁ କୃଷ୍ଣ କୃପାସିନ୍ଧୁ । ୯ । |
| ମୁକୁନ୍ଦପୁର ନାମେ ଖ୍ୟାତ | । ସେ ଗ୍ରାମେ ଅଟନ୍ତି ଯେ ସ୍ଥିତ ।୧୦। |
| ବୈଷ୍ଣବ ବୃନ୍ଦାବନ ଦାସ | । ଶ୍ରୀକୃଷ୍ଣ ଭକ୍ତିରେ ଉଲସ ।୧୧। |
| ଶ୍ରୀ ନିତ୍ୟାନନ୍ଦ ପରିବାର | । ଅଟନ୍ତି ଅତି ଶୁଦ୍ଧାଚାର ।୧୨। |
| ଯେ ଅଟେ ତାହାଙ୍କର ଶିଷ୍ୟ | । ବୈଷ୍ଣବ ଜୟରାମ ଦାସ ।୧୩। |
| ତାଙ୍କ ପ୍ରୀତିରେ ଜଣ୍ୟ ହେଲି | । ଭାଗବତକୁ ଗୀତ କଲି ।୧୪। |
| ଗୌଡ଼ ବାରାଣସୀ ଉତ୍କଳ | । ଏ ତିନ ପୋଥି ଆଣି ଠୂଳ ।୧୫। |
| କରଣ ଶୁଦ୍ଧାଶୁଦ୍ଧ ଜାଣି | । ଗୀତକୁ ରଚିଲି ପ୍ରମାଣି ।୧୬। |
| ସୁଜନେ ନ ଧର ମୋ ଦୋଷ | । ମୁଁ ତୁମ୍ଭମାନଙ୍କର ଦାସ ।୧୭। |

ସମ୍ପ୍ରତି ଉକ୍ତ ପୁସ୍ତକ ଅପ୍ରକାଶିତ ଅବସ୍ଥାରେ ରହିଅଛି । ତଦୀୟ ବଂଶଧର ମୋହର ବାଲ୍ୟଗୁରୁ ପୂଜ୍ୟପାଦ ସ୍ୱର୍ଗୀୟ ପଣ୍ଡିତ ରାଜବଲ୍ଲଭ ମିଶ୍ର ଉକ୍ତ ଗ୍ରନ୍ଥ ତାଳପତ୍ର ପୁସ୍ତକରୁ କାଗଜକୁ ଉଦ୍ଧାର କରିଥିଲେ । ସେହି ହସ୍ତଲିପି ପୁରୀ ରାଜାଙ୍କର ଭୂତପୂର୍ବ ଦେବାନ ବାବୁ ରାଜକିଶୋର ଦାସଙ୍କ

ନିକଟରେ ଅଛି । କେହି ଇଚ୍ଛା କଲେ ତାହାକୁ ବ୍ୟକ୍ତିଗତ ଭାବରେ ଅବା ସମ୍ମିଳିତ ଭାବରେ ମୁଦ୍ରିତ କରାଇପାରନ୍ତି ।

ଭାଗବତ ଗ୍ରନ୍ଥ ଭିନ୍ନ ଖାଡ଼ଙ୍ଗା ମହୋଦୟଙ୍କର ଅନ୍ୟର ଅନେକ ସଂସ୍କୃତ ପଦ୍ୟରଚନା ଅଛି । ସେଥି ମଧ୍ୟରୁ କେତେଗୁଡ଼ିଏ ସ୍ତୋତ୍ର ପ୍ରୋକ୍ତ ପଣ୍ଡିତ ରାଜବଲ୍ଲଭ ମିଶ୍ର ଭକ୍ତିରତ୍ନମାଳା ନାମରେ ମୁଦ୍ରିତ କରାଇଅଛନ୍ତି । ଯେ ସେହି ପୁସ୍ତକ ପାଠ କରିବେ ସେ ଖାଡ଼ଙ୍ଗା ମହୋଦୟଙ୍କର ପାଣ୍ଡିତ୍ୟ ଓ ଭଗବଦ୍‌ଭକ୍ତି ବିଷୟ ସମ୍ୟକ୍ ଉପଲବ୍ଧି କରିପାରିବେ । ଦୀନବନ୍ଧୁ ମିଶ୍ର ମହୋଦୟ କିପରି ଭକ୍ତିରସରେ ଅପ୍ଲୁତ ଥିଲେ ଏବଂ ସରଳ ସଂସ୍କୃତ ପଦ୍ୟ ରଚନାରେ ତାହାଙ୍କର କିପରି ଅଧିକାର ଥିଲା ନିମ୍ନୋଦ୍ଧୃତ ତଦୀୟ ଶ୍ରୀ କୃଷ୍ଣସ୍ତବରୁ ପାଠକମାନେ ସହଜରେ ଅନୁମାନ କରିବେ ।

ଜୟ ଜୟ କୃଷ୍ଣ କୃପାମୟ ସିନ୍ଧୋ, ବ୍ରଜବନିତାଜନଜୀବନବନ୍ଧୋ ।
ଅଧ୍ୱମୁନି-ମାନସ ମୃକ୍ଷସ ଦମଳଂ, ବନ୍ଦେ ନିତ୍ୟଂ ତବ ପଦକମଳଂ ।୧।

ଧର୍ମଂ ଚାର୍ଥଂ କାମଂ ମୋକ୍ଷଂ, ଯାଚେ ନାହଂ କମପି ପରେଶଂ ।
ତବଚରଣାମ୍ବୁଜ ସେବା ମେବ, ପ୍ରଦତର ମହ୍ୟଂ ମୁରହର ଦେବ ।୨।

ଯସ୍ୟାସ୍ତି ତ୍ୱତ୍ପଦ ଯୁଗଭକ୍ତି, ସ୍ତସ୍ୟାଧୀନା ଭବତି ବିମୁକ୍ତିଃ ।
କ୍ଷମସୌଧୀରଷ୍ଟପଲ ନିସର୍ଗଂ, ବାଞ୍ଛତି ଧର୍ମୀଦାନାଂ ବର୍ଗଂ ।୩।

ତ୍ୱୟି ପତିତବ୍ରଜପାବନଦକ୍ଷେ, ବସତି ହୃଦ ସ୍ୱାଶ୍ରିତ ଜନରକ୍ଷେ ।
ଭଜତି ଯଦନ୍ୟଂ ଦେବଂ ଲୋକଃ, ସଖୁ ତବ ମାୟା ବୀର୍ଯ୍ୟୋଦ୍ରେକଃ ।୪।

ତବ ଚରିତାଖ୍ୟା ଲେଖକ ପ୍ରଣତଃ, ସ୍ମୃତପୂଜାଳୟଗତଚ୍ୟୁ ପ୍ରୀତଃ ।
ଶ୍ରୁତିରସନାଦ୍ଦୃଙ୍ମସ୍ତକଚେତଃ, କରଚରଣସ୍ୟ ପ୍ରାଣମ ଜେତଃ ।୫।

ଭୁଞ୍ଜାନଃ ସ୍ୱଂ କର୍ମବିପାକଂ, ନେଚ୍ଛାମ୍ୟର୍ଥାନ୍ନ ପୁନର୍ନାକଂ ।
ପ୍ରାର୍ଥ୍ୟଂ କେବଳ ମେତନ୍ମରଣେ, ସରତି ଯଥାମେ ହୃତ୍ତବ ଚରଣେ ।୬।

ନାଥଗଣେଶ୍ୱା ବୃକ୍ଷୈର୍ବ୍ବାସ୍ତଃ, ସିକତା ଭୂମେ ର୍ନବସ ସ୍ତାସ୍ତଃ ।
ସଂସାରେଽସ୍ମିନ୍ ମମଜନ ନଧନେ, କଃ ସଂଖ୍ୟାତୁଂ ପ୍ରଭବତି ଗହନେ । ୭ ।
ପ୍ରଚୁରସ୍ୱାସ ପ୍ରଭବ ନିଧନଂ, ଶ୍ରୁତି ଶଲ୍ଲାସ୍ପିତ ମନ୍ତ୍ର କଦନଂ ।
ତଭୀ ଶୂଷ୍ୟଲ୍ଲୁଖ ଗଳତାଲୋ, ସ୍ୱାତା ଭବମେ କୃଷ୍ଣ କୃପାଲୋ । ୮ ।
ପ୍ରାୟଶ୍ଚିତ୍ତ ଦେଶେ ଯସ୍ୟ, ସ୍ମୃତ ରପିନାମ୍ନଂ ଜଗତି କୃତସ୍ୟ ।
ତସ୍ୟା ପ୍ୟଂହୋ ରାଶେଃ ପାନ୍ଦଂ, ପାବନ୍ୟୁ ବସ୍ତ୍ରୋ ମାମତି ମାନ୍ଦଂ । ୯ ।
କୃଷ୍ଣ ତବାସ୍ମୀତ୍ୟୁକ୍ତ୍ୱା ଖିନ୍ନଃ, ସକୃଦପିମାଂ ଯୋ ଭବତି ପ୍ରପନ୍ନଃ ।
ତସ୍ୟାଶ୍ରିତଂ ବଦଧାମୀତି, ବ୍ରତମାସ୍ମୀୟଂ ସ୍ମରସା ନୀତଃ । ୧୦ ।
ଅକଳିତପାରଭବାର୍ଣ୍ଣବ ନାବଂ, ବଦଧତ ଯେ ତ୍ୱୟି ସୁଦୃଢ଼ଂ ଭାବଂ ।
ତୈର୍ମେ ସଙ୍ଗୋ ଭବତୁ କ୍ରମନୈ୍ୟଃ, ସଂସାରାପଣପତିତୈଃ ପର୍ଣ୍ଣୈଃ । ୧୧ ।
ତ୍ୱୟି ବିଶ୍ୱାସ୍ମିନ ବିରଚିତ ଭକ୍ତି, ର୍ଯସ୍ତେ ନାମାନ୍ୟନିଶଂ ବକ୍ତି ।
ସ୍ମରତି ଚ ନିତ୍ୟଂ ତ୍ୱାମତିରୁଚିରଂ, ଜୀବତି ଜୀବତି ଜୀବତି ସଚିରଂ । ୧୨ ।
ଝଂପ କମଠାଦ୍ୟା ଭବଦବତାରାଃ, ସତ୍ୟଂ ପୂଜ୍ୟା ସ୍ତ୍ରିଭୁବନସାରାଃ ।
ତଦପି ମନୋମେ ଭବତି ସତୃଷ୍ଣଂ, ତ୍ୱାମେବାନୁସ୍ମର୍ତ୍ତୁଂ କୃଷ୍ଣଂ । ୧୩ । ୦
ତ୍ୱାଂ ଶ୍ରୀ ବୃନ୍ଦାବପିନେଽଗମ୍ୟେ, ଶାରଦରାକାପତିରୁଚିରମ୍ୟେ ।
ଅତସୀପୁଷ୍ପପ୍ରତିମଚ୍ଛାୟଂ, ନ୍ୟକ୍କୃତକୋଟିମନୋଭବକାୟଂ । ୧୦ ।
ଦଧତଂ ପୀତଂ ବସନଂ ସାରଂ, ସିଞ୍ଜନ୍ନୂପୁର ଚରଣମୁଦାରଂ ।
କୌସ୍ତୁଭକଣ୍ଠଂ ଧୃତବନମାଳଂ, ସମୁଦିତନାନାଭୂଷଣଜାଳଂ । ୧୫ ।
ବର୍ତ୍ତୁଳପୀନାୟତଭୁଜଯୁଗଳଂ, ପ୍ରଣତଜନାଭୟକରକରକମଳଂ ।
ମୁଖକମଲାବିଷ୍କୃତଦରହାସଂ, ପ୍ରୋଜ୍ଜ୍ୱଳମୁକ୍ତାବଳିସଲ୍ଲାସଂ । ୧୬ ।
ଅନୁକୃତଦାଡ଼ିମବୀଜସୁଦନ୍ତଂ, ଭୁବନବଶୀକରଚତୁରଦୃଗନ୍ତଂ ।
ମଞ୍ଜୁଳତିଲକଂ ଚନ୍ଦ୍ରକଚୂଳଂ, ଜଗଦାନନ୍ଦସମୁଚ୍ଚୟମୂଳଂ । ୧୭ ।
ଗୋପୀସଂଖ୍ୟାମନୁଧୃତଦେହଂ, ବଳୟିତତଡ଼ିତ୍‌ପ୍ରତିଯୁଗମଧ୍ୟେଽହଂ ।
ତନ୍ମଣ୍ଡଳାର୍ପିତବାହୁଂସସେ, ସମୁଦ୍ଦିତରତିଂ ହୃଦସମ୍ପାସେ । ୧୮ ।

କାମକ୍ରୋଧାଦିଭିରଭିଭୂତେ, ଭବଦନୁକୂଲୈଃ ସନ୍ତିର୍ହ୍ମୁତେ ।
କରୁଣାପାଙ୍ଗ ପାତୟ ଦୀନେ, ମୟୀନନ୍ଦାତ୍ମଜ ପାପିନ ହୀନେ । ୧୯ ।
ଜପନତପସ୍ମୃତିଭିରୟୁ ହରିଚରଣଂ, ଯାମିତ୍ୱାଂ ଭବଶ୍ରିତଃ ଶରଣଂ ।
ସ୍ତବଶ ଯଦସ୍ତୁଚି ତତ୍ କୁରୁକାନ୍ତାଂ, ପୁନରପି କରବୈ ସ୍ୱକୁଶଳଚିନ୍ତାଂ ।୨୦।
ହରିଗୁଣଗୀତେ ରଚନବଦ୍ୟାନାଂ, ବଂଶଜ ମେତାଂ ସପୃଦ୍ୟାନାଂ ।
ପଠନ୍ତି ନରୋଯେ ପ୍ରଦ୍ୱିତଚେତା, ସ୍ତମବତି ଭୁତ୍ୟଂ କଂସବିଜେତା । ୨୧ ।

ଇତି ଶ୍ରୀ ଦୀନବନ୍ଧୁ ମିଶ୍ର ବିରଚିତଂ ଶ୍ରୀକୃଷ୍ଣସ୍ତବରତ୍ନଂ ସମ୍ପୂର୍ଣ୍ଣଂ ।

ଖାଡ଼ଙ୍ଗାଙ୍କ ବଂଶରେ ହରିହର ମିଶ୍ର, ଅନନ୍ତ ଖାଡ଼ଙ୍ଗା, ବାଇଧର ପୁରୋହିତ ଓ ରାଜବଲ୍ଲଭ ମିଶ୍ର ପ୍ରଭୃତି ସମସ୍ତେ ନ୍ୟୂନାଧିକ ଭାବରେ ପଣ୍ଡିତ ଥିଲେ ଏବଂ ସଂସ୍କୃତ ଭାଗବତରେ ବ୍ୟୁତ୍ପନ୍ନ ଥିଲେ । ଅନନ୍ତ ଖାଡ଼ଙ୍ଗା ଚନ୍ଦ୍ରଶେଖର ସାମନ୍ତଙ୍କର ସଂସ୍କୃତାଧ୍ୟାପକ ଥିଲେ । ହରିହର ମିଶ୍ର ଜଣେ ଉଚ୍ଚଧରଣର କବି ଥିଲେ । ତତ୍ପ୍ରଣୀତ କମଳାଷ୍ଟକ ପ୍ରଭୃତି ପାଠକଲେ ତାହାଙ୍କ ପାଣ୍ଡିତ୍ୟ ସହଜରେ ଉପଲବ୍ଧ ହୁଏ । ଚନ୍ଦ୍ରଶେଖର ହରିହର ମିଶ୍ରଙ୍କର କବିତାକୁ ପ୍ରଶଂସା କରୁଥିଲେ । ସେଥିମଧ୍ୟରୁ ଦୁଇଗୋଟି ଶ୍ଳୋକ ଓ କମଳାଷ୍ଟକ ପାଠକମାନଙ୍କ ସମୀପରେ ଉପସ୍ଥାପିତ କରୁଅଛୁ । ତାହା ରାଜସଭାରେ ରାଜାଙ୍କର କୀର୍ତ୍ତିପ୍ରତାପ ଓ ବୀରବଲ୍ଲୀ ବର୍ଣ୍ଣନା ପ୍ରସଙ୍ଗରେ ତାତ୍କାଳିକ ରଚିତ ଶ୍ଳୋକ ମଧ୍ୟରୁ ଦୁଇଟି ।

## କମଳାଷ୍ଟକଂ

ନମଦମରେନ୍ଦ୍ରମୌଳିମିଳନ୍ମଣିକିରଣଯୁତହିତ ପାଦତଳେ ।
ନବମୁକ୍ତାମୟୁମଣସରମଣ୍ଡଳମଣ୍ଡନମଣ୍ଡିତକୁଚଯୁଗଳେ ॥
ହରିଧରଦ୍ଭୀତଶୁଦ୍ଧହେମକୃତଭୂଷଣଭୂଷିତକାୟଲତେ ।
ଜୟ କମଳେ କମଳାସନବାସିନି ବନ୍ଧୁବିଳାସିନି ସିନ୍ଧୁସୁତେ । ୧ ।

ଅଧମୋଦ୍ଧାରଣି ଦୁରିତବିଦାରଣି ପାପୋତ୍ତାରଣି ପଦ୍ମକରେ ।
ସୁରନରନାଗପୁରୀଚରବନ୍ଦିତରଧନଜନଜୀବନବୃତ୍ତିପରେ ॥
ତ୍ରିଭୁବନସୁନ୍ଦରି ଜଗଦୀଶ୍ୱରି ପରିପାଲୟ ସେବକକଳ୍ପଲତେ ।
ଜୟ କମଲେ କମଲାସନବାସିନି ବିଷ୍ଣୁବିଳାସିନି ସିନ୍ଧୁସୁତେ । ୨ ।
ନିଜଚରଣେଶରଣେଚ୍ଛୁଷୁ ଜନ୍ତୁଷୁ କୃତକରୁଣେ ବିତ ଘାନନଟେ ।
ସଦୟୂତଦ୍ୟେକ୍ଷଣକୋଣକୃତେକ୍ଷଣଲେଶଦତ୍ତପୁରୁଷାର୍ଥଭରେ ॥
ମାମବଲୋକୟ ଲୋକଜନନି ଜୟଦାୟିନି ସଜ୍ଜନଦବଂଗତେ ।
ଜୟ କମଲେ କମଲାସନବାସିନି ବିଷ୍ଣୁବିଳାସିନି ସିନ୍ଧୁସୁତେ । ୩ ।
ପଙ୍କଜଯୁଗ୍ମବରାଭୟସମ୍ଭୃତପାଣିଚତୁଷ୍ଟୟକାନ୍ତିଯୁତେ ।
ଦଣ୍ୟଚତୁର୍ଗଜକରକଳଶୀମିଳଦମୃତଦୟୂଦଭିଷେକକୃତେ ॥
ସୁରସିଦ୍ଧେଶ୍ୱରବନ୍ଦ୍ୟାଧରବରଚୃରଣଗଣକୃତଗୀତନୁତେ ।
ଜୟ କମଲେ କମଲାସନବାସିନି ବିଷ୍ଣୁବିଳାସିନି ସିନ୍ଧୁସୁତେ । ୪ ।
ଜ୍ୱଲଦନଲୋଜ୍ଜ୍ୱିଲଦମଲତମୋତ୍ତମହେମସମୁତ୍ଥିତକାନ୍ତିଧରେ ।
ନାରାୟଣପୁରମଣିମୟଚତ୍ୱରବମ୍ଭସପାବକଟକିକରେ ॥
ଅତିଲଳିତସ୍ମିତଚନ୍ଦ୍ର କଯୁ ଅତବଦନଚନ୍ଦ୍ରକୃତଭକ୍ତହିତେ ।
ଜୟ କମଲେ କମଳାସନବାସିନି ବିଷ୍ଣୁବିଳାସିନି ସିନ୍ଧୁସୁତେ । ୫ ।
ନବଜଳଦୋଦିତବିଧୁଦ୍ୟୁତିଧିବତଡ଼ିଦିବ ନୂତନଭୂତଘନେ ।
ତାପିଞ୍ଛୋପରି ପରିପତଦଙ୍ଗଳବଲ୍ଲିବ ଦୈବୀବିହୂଦଧିବନେ ॥
ତ୍ୱମସି କଟୋପରି ହେମବଦୀଶ୍ୱରି ଗୌରି ହରେହୃର୍ଦି ଭସ୍ୟଣିତେ
ଜୟ କମଲେ କମଲାସନବାସିନି ବିଷ୍ଣୁବିଳାସିନି ସିନ୍ଧୁସୁତେ । ୬ ।
କୋଟିକୋଟିଜନଜନିତମହାତପସା ପି ସୁଦୁର୍ଲ୍ଲଭଭୂଷ୍ଟିକଲେ ।
କ୍ଷଣମାତ୍ରେକ୍ଷଣଦାନଲବକ୍ଷଣବିରଚିତଶତଦୀପ୍ତଫଳେ ॥
ଅବଲୋକନଲବଣଭିଗାଂଶକ ମୟି ମୟି କୁରୁକରୁଣାର୍ଦ୍ରମତେ ।
ଜୟ କମଲେ କସଲାସନବାସିନି ବିଷ୍ଣୁବିଳାସିନି ସିନ୍ଧୁସୁତେ । ୭ ।

ଶ୍ରୀ ରାମାଦ୍ୟବତାରଧାରିନନ୍ଦଧରମନ୍ତ୍ରଧୃତସୀତାଦତନୋ ।
ଜୟ ରୁକ୍ମିଣି ଜୟ ଜାନକି ଭାର୍ଗବଧରଣି କୃତାର୍ଥୟ ମାମତନୋ ।
ଦୀନଂ ହୀନଂ ଧନଜନବର୍ଜିତ ମର୍ଜିତଦୁଃଖ ମଶେଷକୃତେ ॥
ଜୟ କମଲେ କମଲାସନବାସିନି ବଣ୍ଠୁବିଳାସିନି ସିନ୍ଧୁସୁତେ । ୮ ।
ଇଦମିହ ହରିହରମିଶ୍ରବିନିର୍ମିତପଦ୍ୟାଷ୍ଟକ ମତିକଷ୍ଟହରଂ ।
ହରିତରୁଣୀଗୁଣଯୁକ୍ତସୁକ୍ତମିତ ଯଃ କୁରୁତେ ନିଜ କଣ୍ଠତରଂ ।
ତସ୍ୟ ଧାନ୍ୟଧନଧାମଧରାଧୃତଧର୍ମସୁଧୀବୃଦ୍ଧିଜାତିରତେ ।
ଜୟ କମଲେ କମଲାସନବାସିନି ବଣ୍ଠୁବିଳାସିନି ସିନ୍ଧୁସୁତେ । ୯ ।

ଇତି ଶ୍ରୀ କମଲାଷ୍ଟକଂ ସମ୍ପୂର୍ଣ୍ଣମ୍ ।

ତତମ୍ଭୂନଃ କ୍ଷ୍ମାପନନ୍ଦନଃ ସମଜନି ରଜନୀକାନ୍ତବତ୍ କାନ୍ତକୀର୍ତ୍ତିଃ
ସ୍ୱାନ୍ତଃ ଶ୍ରୀ କାନ୍ତଚନ୍ଦ୍ରାନଶଜନତଘନାନନ୍ଦସନ୍ଦୀପ୍ୟମାନଃ ।
ଶ୍ରୀ ମଦ୍ବୈରାଗିନାମା ରିପୁକୁମୁଦବନୋଦଣ୍ଡମାର୍ତ୍ତଣ୍ଡଧାମା
ବୀର ଶ୍ରୀ ମର୍ଦ୍ଦରାଜ ଭ୍ରମରବର ଇତି ଖ୍ୟାତିଭୃତ୍ କ୍ଷ୍ମାପଚନ୍ଦ୍ରଃ । ୧ ।
ଲୋକା ଲୋକାନ୍ତ ଲୋକାବଧି ଗମନବିଧିଃ ସାଧିତଃ ସାଧୁ ତସ୍ମା-
ଲ୍ଲବ୍ୟଂ ଭାବ୍ୟଂ ହି ଭବ୍ୟଂ କ୍ୱ ନୁ ଗମନମିତି ପ୍ରଷ୍ଟୁକାମୌ ପ୍ରକାମମ୍ ।
କର୍ଣ୍ଣାଭ୍ୟର୍ଣ୍ଣାବତୀର୍ଣ୍ଣାବବସମବସତାଂ ଯସ୍ୟ କୀର୍ତ୍ତିପ୍ରତାପୌ
ବ୍ୟକ୍ତାସକ୍ତାକ୍ତମୁକ୍ତାଫଳକଳିତଲସଦ୍ ବୀରବଲ୍ଲୀଚ୍ଛଲେନ । ୨ ।

ଅର୍ଥାତ୍ ରାଜା ବନମାଳୀ ସିଂହଙ୍କର କନିଷ୍ଠ ପିତୃବ୍ୟଙ୍କ ପୁତ୍ର ପୃଥିବୀ-ପବିତ୍ରକାରୀ ବୈରାଗୀ ସିଂହ ଜନ୍ମଗ୍ରହଣ କରିଥିଲେ ଏବଂ ମର୍ଦ୍ଦରାଜ ଭ୍ରମରବର ଉପାଧି ଧାରଣପୂର୍ବକ ରାଜବୃନ୍ଦ ମଧ୍ୟରେ ଶ୍ରେଷ୍ଠତା ଲାଭ କରିଥିଲେ । ତାହାଙ୍କ କୀର୍ତ୍ତି ଚନ୍ଦ୍ରବତ୍ କମନୀୟ ଥିଲା ଏବଂ ସ୍ୱୀୟ ହୃଦୟରେ ସତତ ଶ୍ରୀ ନାରାୟଣଙ୍କ ଧ୍ୟାନଜନିତ ଗମ୍ଭୀର ଆନନ୍ଦରେ ସେ ଦୀପ୍ୟମାନ ଥିଲେ । ସେ ସ୍ୱକୀୟ ଶତ୍ରୁରୂପ କୈରବବନର ପ୍ରଖର ସୂର୍ଯ୍ୟ ସ୍ୱରୂପ ଥିଲେ

ଅର୍ଥାତ୍ ତଦୀୟ ପ୍ରବଳ ପ୍ରତାପରେ ଶତ୍ରୁମାନେ ଦଳିତ ହୋଇ ଯାଉଥିଲେ । ୧ ।

## ଦ୍ୱିତୀୟ ଶ୍ଳୋକର ଅର୍ଥ—

ଯାହାଙ୍କର କୀର୍ତ୍ତିପ୍ରତାପଦ୍ୱୟ ଦଗ୍ବଳୟବାସୀ ଲୋକମାନଙ୍କ ସମୀପକୁ ସମ୍ୟକ୍ ଗମନ କରିବା ପରେ ପୁନଶ୍ଚ କେଉଁ ନୂତନ ମଙ୍ଗଳମୟ ସ୍ଥାନକୁ ଗମନ କରିବୁ, ଏହା ସୁପ୍ରଭାବରେ ପଚାରିବା ନିମିତ୍ତ ଇଚ୍ଛୁକ ହୋଇ ସ୍ପଷ୍ଟ ଓ ଘନଭାବରେ ସ୍ୱଚ୍ଛମୁକ୍ତା ସଂଯୁକ୍ତ ଥିବା ପ୍ରଦୀପ୍ତ ହୀରବଲ୍ଲୀ ବ୍ୟାଜରେ ବୋଧହୁଏ ଦୁଇକଣ୍ଠ ନିକଟରେ ବାସ କରିଅଛି । ଏଠାରେ ରାଜାଙ୍କ କଣ୍ଠର ହୀରବଲ୍ଲୀ ନାମକ ଅଳଙ୍କାରଦ୍ୱୟକୁ କବି କୀର୍ତ୍ତିପ୍ରତାପ ସ୍ୱରୂପ ଉତ୍ପ୍ରେକ୍ଷା କରିଅଛନ୍ତି । ୨ ।

ଏହି ଶ୍ଳୋକଦ୍ୱୟର ଶ୍ରବଣରେ ରାଜା ବୈରାଗୀ ପରିତୁଷ୍ଟ ହୋଇ ପଣ୍ଡିତ ମହାଶୟଙ୍କୁ ସ୍ୱୀୟ କଣ୍ଠର ହୀରବଲ୍ଲୀ ଦୁଇଟି ପୁରସ୍କାର ସ୍ୱରୂପ ତତ୍କ୍ଷଣାତ୍ ପ୍ରଦାନ କରିଥିଲେ ।

ଦୀନବନ୍ଧୁଙ୍କ ବଂଶ ଭିନ୍ନ ଖଣ୍ଡପଡ଼ାରେ ହରି ପରମଗୁରୁ, ରାମ ପରମଗୁରୁ, ଦାମୋଦର ଦାଶ, ମହିତା ନାରାୟଣ ସଦସ୍ୟ, ସଦାଶିବ କବିରତ୍ନ ପଟ୍ଟନାୟକ ଓ ଅଭିବନ୍ଧୁ ପଟ୍ଟନାୟକ ପ୍ରଭୃତି କେତେକ ଜଣ ଉଚ୍ଚ ଧରଣର କବି ଓ ପଣ୍ଡିତ ଜନ୍ମଗ୍ରହଣ କରିଥିଲେ । ସମ୍ପ୍ରତି ମୋହର ସଂସ୍କୃତାଧ୍ୟାପକ ବିଦ୍ୟାଧର ବାଣୀଭୂଷଣ, ରାମଚନ୍ଦ୍ର ମହାପାତ୍ର ତର୍କ-ଦର୍ଶନ-ତୀର୍ଥ ଓ ମଦୀୟ ପରମ ସୁହୃତ୍ ଚନ୍ଦ୍ରଶେଖର ରଥ କାବ୍ୟତୀର୍ଥ ପ୍ରଭୃତି କେତେକ ପଣ୍ଡିତ ଏବଂ ଫକୀର ବ୍ରହ୍ମା ପ୍ରଭୃତି କେତେକ ଉତ୍କଳଭୂଷାର କବି ବିଦ୍ୟମାନ ଅଛନ୍ତି । ପୂଜ୍ୟପାଦ ବାଣୀଭୂଷଣ

ମହୋଦୟ କାବ୍ୟ, ବ୍ୟାକରଣ, ଅଲଙ୍କାର, ଦର୍ଶନ, ପୁରାଣ, ଜ୍ୟୋତିଷ, ଆୟୁର୍ବେଦ, ସ୍ମୃତି, ଯୋଗ ଓ କର୍ମକାଣ୍ଡ ପ୍ରଭୃତି ପ୍ରାୟ ସବୁ ବିଦ୍ୟାରେ ନିପୁଣ ଅଟନ୍ତି ଏବଂ ବିନୟ ସୌଜନ୍ୟାଦି ସର୍ବ ଗୁଣରେ ପରିପୂର୍ଣ୍ଣ ଅଟନ୍ତି । ଯେପରି ମାନସିକ ପରିଶ୍ରମରେ ସେହିପରି ମଧ୍ୟ ଶାରୀରିକ ପରିଶ୍ରମରେ ଅତ୍ୟନ୍ତ ଦକ୍ଷ ଅଟନ୍ତି । ଭୋଗ ବିଳାସ ତାହାଙ୍କ ହୃଦୟକୁ ସ୍ପର୍ଶ କରି ପାରି ନାହିଁ ଏବଂ ସେ ଭଗବଦ୍ ଭକ୍ତିରେ ନିମଜ୍ଜିତ ରହି ନିର୍ଲିପ୍ତଭାବରେ ଗାର୍ହସ୍ଥ୍ୟ ପ୍ରତିପାଳନ କରୁଅଛନ୍ତି । ତାହାଙ୍କୁ ସନ୍ତୋଷର ଅବତାର କହିଲେ ଅତ୍ୟୁକ୍ତି ହେବ ନାହିଁ । ମୂଳତଃ ସେ ମହାଶୟ ଜଣେ ଆଦର୍ଶ ପୁରୁଷ ଅଟନ୍ତି ।

**ଖଣ୍ଡପଡ଼ାର ରାଜବଂଶ**—ଚନ୍ଦ୍ରଶେଖରଙ୍କ ଆଦି ବଂଶର ସ୍ଥାନ ରିବାଁ । ଏହା ମଧ୍ୟଭାରତ ଏଜେନ୍‌ସିର ଅନ୍ତର୍ଗତ ରେବାଁ ନାମରେ ଖ୍ୟାତ । ସେଠାରେ ସୂର୍ଯ୍ୟବଂଶ (ପ୍ରଚଳିତ ନାମ ବଘେଲ ବଂଶ) ର ରାଜାମାନେ ରାଜତ୍ୱ କରନ୍ତି । ସେହିବଂଶର ରଘୁନାଥ ନରେନ୍ଦ୍ରଙ୍କର ମଧ୍ୟମ ପୁତ୍ର (୧) ଯଦୁନାଥ ମଙ୍ଗରାଜ ଦିଲ୍ଲୀଶ୍ୱରଙ୍କର ୧୦୦୬ ସାଲରେ ଖଣ୍ଡପଡ଼ା ରାଜ୍ୟରେ ରାଜତ୍ୱ କରି ୨୨ ବର୍ଷ ଶାସନ ପରେ ୯୨ ବର୍ଷ ବୟସରେ ସ୍ୱର୍ଗାରୋହଣ କଲେ । ତାହାଙ୍କ ଜ୍ୟେଷ୍ଠ ପୁତ୍ର ପୀତବାସ ମଙ୍ଗରାଜ ଉପାଧି ଗ୍ରହଣ ପୂର୍ବରୁ ପରଲୋକ ପ୍ରାପ୍ତ ହେଲେ । ତେଣୁ କନିଷ୍ଠ ( ୨ ) ନାରାୟଣ ମଙ୍ଗରାଜ ରାଜ୍ୟରେ ରାଜା ହେଲେ । ନାରାୟଣ ପରମ ବୈଷ୍ଣବ ଥିଲେ । ସେ ସଙ୍ଗୀତ ନାରାୟଣ ନାମକ ହସ୍ତଲିଖିତ ଗ୍ରନ୍ଥ ରଚନା କରିଥିଲେ । ତାହାଙ୍କର ରାଜତ୍ୱକାଳ ୩୮ ବର୍ଷ ଓ ପରମାୟୁ ୯୦ ବର୍ଷ ଥିଲା । ତତ୍ପୁତ୍ର ( ୩ ) ବାଲୁକେଶ୍ୱର ମଙ୍ଗରାଜଙ୍କର ରାଜତ୍ୱ ୧୪ ବର୍ଷ ଓ ପରମାୟୁ ୬୩ ବର୍ଷ ଥିଲା । ସେ ଖଣ୍ଡପଡ଼ାର ବାଲୁକେଶ୍ୱର ମହାଦେବଙ୍କର ମନ୍ଦିର ପ୍ରତିଷ୍ଠିତ କରାଇଥିଲେ । ତତ୍ପୁତ୍ର ( ୪ ) ବନମାଳୀ ସିଂହ ମର୍ଦ୍ଦରାଜ ଭ୍ରମରବର ରାୟଙ୍କର ରାଜତ୍ୱ ୧୧ ବର୍ଷ ଓ ପରମାୟୁ ୨୭ ବର୍ଷ ଥିଲା ।

ସେ ଅତ୍ୟନ୍ତ ବଳିଷ୍ଠ ଓ ମହାବୀର ଥିଲେ । ସେ ପୁରୀ ଯାଇଥିବା ସମୟରେ ତାହାଙ୍କର ବୀରତ୍ୱ ଶ୍ରବଣରେ ତଦାନୀନ୍ତନ ପୁରୀ ରାଜାଙ୍କର ରାଣୀ ଈର୍ଷାନ୍ୱିତା ହୋଇ ହସ୍ତୀ-ମାହୁନ୍ତକୁ ଆଦେଶ ଦେଲେ, "ବନମାଳୀ ସିଂହ ଗଳି ମଧ୍ୟରେ ଯିବାବେଳେ ହାତୀ କୁଦାଇ ଦେବୁ ।" ଏକଦା ବନମାଳୀ ସ୍ନାନାନନ୍ତର ଆଗମନ କରିବା ସମୟରେ ମାର୍ଗରେ ହସ୍ତୀ ଦେଖିବାରୁ ତାହାକୁ ଘୁଞ୍ଚାଇ ନେବା ସକାଶେ ମାହୁନ୍ତକୁ କହିଲେ । ମାହୁନ୍ତ ହାତୀକୁ ଘୁଞ୍ଚାଇ ନେବା ଦୂରେ ଥାଉ ବରଂ ତାହାକୁ ବନମାଳୀଙ୍କ ପ୍ରତି ଲଗାଇ ଦେଲା । ତହୁଁ ବନମାଳୀ ହସ୍ତୀର ଦନ୍ତ ଧରି ଏପରି ଜୋରରେ ଝାମ୍ପିଦେଲେ ଯେ ହସ୍ତୀ ପଶ୍ଚାଦ୍ଭାଗରେ ପତିତ ହେଲା ଓ ତାହାର ଦନ୍ତ ଭଗ୍ନ ହୋଇଗଲା । ବନମାଳୀ ଅନୁସନ୍ଧାନରେ ରାଣୀଙ୍କର ଏପରି ଈର୍ଷା ବିଷୟ ବୁଝିପାରି ସେହି ହସ୍ତୀଦନ୍ତଦ୍ୱାରା କପାଟଭଙ୍ଗପୂର୍ବକ ରାଜାବାସରେ ପ୍ରବେଶ କରନ୍ତେ ପୁରୀର ରାଜା ଉପସ୍ଥିତ ହେଲେ । ରାଣୀ ମୋହପ୍ରତି ଏପରି ଅତ୍ୟାଚାର କରିଥିବାରୁ ତାହାଙ୍କୁ ବିନାଶ କରି ତୁମ୍ଭଙ୍କୁ ଅଠର କନ୍ୟା ବିବାହ କରାଇ ଦେବି ବୋଲି ବନମାଳୀ କହିବାରୁ ରାଜା ନାନାପ୍ରକାର ପ୍ରବୋଧ ଦେଇ କହିଲେ—'ସ୍ତ୍ରୀ ବୁଦ୍ଧିଃ ପ୍ରଳୟଙ୍କରୀ' ସେଥିରୁ କଣ ମିଳିବ ? ରାଜା ବନମାଳୀଙ୍କୁ ଆଲିଙ୍ଗନପୂର୍ବକ କହିଲେ— ତୁମ୍ଭେ ଆଜଠାରୁ ମୋହର ଭାଇ ହେଲ ଏବଂ ଆଜଠାରୁ ମର୍ଦ୍ଦରାଜ ଭ୍ରମରବର ରାୟ ଉପାଧିରେ ଭୂଷିତ ହେଲ । ଏହାପରେ କହି ପୁରୀରାଜା ବନମାଳୀଙ୍କୁ ଖୋରଧା ଓ ଖଣ୍ଡପଡ଼ାର ସୀମାନ୍ତବର୍ତ୍ତୀ ତରବାଲ ଗ୍ରାମର ୬୦ ବାଟି ଭୂମି ପୁରସ୍କାର ଦେଲେ ।

ବନମାଳୀ କେବଳ ଗୋପୀନାଥ ମୂର୍ତ୍ତିଙ୍କୁ ଆଣି ମଣ୍ଡପରେ ବସାଇଥିଲେ । ବନମାଳୀଙ୍କର ଯେଉଁ ଅସ୍ତ୍ରଶସ୍ତ୍ର ଖଣ୍ଡପଡ଼ାର ରାଜକୋଷରେ ବର୍ତ୍ତମାନ ଅଛି ସେଥିରୁ ତାହାଙ୍କ ଦୀର୍ଘକାୟତ୍ୱ ଓ ବଳବତ୍ତାର ସମ୍ପୂର୍ଣ୍ଣ ପରିଚୟ

ମିଳେ । ଉକ୍ତସ୍ତମ୍ଭ ପାର୍ଶ୍ୱରେ ଧାରବଣିଷ୍ଟ ତାହାଙ୍କର ଯେଉଁ ଖଡ୍ଗ ରାଜକୋଷରେ ରକ୍ଷିତ ଅଛି ତାହା ଦୁଇଜଣ ମନୁଷ୍ୟ ଏକସ୍ଥାନରୁ ସ୍ଥାନାନ୍ତରକୁ ନିଅନ୍ତି । ତଦାସ୍ତୁ ବୃଦ୍ଧାଙ୍ଗୁଷ୍ଠର କର୍ଷଣୀ (କଷଣୀ) ସାଧାରଣ ମନୁଷ୍ୟର ଖଡ୍ଗପରି ବ୍ୟବହୃତ ହୋଇପାରେ । ସେ ଅପୁତ୍ରକ ଥିବାରୁ କନିଷ୍ଠ ପିତୃବ୍ୟଙ୍କ ପୁତ୍ର (୫) ବୈରାଗୀ ସିଂହ ମର୍ଦ୍ଦରାଜ ଭ୍ରମରବର ରାୟ ରାଜତ୍ୱ କଲେ । ସେ ୩୭ ବର୍ଷ ରାଜତ୍ୱ କରିଥିଲେ ଓ ୬୨ ବର୍ଷ ଜୀବିତ ଥିଲେ । ତାହାଙ୍କର ଦେବତା ବ୍ରାହ୍ମଣଙ୍କଠାରେ ବିଶେଷ ଭକ୍ତି ଥିଲା । ସେ ଖଣ୍ଡପଡ଼ାର ଜଗନ୍ନାଥ ମନ୍ଦିରର ମୂଳଭିତ୍ତି ସ୍ଥାପନପୂର୍ବକ ଜଗନ୍ନାଥ ମୂର୍ତ୍ତି ମଣ୍ଡପରେ ବସାଇଥିଲେ । ତତ୍ପୁତ୍ର (୬) ନୀଳାଦ୍ରି ସିଂହ ମର୍ଦ୍ଦରାଜ ଭ୍ରମରବର ରାୟଙ୍କର ରାଜତ୍ୱ ୨୪ ବର୍ଷ ଓ ପରମାୟୁ ୫୨ ବର୍ଷ ଥିଲା । ତାହାଙ୍କର ପୁତ୍ର (୭) ନୃସିଂହ ମର୍ଦ୍ଦରାଜ ଭ୍ରମରବର ରାୟଙ୍କ ରାଜତ୍ୱ ବ ୨୧।୧ ମାସ ଓ ପରମାୟୁ ୪୬ ବର୍ଷ ଥିଲା । ନୃସିଂହ ନଜଗଡ଼ର ଶ୍ରୀ ନୀଳକଣ୍ଠ ଦେବଙ୍କ ମନ୍ଦିର ନିର୍ମାଣ କରାଇଥିଲେ ଏବଂ ପୁରୀ ଜିଲ୍ଲାରେ ଅର୍ଜୁନସିଂହ ପୁର ବସାଇ ଥିଲେ । ତାହାଙ୍କର ପୁତ୍ର (୮) ପୁରୁଷୋତ୍ତମ ମର୍ଦ୍ଦରାଜ ଭ୍ରମରବର ରାୟ । ସେ ବ୬।୪ମାସ ରାଜତ୍ୱ କରିଥିଲେ ଏବଂ ବ୩୫।୬ମାସ ଜୀବିତ ଥିଲେ । ତତ୍ପୁତ୍ର (୯) କୃଷ୍ଣଚନ୍ଦ୍ର ମର୍ଦ୍ଦରାଜ ଭ୍ରମରବର ରାୟଙ୍କର ରାଜତ୍ୱ ବ୬୧।୨ ମାସ ଓ ପରମାୟୁ ବ ୩୩।୯ ମାସ ଥିଲା । ତଦାସ୍ତୁ ପୁତ୍ର (୧୦) କୁଞ୍ଜବିହାରୀ ମର୍ଦ୍ଦରାଜ ଭ୍ରମରବର ରାୟ ବ ୨୪।୧୦ ମାସ ରାଜତ୍ୱ କରିଥିଲେ ଏବଂ ବ ୩୩।୩ ମାସ ଜୀବିତ ଥିଲେ । କୁଞ୍ଜବିହାରୀ ଯେପରି ବୁଦ୍ଧିମାନ୍ ଥିଲେ, ସେହିପରି ମଧ୍ୟ ଧାର୍ମିକ ଥିଲେ । ସେ ଖଣ୍ଡପଡ଼ା ରାଜ୍ୟର ଦେବଦେବୀମାନଙ୍କ ମନ୍ଦିରଗୁଡ଼ିକର ଉଜ୍ଜ୍ୱଳତା ସମ୍ପାଦନ କରିଥିଲେ । ସେ ଜଗନ୍ନାଥ ଓ ଗୋପୀନାଥ ଦେବଙ୍କର ଦେଉଳ ନିର୍ମାଣ କରାଇଥିଲେ ଏବଂ ରାଧିକା ମୂର୍ତ୍ତି ନିର୍ମାଣ କରାଇ ସ୍ଥାପନ କରିଥିଲେ । ବାଲିବଗିଚା ଓ ନନ୍ଦନ ବନର ଉପକ୍ରମ କରିଥିଲେ । ସେ ପୁତ୍ରହୀନ ଥିବାରୁ ତଦାସ୍ତୁ ଭ୍ରାତା (୧୧)

ନଟବରସିଂହ ମର୍ଦ୍ଦରାଜ ଭ୍ରମରବର ରାୟ ୪୦ ବର୍ଷ କାଳ ଅଖଣ୍ଡ ରାଜତ୍ୱ କରିଥିଲେ ଏବଂ ବହୁମାସ ରୋଗ ଅବସ୍ଥାରେ ଜୀବନ ଧାରଣ କରିଥିଲେ । ଲେଖକ ସ୍ୱୟଂ ତାହାଙ୍କୁ ଦେଖିଅଛି ।

ସେ ଜଣେ ନିଷ୍ଠାପର ହିନ୍ଦୁ ଥିଲେ ଏବଂ ନିଜଗଡ଼ ଜଗନ୍ନାଥ ଦେବଙ୍କ ମନ୍ଦିରର ଜଗମୋହନ ନିର୍ମାଣ କରାଇଥିଲେ ଏବଂ ନୂଆପୋଖରୀନାମ୍ନୀ ଗୋଟିଏ ବଡ଼ ପୁଷ୍କରଣୀ ଖୋଳାଇଥିଲେ । ନଟବର ସିଂହ ସନ ୧୩୧୨ ସାଲ ଭାଦ୍ରମାସରେ ସାମାନ୍ୟ ଜ୍ୱରରୋଗରେ ଶଯ୍ୟାରେ ବସି ସ୍ୱର୍ଗାରୋହଣ କରିଥିଲେ । ସେ ମୃତ୍ୟୁ ପର୍ଯ୍ୟନ୍ତ ଡାକ୍ତର ଔଷଧ ସେବନ କରି ନ ଥିଲେ । କାରଣ ଡାକ୍ତର ଔଷଧରେ ମଦ୍ୟ ମିଶ୍ରିତ ଥିବାର ତାହାଙ୍କର ପୂର୍ଣ୍ଣ ବିଶ୍ୱାସ ଥିଲା । ନଟବର ଅପୁତ୍ରକ ଥିବାରୁ ତଦୀୟ ନିକଟ ସମ୍ପର୍କୀୟ ଭ୍ରାତୃଷ୍ପୁତ୍ର (୧୨) ରାମଚନ୍ଦ୍ର ସିଂହ ମର୍ଦ୍ଦରାଜ ଭ୍ରମରବର ରାୟ ରାଜା ହେଲେ । ସେ ୧୯ ବର୍ଷ ରାଜତ୍ୱ କରି ୧୩୩୦ ସାଲ ପୌଷ ମାସରେ ୫୬ ବର୍ଷ ବୟସରେ ପରଲୋକ ଗମନ କଲେ । ତଦୀୟ ରାଜତ୍ୱରେ ରାଜ୍ୟ ଶ୍ରୀଭ୍ରଷ୍ଟ ହୋଇଲା । ସେ ମଧ୍ୟ ପୁତ୍ରହୀନ ଥିବାରୁ ସ୍ୱୀୟ ଶ୍ୟାଳକଙ୍କର ପୁତ୍ରଙ୍କୁ ପୋଷ୍ୟପୁତ୍ର କଲେ ଏବଂ ସେ ହରିହରମର୍ଦ୍ଦରାଜ ଭ୍ରମରବର ରାୟ ଉପାଧି ଧାରଣ କରି ବର୍ତ୍ତମାନ ରାଜସିଂହାସନରେ ଉପବେଶନ କରିଛନ୍ତି । ତାହାଙ୍କର [illegible] ବଶତଃ ଅନେକାଂଶରେ ହିଂସ୍ରଜନ୍ତୁମାନଙ୍କ ଉପଦ୍ରବ ଲାଘବ ହୋଇଅଛି ।

**ବଂଶ ପରିଚୟ ଓ ଆବିର୍ଭାବ କାଳ** } ଉକ୍ତ ନୀଳାଦ୍ରି ଭ୍ରମରବର ରାୟଙ୍କର ଦ୍ୱିତୀୟ ପୁତ୍ର ନୃସିଂହ ଭ୍ରମରବର ରାୟ ରାଜାସନରେ ଆସୀନ ହେଲେ । ନୃସିଂହଙ୍କର ୬ ଗୋଟି ପୁତ୍ରମଧ୍ୟରୁ (୧) ପୁରୁଷୋତ୍ତମ (ରାଜା), (୨) ଜଗନ୍ନାଥ, (୩) ହରିହର, (୪) ରଘୁନାଥ, (୫) ଶ୍ୟାମବନ୍ଧୁ ଓ (୬) କମଳଲୋଚନ । ବର୍ଣ୍ଣୀୟ ଚନ୍ଦ୍ରଶେଖର ଏହି ଶ୍ୟାମବନ୍ଧୁ ସିଂହଙ୍କର ପୁତ୍ର । ଜଗନ୍ନାଥ ସିଂହଙ୍କର ପୁତ୍ର ସନ୍ନ୍ୟାସୀ ସାମନ୍ତ

୧୦ ବର୍ଷରେ ମୃତ ହେଲେ । ହରିହର ଙ୍କ ହ ଅବିବାହିତ ଓ ରଘୁନାଥ ଅପୁତ୍ରକ ଥିଲେ । କମଳଲୋଚନ ବାଙ୍କି ଶ୍ରୀଚନ୍ଦନଙ୍କର ପୋଷ୍ୟପୁତ୍ର ହୋଇ ଗଲେ ଏବଂ ପୁତ୍ରବିହୀନ ଥିଲେ ।

**ଶ୍ୟାମବନ୍ଧୁ ସିଂହ**—ଚନ୍ଦ୍ରଶେଖରଙ୍କର ପିତା ପରମଧାର୍ମିକ ଶ୍ୟାମବନ୍ଧୁ ୧୮୦୦ ଖ୍ରୀଷ୍ଟାବ୍ଦରେ ଚୈତ୍ରମାସ ରାମ ଜନ୍ମଦିନ ଜନ୍ମଗ୍ରହଣ କରିଥିଲେ ଏବଂ ୬୮ ବର୍ଷ ପରମାୟୁ ଭୋଗ କରି ମାନବଲୀଳା ସମ୍ବରଣ କଲେ ।

ପ୍ରୋକ୍ତ ପଣ୍ଡିତ ବ୍ରଜବଲ୍ଲଭ ମିଶ୍ରଙ୍କର ପିତାମହ ଆନନ୍ଦ ଖଡ଼୍ଗରାୟ (ଖାଡ଼ଙ୍ଗା) ଶ୍ୟାମବନ୍ଧୁଙ୍କର ସଂସ୍କୃତ ଶିକ୍ଷକ ଥିଲେ । ଶ୍ୟାମବନ୍ଧୁ ସଂସ୍କୃତ କାବ୍ୟ, ନାଟକ ଓ ବ୍ୟାକରଣରେ ପାଣ୍ଡିତ୍ୟ ଲାଭକରି ସ୍ମୃତିଶାସ୍ତ୍ର, ଗଣିତଶାସ୍ତ୍ର, ଭକ୍ତିଗ୍ରନ୍ଥ ଓ ଗୋସ୍ୱାମୀ ଗ୍ରନ୍ଥାଦିର ଚର୍ଚ୍ଚା କରିଥିଲେ । ସେ ସ୍ମୃତିଚର୍ଚ୍ଚାରୁ ଜ୍ୟୋତିଃଶାସ୍ତ୍ରପ୍ରତି ଆକୃଷ୍ଟ ହୋଇଥିଲେ । ଗଣିତ ଓ ଫଳିତ ଉଭୟ ଜ୍ୟୋତିଃଶାସ୍ତ୍ରରେ ଅଭିଜ୍ଞ ଥିଲେ ହେଁ ସେ ଫଳିତ ଜ୍ୟୋତିଷରେ ଅଧିକତର ଦକ୍ଷ ଥିଲେ । ଶିଳ୍ପକଳାରେ ମଧ୍ୟ ତାହାଙ୍କର ଅଭିଜ୍ଞତା ଥିଲା । ଜୀବଗଣପ୍ରତି ତାହାଙ୍କର ଯେପରି ଦୟା ଥିଲା ତାହା ଉପସ୍ଥିତ ଯୁଗରେ ଅତ୍ୟନ୍ତ ବିରଳ ଲକ୍ଷିତ ହୁଏ । ସେ ପ୍ରତ୍ୟହ ଉଖୁଡ଼ା ଗୁଡ଼ଏ ଘୃତ ମିଶ୍ରିତ କରି ଗୃହମଧ୍ୟସ୍ଥ ଜନ୍ଦା ପିମ୍ପୁଡ଼ିଙ୍କର ଗର୍ତ୍ତମାନଙ୍କରେ ନିକ୍ଷେପ କରୁଥିଲେ । ସତ୍ୟବାଦିତା ବିଷୟରେ ତାଦୃଶ ବ୍ୟକ୍ତି ଅଧୁନା ପରିଦୃଷ୍ଟ ହୁଅନ୍ତି ନାହିଁ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଦିନେ ନୃସିଂହଙ୍କର ୬ ପୁତ୍ର ଏକତ୍ର ଉପବିଷ୍ଟ ଥିବା ସମୟରେ ଗୋଟିଏ ବଡ଼ ଡେନ୍ଦୁଲିଆ ବିଛା ବନ୍ଧୁ ସାମନ୍ତଙ୍କୁ ଦଂଶନ କଲା । ସେଥିରେ ତାହାଙ୍କୁ ଅତ୍ୟନ୍ତ କଷ୍ଟ ହେଲେ ହେଁ ସେ ଲୋକଲଜ୍ଜାରେ କାହାକୁ ନ କହି ବସ୍ତ୍ର ମଧ୍ୟରେ ବିଛାକୁ ଧରି ହାତରେ ଦଳି ଦେଇଥିଲେ । ତଦାସ୍

ମୁଖ ବିକାର ଦେଖି 'କଣ ହେଲା' ବୋଲି ଜଣେ ଭୃତ୍ୟ ପଚାରନ୍ତେ 'କିଛି ନାହିଁ' ବୋଲି କହିଲେ । କିନ୍ତୁ ପିତା ତାହାଙ୍କର ମୁଖମ୍ଳାନ ଦେଖି ପଚାରିବାରୁ ବିଛାଟେ ବୋଲି କହିଲେ ଏବଂ ବିଛାଟି ଖଣ୍ଡ ଖଣ୍ଡ ହୋଇ ବସ୍ତ୍ରମଧ୍ୟରୁ ଖସିପଡ଼ିଲା । ପୁତ୍ରର ଏବଂବିଧ ଧୈର୍ଯ୍ୟ ଦେଖି ପିତା କହିଲେ "ତୋପରି ଧୃତିମାନ୍ ପୁତ୍ର ମୋହର ଆଉ କେହି ନାହିଁ । ତୁ ଏକା ମୋତେ ପିଣ୍ଡ ଦେବୁ । ମୋହର ପାଦ ଛୁଇଁ ପ୍ରତିଜ୍ଞା କର ଆଜିଠାରୁ ଆଉ ମିଥ୍ୟା କହିବୁ ନାହିଁ ।" ତଦନୁସାରେ ସେ ଆଜୀବନ ପ୍ରତିଜ୍ଞା ପ୍ରତିପାଳନ କଲେ । ବାସ୍ତବରେ ତାହାଙ୍କର ବଂଶଧର ଭିନ୍ନ ବର୍ତ୍ତମାନ ନୃସିଂହଙ୍କର ଅନ୍ୟ ଅପତ୍ୟସ୍ଥାନଙ୍କର କେହି ବଂଶଧର ନାହାନ୍ତି । ନିମ୍ନଲିଖିତ ଘଟନା-ଦ୍ୱୟରୁ ଶ୍ୟାମବନ୍ଧୁଙ୍କ ସତ୍ୟବାଦିତା ସ୍ପଷ୍ଟ ଉପଲବ୍ଧ ହେବ ।

ପ୍ରଥମ—ନୟାଗଡ଼ର ରାଜା ବିନାୟକ ସିଂହ ଓ ସ୍ୱୀୟ ପିତା ନୃସିଂହଙ୍କ ମଧ୍ୟରେ ସୀମା ବିବାଦ ନେଇ ଯୋଗିଆଲ୍ଲୀ ଗ୍ରାମଠାରେ ଯୁଦ୍ଧାରମ୍ଭ ହେଲା । ସେଥିରେ ଖଣ୍ଡପଡ଼ାର ଲୋକେ ପ୍ରଥମେ ନୟାଗଡ଼-ବାସୀଙ୍କୁ ପ୍ରହାର କଲେ । ସେମାନେ ଅଭିଯୋଗ କରିବାରୁ ଉଭୟ ପକ୍ଷର ବିଚାର ହେଲା । ଖଣ୍ଡପଡ଼ା ପକ୍ଷରୁ ବନ୍ଧୁ ସାମନ୍ତଙ୍କୁ ସାକ୍ଷୀ ରୂପେ ମନୋନୀତ କଲେ । ମାତ୍ର ସରକାରଙ୍କ ନିକଟରେ ବନ୍ଧୁ ସାମନ୍ତ କହିଲେ— "ଖଣ୍ଡପଡ଼ା ତରଫର ଲୋକେ ଆଗ ଉତ୍ପାତ କଲେ ।" ଓକିଲ ଏ କଥା ଶୁଣି କହିଲେ, "ଏ ଚଣ୍ଡାଳ ଶାକ୍ଷୀକ ଶାଳଗ୍ରାମ ପଠାଇଲ କାହିଁକି ?" ଏଥିରେ ସ୍ୱୀୟ ପିତାଙ୍କର କ୍ଷତି ହେଲେହେଁ ଶ୍ୟାମବନ୍ଧୁ ସତ୍ୟଭ୍ରଷ୍ଟ ହେଲେ ନାହିଁ ।

ଦ୍ୱିତୀୟ—ଯେତେବେଳେ ଖଣ୍ଡପଡ଼ା ରାଜ୍ୟର ପ୍ରାଥମିକ ବନ୍ଦୋବସ୍ତ ଆରମ୍ଭ ହେଲା ସେତେବେଳେ ତଦାନୀନ୍ତନ ରାଜା କୃଷ୍ଣଚନ୍ଦ୍ର ସିଂହ କେତେକ ପ୍ରଧାନ ରାଜକର୍ମଚାରୀଙ୍କର ପରାମର୍ଶରେ ରାଜସ୍ୱ ବୃଦ୍ଧିର ସୂତ୍ରପାତ

କଲେ । ତେଣୁ ରାଜ୍ୟରେ ବିପ୍ଳବର ସୃଷ୍ଟି ହେବାରୁ ରାଜ୍ୟଟି ଦ୍ୱିଦଳରେ ବିଭକ୍ତ ହେଲା । ରାଜା, ସେହି ପ୍ରଧାନ କର୍ମଚାରୀ ଓ ସାମାନ୍ୟ କେତେଜଣ ରାଜାନୁଗୃହୀତ ବ୍ୟକ୍ତିଙ୍କ ମିଶ୍ରଣରେ ଏକ ଦଳ ଏବଂ ସମସ୍ତ ପ୍ରଜା ଓ ନଜରଗଡ଼ବାସୀ ଭଦ୍ରବ୍ୟକ୍ତିମାନଙ୍କର ମିଳନରେ ଅନ୍ୟ ଏକ ଦଳ । ପ୍ରଜାବର୍ଗ ଉକ୍ତ ବନ୍ଦୋବସ୍ତର ପକ୍ଷପାତୀ ନ ଥିବାରୁ ପ୍ରୋକ୍ତ ପ୍ରଧାନ କର୍ମଚାରୀ ଅଥବା ସେମାନେ ରାଜ୍ୟ ପରିତ୍ୟାଗ କରିବାର ପ୍ରତିଜ୍ଞା କଲେ । ତେଣୁ ଉଭୟ ଦଳ ମଧ୍ୟରେ ଗୋଳମାଳର ମୀମାଂସା ହେବାର ପ୍ରସ୍ତାବ ହୁଅନ୍ତେ ସମସ୍ତେ ବନ୍ଧୁସାମନ୍ତଙ୍କର ମାଧ୍ୟସ୍ଥ୍ୟ ସ୍ୱୀକାର କଲେ । ବନ୍ଧୁ ସାମନ୍ତ ସ୍ପଷ୍ଟବାଦୀ ଥିବାରୁ କହିଲେ—

"ତ୍ୟଜେଦେକଂ କୁଳସ୍ୟାର୍ଥେ ଗ୍ରାମସ୍ୟାର୍ଥେ କୁଳଂ ତ୍ୟଜେତ୍ ।
ଗ୍ରାମଂ ଜନପଦସ୍ୟାର୍ଥେ ଆତ୍ମାର୍ଥେ ପୃଥିବୀଂ ତ୍ୟଜେତ୍ ।"

ଏହା ରାଜାଙ୍କର ମତବିରୋଧୀ ହେବାରୁ ସେ ବିରକ୍ତ ହୋଇ କହିଲେ—"ଜେଜେ ସାମନ୍ତ ହୋଇ ନ ଥିଲେ ଏହିକ୍ଷଣି କାଟି ଦେଇଥାନ୍ତି ।" ଏ ସମ୍ବାଦ କର୍ଣ୍ଣଗୋଚର ହେବାରୁ ବନ୍ଧୁ ସାମନ୍ତ କହିଲେ, "ଯଦି ସତ୍ୟ କହିବାରେ ରାଜାଙ୍କର ଏପରି କ୍ରୋଧ ଜାତ ହେଲା, ତେବେ ମୁଁ ଆଉ ତାହାଙ୍କର ମୁଖାବଲୋକନ କରିବି ନାହିଁ କି ଉଆସ ଦିଗକୁ ଚାହିଁବି ନାହିଁ ।" ରାଜାବାସର ପୂର୍ବରେ ବନ୍ଧୁ ସାମନ୍ତଙ୍କ ଗୃହ । ତେଣୁ ପଶ୍ଚିମ ଦିଗକୁ ଚାହିଁବେ ନାହିଁ ବୋଲି ଦିଗ୍‌ବାରଣ ସ୍ତମ୍ଭସ୍ୱରୂପ ବଂଶଶଲାକା ପ୍ରୋଥିତ ହେଲା । ଗୁଣ୍ଡିଚ୍ଚାଯାତ୍ରା ସମୟରେ ମଧ୍ୟ ସେହି ପ୍ରତିଜ୍ଞାନୁସାରେ ରଥ ଦର୍ଶନ ହୋଇ ନ ଥିଲା; କେବଳ ଜଗନ୍ନାଥଙ୍କର ବାହୁଡ଼ା ବିଜେ ସମୟରେ ରଥଦର୍ଶନ ହୋଇଥିଲା । ବନ୍ଧୁ ସାମନ୍ତଙ୍କର ଅନ୍ତିମକାଳରେ ରାଜା କୃଷ୍ଣଚନ୍ଦ୍ର ଉପସ୍ଥିତ ହୋଇ ଜଣାଇଲେ, "ମୋହର ମୁଖାବଲୋକନ ନ କରିବାର ତ ପ୍ରତିଜ୍ଞା ହୋଇଥିଲା, ଏବେ ମାନ ମୁଁ ଯିବି କି ନାହିଁ ?"

ତହୁଁ ବନ୍ଧୁ ସାମନ୍ତ କହିଲେ, "ବର୍ତ୍ତମାନ ସଂସାରରୁ ବିଦାୟ ନେବାବେଳେ ଆଉ ସେ ପ୍ରତିଜ୍ଞାରେ ଫଳ କଣ ? ଆସନ୍ତୁ, ମୋତେ ଦେଖିବେ।" ରାଜା ସାକ୍ଷାତ୍ କରି ଯଥାବିଧି ବିଦାୟ ଗ୍ରହଣ କଲେ ଏବଂ ତତ୍ପର ଦିନ ଆଷାଢ଼ କୃଷ୍ଣ ତ୍ରୟୋଦଶୀ ତିଥିରେ ସେ ସ୍ୱର୍ଗାରୋହଣ କଲେ । ମୃତ୍ୟୁ ପୂର୍ବରୁ ସେ ନିଜେ ବସି ମନ୍ତ୍ର ପଢ଼ି ମୃତାହପଞ୍ଚକ ଦାନ କରିଥିଲେ ଏବଂ ପୁତ୍ରଙ୍କୁ କହିଥିଲେ, "ମୋହର ଆଉ ଶ୍ରାଦ୍ଧ ହୋଇ ପାରିବ କି ନାହିଁ ସନ୍ଦେହ, କାରଣ ସାତଘଡ଼ି ମଧ୍ୟରେ ମୁଁ ଚାଲିଯିବି।" ବାସ୍ତବରେ ପିଣ୍ଡଶ୍ରାଦ୍ଧ କର୍ମ ହୋଇ ପାରିଲା ନାହିଁ ।

ଧରାକୋଟ ରାଜବଂଶଜାତ ରାଜଭ୍ରାତାଙ୍କ ପୁତ୍ରୀ ଶ୍ରୀ ବିଷ୍ଣୁମାଳୀ ଦେବୀଙ୍କ ସହିତ ଶ୍ୟାମବନ୍ଧୁଙ୍କର ପରିଣୟ ହୋଇଥିଲା । ନୟାଗଡ଼ର ତଦାନୀନ୍ତନ ରାଜା ବ୍ରଜସୁନ୍ଦର ମାନଧାତା (ଲକ୍ଷ୍ମୀକେଶ୍ୱର ସିଂହଙ୍କ ପିତା) ଓ ବନ୍ଧୁ ସାମନ୍ତ ଉଭୟେ ଦୁଇ ଭଉଣୀଙ୍କୁ ବିବାହ କରିଥିଲେ । ଧରାକୋଟ ରାଜଭ୍ରାତା ପଦ୍ମନାଭ ସିଂହ ବର୍ମା ସକୁଟୁମ୍ବ ନୟାଗଡ଼କୁ ଆସି ସେଠାରେ ଦୁଇ ଜେମାଙ୍କର ଶୁଭକାର୍ଯ୍ୟ ସମ୍ପାଦନ କରିଥିଲେ । ବନ୍ଧୁ ସାମନ୍ତଙ୍କ ସ୍ତ୍ରୀଙ୍କର ଚରିତ୍ର ସାଧାରଣର ଆଦର୍ଶ ଥିଲା । ବନ୍ଧୁ ସାମନ୍ତଙ୍କଠାରେ କ୍ରୋଧରିପୁ ଥିଲା, ମାତ୍ର ତଦୀୟ ସ୍ତ୍ରୀଙ୍କଠାରେ ତାହା ନ ଥିଲା । ଦାନଶୀଳତା ଓ ନୈଷ୍ଠିକତା ବନ୍ଧୁ-ପତ୍ନୀଙ୍କର ପ୍ରଧାନ ଗୁଣ । ସେ ପ୍ରତ୍ୟହ ଇଷ୍ଟଦେବଙ୍କର ପୂଜା, ନିତ୍ୟକୃତ୍ୟ, ସ୍ତୁତିପାଠ ଓ ପୁରାଣାଦି ଶ୍ରବଣ ଛଡ଼ା ସ୍ୱୟଂ ପୁରାଣ ପଠନ ମଧ୍ୟ କରୁଥିଲେ । କାରଣ ସେ ଉତ୍ତମରୂପେ ଲେଖା ପଢ଼ା ଶିଖିଥିଲେ । ବିଚିତ୍ରରାମାୟଣ ପାଠରେ ବିଷ୍ଣୁମାଳୀ ବିଶେଷ ଶକ୍ତିଶାଳିନୀ ଥିଲେ । ତାହାଙ୍କର ୧୧ ଗର୍ଭରୁ ୯ ଦୁହିତା ଓ ୨ ପୁତ୍ର ଉତ୍ପନ୍ନ ହୋଇଥିଲେ । ଦୁହିତାମାନଙ୍କର ବିବାହରେ ବନ୍ଧୁ ସାମନ୍ତ ସର୍ବସ୍ୱାନ୍ତ ହୋଇଥିଲେ । ଶ୍ୟାମବନ୍ଧୁ ନୃସିଂହଙ୍କର ପ୍ରିୟତମ ପୁତ୍ର ଥିବାରୁ ଅନେକ ଧନ ପାଇଥିଲେ । ମାତ୍ର ସେ ସମସ୍ତ ଧନ କନ୍ୟାଦାୟରେ ଗଲା ।

ସେ ଭାଇ ସାମନ୍ତ ହେଲେହେଁ ରାଜବାଟୀରେ ସମସ୍ତ କାର୍ଯ୍ୟ କରୁଥିଲେ କୋଠଦେଶୀୟ ଭଗବାନ ରାଠସିଂହଙ୍କ ଭ୍ରାତା ରାଜେନ୍ଦ୍ର ସିଂହଙ୍କୁ ଗୋଟିଏ କନ୍ୟା ପ୍ରଦତ୍ତ ହୋଇଥିଲା । ରେଢ଼ାଖୋଲ, ଛଗିଡ଼ଆ ଓ ଆଲମଗିରିର ରାଜାମାନେ ଗୋଟିଏ ଗୋଟିଏ କନ୍ୟାକୁ ବିବାହ କରିଥିଲେ । ଆଲମଗିରି ବର୍ତ୍ତମାନ ନିଲାମରେ ଖାସ୍ ହୋଇ ସରକାରଙ୍କ ତତ୍ତ୍ୱାବଧାନରେ ରହିଅଛି ।

ବିଷ୍ଣୁମାଳୀ ନଅଗୋଟି କନ୍ୟା ଓ ପରେ ଏକ ପୁତ୍ର ଲାଭ କଲେହେଁ ଦୁଇଟି କନ୍ୟା ଓ ପୁତ୍ରଟି ମୃତ ହୋଇଯିବାରୁ ଜନନୀ ବ୍ୟାକୁଳା ହୋଇ ଖଣ୍ଡପଡ଼ାର ଦେଢ଼ କୋଶ ପୂର୍ବବର୍ତ୍ତୀ ଖୁଣ୍ଟୁପଡ଼ା ଗ୍ରାମସ୍ଥିତ ରାମେଶ୍ୱର ମହାଦେବଙ୍କ ନିକଟରେ ଦିନେ ଧାରଣା ଦେଇଥିଲେ । ସେଠାରେ ନେତ୍ର ନିମୀଳନପୂର୍ବକ ଶଯ୍ୟା ଗୃହପାଖ ଦରାଣ୍ଡି ଗୋଟିଏ ଚିକ୍କଣ କ୍ଷୁଦ୍ର କୃଷ୍ଣଶିଳା ପ୍ରାପ୍ତ ହେଲେ ଏବଂ ତାହା ଶିବପ୍ରସାଦ ବୋଲି ଅତ୍ୟନ୍ତ ଆନନ୍ଦରେ ଗିଳିଦେଲେ । ତତ୍ପରେ ଶୁଭକ୍ଷଣରେ ଗର୍ଭୋଦୟ ହେଲା ଏବଂ ସେହି ଗର୍ଭରୁ କ୍ଷଣଜନ୍ମା ଚନ୍ଦ୍ରଶେଖର ଶକାବ୍ଦ ୧୭୫୭ ( ଇଂରାଜୀ ୧୮୩୫ ଖ୍ରୀଷ୍ଟାବ୍ଦ ) ରେ ପୌଷ କୃଷ୍ଣାଷ୍ଟମୀ ଦିନ ପୃଥିବୀରେ ଆବିର୍ଭୂତ ହେଲେ ।

ଚନ୍ଦ୍ରଶେଖର ( ମହାଦେବ ) ଙ୍କ ପ୍ରସାଦରୁ ପୁତ୍ରଲାଭ ହୋଇବାରୁ ପିତା ମାତା ପୁତ୍ରର ନାମ ଚନ୍ଦ୍ରଶେଖର ରଖିଥିଲେ । ସାମନ୍ତଙ୍କ ଉପର ଭାଇ ମୃତ ହୋଇଥିବାରୁ ତାହାଙ୍କର ଅପତ୍ୟିାଣି ( ଅପ୍ରତ୍ୟୟ ) ନାମ ଥିଲା ପଠାଣି । ସେ "ପଠାଣି ସାମନ୍ତ" ନାମରେ ଖ୍ୟାତ ଥିଲେ । ନିର୍ଦ୍ଦିଷ୍ଟ ସମୟରେ ଦାନ୍ତ ନ ଉଠିବାରୁ ପିତା ରାମେଶ୍ୱର ମହାଦେବଙ୍କୁ କେତେଗୋଟି ରୂପାର ଦାନ୍ତ ଲାଗି କରିଥିଲେ । ତାହାର ଫଳରେ ଚନ୍ଦ୍ରଶେଖରଙ୍କର ଦାନ୍ତ ଉଠିଥିଲା ।

**ବାଲ୍ୟଶିକ୍ଷା ଓ ପ୍ରତିଭା**—ପଞ୍ଚମ ବର୍ଷ ବୟସରେ ଚନ୍ଦ୍ରଶେଖର ସାମନ୍ତଙ୍କର ବିଦ୍ୟାରମ୍ଭ ହୋଇଥିଲା । ଖଣ୍ଡପଡ଼ାନିବାସୀ ସ୍ୱର୍ଗୀୟ କୃତ୍ତିବାସ ରଥ ସାମନ୍ତଙ୍କର ବାଲ୍ୟଗୁରୁ ଥିଲେ । ସେ ବର୍ଣ୍ଣଶିକ୍ଷାଠାରୁ ଆରମ୍ଭ କରି ପଣକିଆ ଦଶକ ପର୍ଯ୍ୟନ୍ତ ଏବଂ ଅମରକୋଷ ଅଭିଧାନର ପ୍ରଥମ ପାଞ୍ଚବର୍ଗ ବାଲ୍ୟଗୁରୁଙ୍କଠାରୁ ଶିକ୍ଷା କରିଥିଲେ । ସାତବର୍ଷ ମଧ୍ୟରେ ଏ ସମସ୍ତ ଶିକ୍ଷା ଶେଷ ହୋଇ ଯାଇଥିଲା । ଲୋକେ କହନ୍ତି, "ତୁଳସୀ ଦୁଇ ପତ୍ରରୁ ବାସେ ।" ସାମନ୍ତ ଜଣେ ଅସାଧାରଣ ଜ୍ୟୋତିର୍ବିତ୍ ହେବେ ଏହା ବାଲ୍ୟାବସ୍ଥାରୁ ସୂଚିତ ହେଉଥିଲା । ପିଲାଦିନେ ସେ ଖେଳୁ ଖେଳୁ ସୂର୍ଯ୍ୟକିରଣ ଦେଖି ଛାୟାର ମାପ ରଖୁଥିଲେ ଏବଂ ଦେଖୁଥିଲେ ତାହା କେତେ ନିଃଶ୍ୱାସରେ ଏକ ସ୍ଥାନରୁ ସ୍ଥାନାନ୍ତରକୁ ଯାଉଅଛି । ଆକାଶରେ ଶାଗୁଣା ଉଡ଼ିବାର ଦେଖିବାକୁ ସେ ଭଲ ପାଉଥିଲେ । କେତେଗୋଟା ଗୃଧ୍ର ଆକାଶରେ ଉଡ୍ଡୀନ ହେଉ ଅଛନ୍ତି, ତହିଁର ଗଣନା କରୁ କରୁ ବେଳେ ବେଳେ ଭୋଜନର ସମୟ ମଧ୍ୟ ଅତିକ୍ରାନ୍ତ ହୋଇ ଯାଉଥିଲା । ବାଲ୍ୟାବସ୍ଥାରେ କ୍ରୀଡ଼ା ସମୟରେ ସବୁବେଳେ ଆକାଶକୁ ଚାହୁଁ ଥିଲେ ଏବଂ ସନ୍ଧ୍ୟାରେ ସଙ୍ଗୀମାନଙ୍କୁ କହୁଥିଲେ, ଦେଖ ଏହି ତାରାଟି କିପରି ଉଜ୍ଜ୍ୱଳ ହୋଇଅଛି ଏବଂ ଓସ ତାରାଟି କିପରି ଚାଲୁଅଛି । ମାତ୍ର ସଙ୍ଗୀମାନେ କିଛି ଦେଖି ପାରନ୍ତି ନାହିଁ । ୫ ବର୍ଷ ବୟସରେ ଥରେ 'ହୋଇଛି ଗୋଟିଏ ତାରା' ବୋଲି ଦିନ ବେଳେ ଶୁକ୍ରଙ୍କୁ ଦେଖିବାରୁ ପିତା ଜାଣିପାରି ଦୋଷ ନିବାରଣ ନିମିତ୍ତ ବ୍ରାହ୍ମଣଙ୍କଦ୍ୱାରା ଜଗନ୍ନାଥଙ୍କ ନିକଟରେ ସ୍ତୋତ୍ରପାଠ କରାଇଥିଲେ । କାରଣ ହିନ୍ଦୁ ଶାସ୍ତ୍ରାନୁସାରେ ଦିବସରେ ନକ୍ଷତ୍ର ଦର୍ଶନ ଦୋଷାବହ ଅଟେ । ପିଲାଦିନରେ ବୃକ୍ଷ ପ୍ରଭୃତିର ଛାୟା ମାପିବା ତାହାଙ୍କର ଗୋଟିଏ ପ୍ରଧାନ କାର୍ଯ୍ୟ ଥିଲା । ସକାଳେ ଗଛର ଛାଇ କେତେଦୂର ଯାଏ, ମଧ୍ୟାହ୍ନରେ କେଉଁଠାରେ ରହେ ଏବଂ ଅପରାହ୍ଣରେ କେତେଦୂର ଯାଏ; ସେ ସମସ୍ତ ମାପି ହିସାବ କରୁଥିଲେ । ୯ ବର୍ଷ ବୟସରେ ନକ୍ଷତ୍ର ପରିଚୟ

କରିବାକୁ ଆରମ୍ଭ କରିଥିଲେ । ପ୍ରୋକ୍ତ ଦୀନବନ୍ଧୁ ଖଡ୍ଗରାୟଙ୍କର ବଂଶଧରମାନେ ସାମନ୍ତ ବଂଶର ଗୁରୁ ଥିଲେ । ଉପଯୁକ୍ତ ବଂଶ ସାମନ୍ତ ବଂଶର ଗୁରୁ ଥିବାରୁ ମନେ ହୁଏ—"ଯଦ୍ ଯେନ ଯୁଜ୍ୟତେ ଲୋକେ ବୁଧସ୍ତତ୍ତେନ ଯୋଜୟେତ୍ ।" ସ୍ୱୀୟ ପିତାଙ୍କର ଗୁରୁ ଅନନ୍ଦ ଖାଡ଼ଙ୍ଗା ସାମନ୍ତଙ୍କର ମଧ୍ୟ ହସ୍ତ୍ତ ଶିକ୍ଷକ ଥିଲେ । ଖଣ୍ଡପଡ଼ାନ୍ତର୍ଗତ ଇଚ୍ଛାପୁର ଶାସନନିବାସୀ ପଣ୍ଡିତ ଶ୍ରୀ ମଧୁସୂଦନ ମହାପାତ୍ର ସାମନ୍ତଙ୍କର ଦୀକ୍ଷା ଗୁରୁ ଥିଲେ ଅର୍ଥାତ୍ ସାମନ୍ତଙ୍କୁ ମନ୍ତ୍ରୋପଦେଶ ଦେଇଥିଲେ । ସାମନ୍ତ ଜଣେ ପ୍ରସିଦ୍ଧ କବି ହେବେ ତାହା ବାଲ୍ୟାବସ୍ଥାରୁହିଁ ଜଣା ପଡ଼ିଥିଲା । ବ୍ୟାକରଣର ଆଖ୍ୟାତ ବା ତିଙନ୍ତ ପାଠ ସମୟରେ ସାମନ୍ତ ଏହି ଶ୍ଲୋକଟି ନିଜେ ରଚନା କରିଥିଲେ—

ନମାମି ରାମାନୁଜମମ୍ବୁଜ-ଲୋଚନଂ ସହସ୍ର-ନେତ୍ରାର୍ଚ୍ଚିତ-ପାଦପଙ୍କଜଂ ।
ରମେଶମାଦ୍ୟଂ କନକାଂଶୁକଂ ଭୁଜସ୍ଫୁରତ୍ ପ୍ରତାପଂ ଗରୁଡ଼ଧ୍ୱଜଂ ହରିଂ ॥

ରଘୁବଂଶ, କୁମାରସମ୍ଭବ, କିରାତାର୍ଜ୍ଜୁନୀୟ, ମେଘଦୂତ, ହଂସଦୂତ, ଓ ମାଘ କାବ୍ୟମାନ ଶେଷ କରି ଚନ୍ଦ୍ରଶେଖର ୧୫ବର୍ଷ ବୟସରେ ନୈଷଧ ଚରିତର ପାଠାରମ୍ଭ କଲେ । ନୈଷଧ କାବ୍ୟକୁ ସାମନ୍ତ ଅତ୍ୟନ୍ତ ଭଲ ପାଉଥିଲେ ଏବଂ ନିଜେ ନିଜେ ଅଧ୍ୟୟନ କରୁଥିଲେ ! ସ୍ୱୟଂ ତାହା ପଢ଼ିବା ବେଳେ କୌଣସି ସ୍ଥାନର ଭାବ ବ୍ୟକ୍ତ ନ ହେଲେ ଗୁରୁ ପଢ଼ାଇ ଦେଉଥିଲେ । ବାଇଧର ପୁରୋହିତ ତାହାଙ୍କର ସହପାଠୀ ଥିଲେ । କିନ୍ତୁ ସେ ବାଇଧରଙ୍କର ଅନେକ ସ୍ଥାନର ସନ୍ଦେହ ମୋଚନ କରି ଦେଉଥିଲେ । ସାମନ୍ତ ପ୍ରାଚୀନ ରୀତିରେ ଗୁରୁଙ୍କଠାରୁ କ୍ରମର ବ୍ୟାକରଣର ସାତପାଦ, କାଳିଦାସୀୟ କାବ୍ୟତ୍ରୟ, କିରାତାର୍ଜ୍ଜୁନୀୟ, ଶିଶୁପାଳବଧ ଓ ନୈଷଧ ଚରିତ ପଢି ସାରି ଉପରେ ନିଜେ ନିଜେ ଅନର୍ଘରାଘବ (ମୁରାରିକାବ୍ୟ), ହଂସଦୂତ, ବିଦଗ୍ଧମାଧବ, ମହାନାଟକ, ଶକୁନ୍ତଳା, ଉତ୍ତର ରାମଚରିତ, ନାରାୟଣଶତକ, ଶିବଶତକ, ସୂର୍ଯ୍ୟଶତକ, ଗୀତଗୋବିନ୍ଦ,

ଆନନ୍ଦ ଲହରୀ, ଭଗବତ୍ କବିରାଜକୃତ ଗୁଣ୍ଡିଚା ସ୍ତୋତ୍ର, ଶ୍ରୀମଦ୍ ଭଗବତ ଓ ହରିଭକ୍ତିବିଳାସ ପ୍ରଭୃତି ବହୁ ଗ୍ରନ୍ଥ ଅଧ୍ୟୟନ କରିଥିଲେ । ସେ ଜଣେ ପ୍ରଧାନ କାବ୍ୟ-ରସିକ ଥିଲେ । ସାମନ୍ତ ସମସ୍ତ ପାଠ୍ୟ ବିଷୟ ତାଳପତ୍ର ପୁସ୍ତକରୁ ଅଧ୍ୟୟନ କରିଥିଲେ । ସେ ଓଡ଼ିଆ ଅକ୍ଷର ଭିନ୍ନ ବଙ୍ଗାକ୍ଷର ବା ନାଗରାକ୍ଷରର ପରିଚୟ କରି ନ ଥିଲେ । ସେ ତାଳପତ୍ରରେ ଅତି ସୁନ୍ଦର ଅକ୍ଷର ଲେଖି ପାରୁଥିଲେ । ତଦୀୟ ଅନର୍ଘ ସନ୍ଦର୍ଭ ସିଦ୍ଧାନ୍ତ-ଦର୍ପଣର ରଚନା ସମୟରେ ପ୍ରଥମେ ରଚିତ ଶ୍ଳୋକ ଦୁଇ ତିନୋଟି ଖଡ଼ିଗୋଟାଳୀ ସାହାଯ୍ୟରେ ମାଟି କାନ୍ଥରେ ଲେଖୁଥିଲେ ଏବଂ ପରେ ତାହା ତାଳପତ୍ରକୁ ଉଦ୍ଧାର କରୁଥିଲେ । ତାହାଙ୍କ ଗୃହରେ ପୂର୍ବରୁ ଯେଉଁ ସବୁ ତାଳପତ୍ର ପୁସ୍ତକ ଥିଲା ସେ ସମସ୍ତ ଜୀର୍ଣ୍ଣ ହୋଇଯାଇ ଥିବାରୁ ସାମନ୍ତ ନିଜେ ଖଣ୍ଡିଏ ଖଣ୍ଡିଏ ତାଳପତ୍ର ପୁସ୍ତକ ଲେଖି ସେଥିରେ ଅଧ୍ୟୟନ କରୁଥିଲେ । ଏହାପରି ତାହାଙ୍କର ପଠିତ ସମସ୍ତ କାବ୍ୟ ସ୍ୱହସ୍ତରେ ଲେଖି ଯାଇ ଅଛନ୍ତି । ସେ ଯେଉଁ ସବୁ କାବ୍ୟ ନାଟକାଦି ଅଧ୍ୟୟନ କରିଥିଲେ ସେଥିର ଅଧିକାଂଶ ତାହାଙ୍କର ମୁଖସ୍ଥ ରହିଥିଲା । ତେଣୁ କୌଣସି ଶବ୍ଦ ଅଥବା ଭାବର ବିଷୟ ପଡ଼ିବା ମାତ୍ରେ କହୁଥିଲେ ଯେ—"ମୁରାରି କବି ବା ଶ୍ରୀହର୍ଷ ଅମୁକ ଶ୍ଳୋକରେ ଏହା ଲେଖି ଅଛନ୍ତି" ଏବଂ ତତ୍‌କ୍ଷଣାତ୍ ସେହି ଶ୍ଳୋକଟି ମୌଖିକ ପାଠ କରୁଥିଲେ । ନୈଷଧର ୨୨ ସର୍ଗ ଯାକ ତାହାଙ୍କର ମୁଖସ୍ଥ ଥିଲା ଏବଂ ଶ୍ରୀମଦ୍ ଭାଗବତର ଅଧିକାଂଶ ଶ୍ଳୋକ ଆୟତ୍ତ ହୋଇଥିଲା । ସାମନ୍ତ କାଗଜରେ ଅକ୍ଷର ଲେଖି ଜାଣୁ ନ ଥିଲେ । କଲମକୁ ଲେଖନ ସଦୃଶ ଧରି କେବଳ ସ୍ୱାକ୍ଷର କରି ପାରୁଥିଲେ । ସେ କହୁଥିଲେ, "ଅର୍ଥରେ ଭାଗବତ ଏବଂ ପୌରୁଷରେ ନୈଷଧ କାବ୍ୟ ଉତ୍କୃଷ୍ଟ ଅଟେ ।" ଯଦି କେହି ନୈଷଧ କାବ୍ୟର କୌଣସି ଶ୍ଳୋକ ପଚାରେ ତେବେ ପାଇଖାନା ଯାଉଥାନ୍ତି, ପଛକେ ତାଳ ଥୋଇ ଦେଇ ସେହିଠାରେ ଶ୍ଳୋକାର୍ଥ କରନ୍ତି ଏବଂ

ଗୋଟିକ ପରେ ଆଉ ଗୋଟିଏ ଶ୍ଳୋକ ପଢ଼ି ଅର୍ଥ କରିବାରେ ବହୁ ସମୟ ଅତିବାହିତ ହୋଇଯାଏ । ତଦ୍ଦ୍ୱାରା ସମୟେ ସମୟେ ତାହାଙ୍କର ମନରୁଦ୍ଧ ହୋଇଯାଏ । ସେ ଗୁରୁଙ୍କ ଠାରୁ ଯେଉଁ କାବ୍ୟଗୁଡ଼ିକ ଅଧ୍ୟୟନ କରିଥିଲେ ତାହା ଉତ୍ତମରୂପେ ବୁଝିଥିଲେ, କୌଣସି ସ୍ଥଳରେ ଲବ ମାତ୍ର ସନ୍ଦେହ ନ ଥିଲା । ଯେଉଁ ଗ୍ରନ୍ଥ ସେ ମନୋଯୋଗ ସହକାରେ ଥରେ ମାତ୍ର ଅଧ୍ୟୟନ କରୁଥିଲେ ତାହା ତତ୍ଷଣାତ୍ ସ୍ମୃତିପଟରେ ଅଙ୍କିତ ହୋଇ ଯାଉଥିଲା, ଏବଂ ଜୀବନାବଧି ତାହା ବିସ୍ମରଣ ହେଉ ନ ଥିଲା ।

ସ୍ମୃତିଶାସ୍ତ୍ରରେ ସାମନ୍ତ ଅସାଧାରଣ ପାଣ୍ଡିତ୍ୟ ଲାଭ କରିଥିଲେ । ମନୁ ସଂହିତା, ପରାଶର ସଂହିତା, ଯାଜ୍ଞବଲ୍କ୍ୟ ପ୍ରଭୃତି ଋଷିପ୍ରଣୀତ ଏବଂ ଗଦାଧର ପଦ୍ଧତି, ସିଂହବାଜପେୟୀ ଓ ରଘୁନନ୍ଦନ ସ୍ମୃତି ପ୍ରଭୃତି ପ୍ରାୟ ସମସ୍ତ ସ୍ମୃତିଶାସ୍ତ୍ର ସେ ଅଧ୍ୟୟନ କରିଥିଲେ ଓ କଣ୍ଠସ୍ଥ ରଖିଥିଲେ । ଜ୍ୟୋତିଃ ଶାସ୍ତ୍ର ସଙ୍ଗରେ ବିଶେଷତଃ ପଞ୍ଜିକା ନିର୍ମାଣରେ ସ୍ମୃତି ବିଷୟର ଆବଶ୍ୟକତା ପଡ଼ିବାରୁ ସେଥିପ୍ରତି ତାହାଙ୍କର ତୀକ୍ଷ୍ଣ ଦୃଷ୍ଟି ରହିଥିଲା । ଜ୍ୟୋତିଃ-ଶାସ୍ତ୍ର ନ ଜାଣି କେବଳ ସଂସ୍କୃତଜ୍ଞ ପଣ୍ଡିତ ହେଲେ ସ୍ମୃତି ଶାସ୍ତ୍ରରେ ଲୋକର ସମ୍ୟକ୍ ଅବଗାହି ହୋଇପାରେ ନାହିଁ । କାରଣ ସେଥିରେ ତିଥି, ଦଣ୍ଡ ଓ ଲଗ୍ନ ପ୍ରଭୃତିର ପ୍ରମାଣ ରହିଅଛି । ତେଣୁ ଚନ୍ଦ୍ରଶେଖରଙ୍କ ସଦୃଶ ସ୍ମାର୍ତ୍ତ ପଣ୍ଡିତ ବହୁଦିନରୁ ଭାରତରେ ଜନ୍ମଗ୍ରହଣ କରି ନାହାନ୍ତି କହିଲେ ଅତ୍ୟୁକ୍ତି ହେବନାହିଁ ।

**ଓଡ଼ିଆ ସାହିତ୍ୟ ଚର୍ଚ୍ଚା**—ମହାତ୍ମା ଚନ୍ଦ୍ରଶେଖର ଯେ କେବଳ ସଂସ୍କୃତଜ୍ଞ ପଣ୍ଡିତ ଥିଲେ ତାହା ନୁହେ । ସେ ବୈଦେହୀଶ ବିଳାସ, କୋଟିବ୍ରହ୍ମାଣ୍ଡ ସୁନ୍ଦରୀ, ଲାବଣ୍ୟବତୀ, ଚନ୍ଦ୍ରକଳା, ପ୍ରବନ୍ଧପୂର୍ଣ୍ଣଚନ୍ଦ୍ର, କଳୋଶୀ ଚମ୍ପୂ ଓ ବିଦଗ୍ଧ ଚିନ୍ତାମଣି ପ୍ରଭୃତି ସମସ୍ତ ପ୍ରାଚୀନ ଓଡ଼ିଆ ସାହିତ୍ୟ

ଅଧ୍ୟୟନ କରିଥିଲେ ଓ ସେଥିମଧ୍ୟରୁ ଅନେକ ଛନ୍ଦ ତାହାଙ୍କର ମୁଖସ୍ଥ ଥିଲା । ବଳରାମ ଦାସଙ୍କ ରାମାୟଣ, ସାରଳା ଦାସଙ୍କ ମହାଭାରତ, କୃଷ୍ଣ ସିଂହଙ୍କର ମହାଭାରତ, ଜଗନ୍ନାଥ ଦାସଙ୍କ ଭାଗବତ, ଦୀନବନ୍ଧୁ ଖାଡ଼ଙ୍ଗାଙ୍କ ଭାଗବତ, ନୃସିଂହ ପୁରାଣ, କାର୍ତ୍ତିକ ମାହାତ୍ମ୍ୟ, ବୈଶାଖ ମାହାତ୍ମ୍ୟ, ମାଘ ମାହାତ୍ମ୍ୟ ପ୍ରଭୃତି ଓଡ଼ିଆଭାଷାରେ ଲିଖିତ ପୁରାଣାଦି ବ୍ରାହ୍ମଣଦ୍ୱାରା ପାଠ କରାଇ ଶ୍ରବଣ କରୁଥିଲେ । ସେହି ସମୟରେ ସେ ନାମମାଳିକ ସଙ୍ଗେ ସଙ୍ଗେ ପୁରାଣମାନଙ୍କର ପଦସଂଖ୍ୟା କରୁଥିଲେ ।

ଲକ୍ଷ୍ମୀଧର ବକ୍ସି ପଟ୍ଟନାୟକ ପ୍ରଭୃତି ଓଡ଼ିଆ ସାହିତ୍ୟ ବ୍ୟବସାୟୀ-ମାନେ କଠିନ କଠିନ ଛନ୍ଦମାନଙ୍କର ଅର୍ଥ ତାହାଙ୍କଠାରୁ ବୁଝି ନେଉଥିଲେ । ସ୍ଥୂଳତଃ ଓଡ଼ିଆ ସାହିତ୍ୟପ୍ରତି ତାହାଙ୍କର ଗଭୀର ଅନୁରାଗ ଥିଲା । ଏପରି କି ଉତ୍କୃଷ୍ଟ ଗୀତ ଚୌପଦୀକୁ ମଧ୍ୟ ସେ ଭଲ ପାଉଥିଲେ ।

ଚନ୍ଦ୍ରଶେଖର ବରାହପୁରଙ୍କରୁ ଛଗିରଥି ଗଡ଼ଠାରେ ଅବସ୍ଥାନ କରି ତତ୍ରତ୍ୟ ପ୍ରସିଦ୍ଧ ପଣ୍ଡିତ ଶ୍ରୀ ଭୁବନେଶ୍ୱର ବଡ଼ପଣ୍ଡାଙ୍କଠାରୁ ବାଦ୍ୟତ୍ନୋଦ୍ଧ ତରଙ୍ଗିଣୀ, ତର୍କସଂଗ୍ରହ ଓ ସାହିତ୍ୟଦର୍ପଣ ଅଧ୍ୟୟନ କରିଥିଲେ ଏବଂ ଷଡ଼୍ଦର୍ଶନର ସମସ୍ତ ବିବରଣ ଅତି ସଂକ୍ଷିପ୍ତ ଭାବରେ ଶିକ୍ଷା କରିଥିଲେ । ଏହି ଅଧ୍ୟୟନ ଆକସ୍ମିକ ଭାବରେ ଘଟିଥିଲା । ତଦାୟ ପିତା ଶ୍ୟାମବନ୍ଧୁ ସିଂହ ଖଣ୍ଡପଡ଼ାର ତଦାନୀନ୍ତନ ରାଜା କୃଷ୍ଣବିହାରୀଙ୍କର ମୃଖାବଲୋକନ ନ କରିବା ବିଷୟରେ ପ୍ରତିଜ୍ଞା କରି ଛଗିରଥି ଚାଲିଯାଇଥିବାରୁ ରାଜାଙ୍କର ଅନୁରୋଧ ଅନୁସାରେ ପିତାଙ୍କୁ ଫେରାଇ ଆଣିବା ନିମିତ୍ତ ତାହାଙ୍କୁ ଛଗିରଥି ଯିବାକୁ ହୋଇଥିଲା । ସେଠାରେ ଉକ୍ତ ପଣ୍ଡିତଙ୍କର ପାଣ୍ଡିତ୍ୟ ଓ ଧର୍ମନିଷ୍ଠାର ପରିଚୟ ପାଇ ସାମନ୍ତ ତାହାଙ୍କଠାରୁ ଅଧ୍ୟୟନ କରିଥିଲେ । ଚନ୍ଦ୍ରଶେଖର ସାମନ୍ତ ଛଗିରଥିରେ ୮।୯ ମାସ ମାତ୍ର ଅବସ୍ଥାନ କରିଥିଲେ । ସେଠାରେ ସମସ୍ତ ଶାସ୍ତ୍ରଚର୍ଚ୍ଚା ସଙ୍ଗରେ ଗଣିତ ଚର୍ଚ୍ଚା ମଧ୍ୟ କରୁଥିଲେ ।

**ପିତାଙ୍କଠାରୁ ଶିକ୍ଷା ଓ ଜ୍ୟୋତିଷ୍ଚର୍ଚ୍ଚା**

ଚନ୍ଦ୍ରଶେଖରଙ୍କର ପିତା ଶ୍ୟାମବନ୍ଧୁ ସିଂହ ୧୦ ବର୍ଷ ବୟସରେ ପୁତ୍ରଙ୍କୁ ସାମାନ୍ୟ ଫଳିତ ଜ୍ୟୋତିଷ ଶିକ୍ଷା ଦେଇଥିଲେ । ଯୁବକସୁଲଭ କୌତୂହଳ ନିବାରଣାର୍ଥ ସେ ଅଳ୍ପବୟସ୍କ ପୁତ୍ରଙ୍କୁ କେତେକ ନକ୍ଷତ୍ରର ପରିଚୟ କରାଇ ଦେଇଥିଲେ ଏବଂ କ୍ରମଶଃ ତାହାଙ୍କୁ ଜ୍ୟୋତିଷତତ୍ତ୍ୱରେ ଦୀକ୍ଷିତ କରାଇଥିଲେ । ଏହି ଅଳ୍ପବୟସରେ ପ୍ରତି ରାତ୍ରିରେ ନକ୍ଷତ୍ରମାନଙ୍କର ସ୍ଥାନ ପରିବର୍ତ୍ତନ ବିଷୟ ପରୀକ୍ଷା କରିବାପାଇଁ ତାହାଙ୍କର ଆକାଙ୍କ୍ଷା ବଳବତୀ ହୋଇଥିଲା । ନକ୍ଷତ୍ରମାନଙ୍କର ଓ ଗ୍ରହଗଣର ସ୍ଥାନ ପରିବର୍ତ୍ତନ ଜ୍ଞାନ ବିନା ଜାତକର ଲଗ୍ନ ସ୍ଥିରୀକରଣ ପ୍ରଭୃତି ଜ୍ୟୋତିଷିକ ଗଣନା ସଫଳ ହୋଇ ପାରିବ ନାହିଁ ଜାଣି ସେ ଗ୍ରହମାନଙ୍କର ଗତିବିଧି ନିରୂପଣ କରିବାକୁ ସ୍ଥିର କରିଥିଲେ । ନକ୍ଷତ୍ରାବଲୋକନରେ ତାହାଙ୍କର ଏହି କୌତୂହଳ ଗଣିତ ଜ୍ୟୋତିଷର ପ୍ରକୃତ ଅଧ୍ୟୟନ ପ୍ରତି ତାହାଙ୍କୁ ଆକର୍ଷଣ କରିଥିଲା । ଏହି ବିଜ୍ଞାନ ଶିକ୍ଷାରେ କୌଣସି ଶିକ୍ଷକ ତାହାଙ୍କୁ ଉପଦେଶ ଦେଇ ନ ଥିଲେ କିମ୍ବା ଗ୍ରହନକ୍ଷତ୍ରାଦିଙ୍କର ଦୂରତ୍ୱ ମାପ କରିବାପାଇଁ ଆବଶ୍ୟକ ଯନ୍ତ୍ର ଯୋଗାଇବାକୁ ଖଣ୍ଡପଡ଼ାରେ କୌଣସି ଗାଣିତିକ ଯନ୍ତ୍ର ନିର୍ମାଣକାରୀ ନ ଥିଲେ । ସେ ସବୁ ଯନ୍ତ୍ରର ନିର୍ମାଣ କାର୍ଯ୍ୟରେ କେବଳ ପ୍ରାଚୀନ ସିଦ୍ଧାନ୍ତ ସଂକ୍ଷିପ୍ତ ଉପଦେଶ ପ୍ରଦାନ କରିଥିଲା ।

ଚନ୍ଦ୍ରଶେଖର ପୌଗଣ୍ଡାବସ୍ଥାରେ ସ୍ୱୀୟ ପିତାଙ୍କଠାରୁ ନକ୍ଷତ୍ର ପରିଚୟ, ଶ୍ରୀପତି ଜାତକ, ଜାତକାଳଙ୍କାର, ଶ୍ରୀନିବାସ ଦୀପିକା, ବୃହଜ୍ଜାତକ, ସର୍ବାର୍ଥଚିନ୍ତାମଣି, ଉଡ୍ଡୁଦାୟପ୍ରଦୀପ, ଜ୍ୟୋତିଷଚନ୍ଦ୍ରୋଦୟ, କାଳିଦାସକୃତ ଜ୍ୟୋତିର୍ବିଦାଭରଣ, ଲଘୁଜାତକ, ଜ୍ୟୋତିଷାର୍ଣ୍ଣବ ଓ ବୃହତ୍ପାରାଶରୀ ପ୍ରଭୃତି ଫଳିତ ଜ୍ୟୋତିଷ ଗ୍ରନ୍ଥର ଆଲୋଚନା କରିଥିଲେ । ଓଡ଼ିଶାରେ କ୍ଷତ୍ରିୟ ବଂଶରେ ପିତାଙ୍କୁ ଦଦେଇ ବୋଲି କହନ୍ତି । ମାତ୍ର ବ୍ରାହ୍ମଣଘରେ

ପିତାଙ୍କର ବଡ଼ଭାଇ ଦଦେଇ ନାମରେ ପ୍ରସିଦ୍ଧ । ବୋଧହୁଏ ଅଧ୍ୟାପକ ଯୋଗେଶ ବାବୁ ଦଦେଇଙ୍କଠାରୁ ଜ୍ୟୋତିଷ ଶିକ୍ଷା କରିଥିବା ବିଷୟ ସାମନ୍ତଙ୍କ ମୁଖରୁ ଶୁଣି ଏବଂ ଘନଶ୍ୟାମ ମିଶ୍ର ବା ଅନ୍ୟ କୌଣସି ବ୍ରାହ୍ମଣଙ୍କଠାରୁ ଦଦେଇ ଶବ୍ଦର ଅର୍ଥ ପିତୃବ୍ୟ ବୋଲି ବୁଝି ସିଦ୍ଧାନ୍ତଦର୍ପଣର ସ୍ୱୀୟ ଇଂରାଜୀ ମୁଖବନ୍ଧରେ "ଦଶବର୍ଷ ସମୟରେ ସାମନ୍ତ ଜଣେ ପିତୃବ୍ୟଙ୍କଠାରୁ ସାମାନ୍ୟ ଫଳିତ ଜ୍ୟୋତିଷ ଶିକ୍ଷା କରିଥିଲେ" ବୋଲି ଲେଖିଅଛନ୍ତି । ତାହା ମୁଖବନ୍ଧର ୧୭ ପୃଷ୍ଠା ଶେଷ ପରିଚ୍ଛେଦରେ ଲିଖିତ—"At the age of ten, one of his uncles taught him a little of astrology" ମାତ୍ର ତାହା ଭ୍ରାନ୍ତ ଅଟେ । କାରଣ ତାହାଙ୍କର ପିତୃବ୍ୟମାନେ କେହି ଜ୍ୟୋତିର୍ବିତ୍ ନ ଥିଲେ । ବିଶେଷତଃ ସାମନ୍ତଙ୍କ ଶିକ୍ଷା ସମୟରୁ ତାହାଙ୍କର କୌଣସି ପିତୃବ୍ୟ ଜୀବିତ ନ ଥିଲେ । ଚନ୍ଦ୍ରଶେଖର ପିତାଙ୍କଠାରୁ ଯେତେବେଳେ ଫଳିତ ଜ୍ୟୋତିଷ ଶିକ୍ଷା କରୁଥିଲେ ସେତେବେଳେ ପିତା ପୁତ୍ରଙ୍କର ଅଲୌକିକ ଧୀମତ୍ତା ଦର୍ଶନ କରି ଚମତ୍କୃତ ହେଉଥିଲେ । ପିତା ପୁସ୍ତକର ଯେଉଁ ଅଂଶ ପଢ଼ାଇ ଦେଉଥିଲେ ପରବର୍ତ୍ତୀ ଦିନକୁ ସେ ସମସ୍ତ କଣ୍ଠସ୍ଥ ହେବାର ଦେଖି ପୁତ୍ରର ଅସାଧାରଣ ସ୍ମରଣଶକ୍ତି ଉପଲବ୍ଧିପୂର୍ବକ ମନେ ମନେ ସାତିଶୟ ଆନନ୍ଦ ଅନୁଭବ କରୁଥିଲେ । ବନ୍ଧୁ ସାମନ୍ତ ସଂସ୍କୃତଜ୍ଞ ହେଲେହେଁ ନୈଷଧ କାବ୍ୟରେ ସମ୍ୟକ୍ ପ୍ରବେଶ କରି ପାରି ନ ଥିଲେ । ତେଣୁ ସ୍ୱୀୟ ପୁତ୍ରଠାରୁ କପରି ନୈଷଧାର୍ଥ ଶ୍ରବଣ କରିବେ ଏ ବିଷୟରେ ଜଗନ୍ନାଥ ଦେବଙ୍କଠାରେ ପ୍ରାର୍ଥନା କରିଥିଲେ । ଅଧ୍ୟୟନ କାଳରେ ହିଁ ସାମନ୍ତ ବହୁଲୋକର ଅସଂଖ୍ୟ କୋଷ୍ଠୀ ନିର୍ମାଣ କରି ଦେଉଥିଲେ । ଖଣ୍ଡପଡ଼ା ଗଡ଼ର କୌଣସି ବିଶିଷ୍ଟ ବ୍ୟକ୍ତିଙ୍କର ପୁତ୍ର କିମ୍ବା କନ୍ୟା ପ୍ରସୂତ ହେଲେ ସେ ତତ୍କ୍ଷଣାତ୍ ସାମନ୍ତଙ୍କ ଗୃହକୁ ଆସି ସମ୍ବାଦ ଦିଅନ୍ତି । ଦିବସରେ ସୂର୍ଯ୍ୟଚ୍ଛାୟା ଦେଖି ଏବଂ ରାତିରେ ନକ୍ଷତ୍ର ସାହାଯ୍ୟରେ ସେ ସମୟ ନିରୂପଣ

କରି ଲଗ୍ନ ସ୍ଥିର କରୁଥିଲେ । ସାମନ୍ତଙ୍କ ଗୃହକୁ ସମ୍ବାଦଦାତାଙ୍କ ଗୃହର ଦୂରତାନୁସାରେ ଆଗମନରେ ଯେତେ ଅବଶ୍ୟକ ହୁଏ ତାହାର ହିସାବ ହୋଇ ଲଗ୍ନ ନିରୂପିତ ହୁଏ । ସାମନ୍ତ ନିଜଗଡ଼ବାସୀ ବିଶିଷ୍ଟ ଲୋକମାନଙ୍କର ଗୃହଠାରୁ ନିଜ ଗୃହର ଦୂରତା ସ୍ୱୀୟ ପାଦୁଣ୍ଡିରେ ହିସାବ କରି ରଖିଥାନ୍ତି । କେବଳ ନିଜଗଡ଼ରେ କାହିଁକି କଣ୍ଟିଲୋ ନୀଳ-ମାଧବଙ୍କ ମନ୍ଦିର, ଖୁଣ୍ଟୁପଡ଼ା ରାମେଶ୍ୱରଙ୍କ ମନ୍ଦିର ଓ ନୟାଗଡ଼ ପ୍ରଭୃତି ଯେଉଁସ୍ଥାନକୁ ସେ ଥରେ ଯାଇଥାନ୍ତି, ନିଜ ପାଦୁଣ୍ଡିରେ ତାହାର ଦୂରତା ହିସାବ କରି ରଖିଥାନ୍ତି । ତାହାଙ୍କ ଗୃହଠାରୁ ପୁରୀ ଜଗନ୍ନାଥ ଦେବଙ୍କ ସିଂହଦ୍ୱାର ନିଜ ପାଦୁଣ୍ଡିରେ ୧୫୧୨୦୦ ଏକଲକ୍ଷ ଏକାବନ ହଜାର ଦୁଇ ଶତ ପାଦୁଣ୍ଡ ଥିବାର ଗଣନା କରିଥିଲେ । ସେ ବିଷୟ ପରବର୍ତ୍ତୀ ପରିଚ୍ଛେଦରେ ବିଶଦ ଭାବରେ ଲିଖିତ ହେବ । ସାମନ୍ତଙ୍କ ସମୟରେ ଖଣ୍ଡପଡ଼ାରେ କଳଘଣ୍ଟାର ବିଶେଷ ପ୍ରଚଳନ ନ ଥିଲା; କେବଳ ରାଜ-ଭବନରେ ଦୁଇଟି ଘଣ୍ଟା ଥାଏ । ପରବର୍ତ୍ତୀ ସମୟରେ ସାମନ୍ତ ଗୋଟିଏ ଆଇମ୍‌ଫିସ ଘଡ଼ି କ୍ରୟ କରି ତାହାକୁ ସୂର୍ଯ୍ୟଛାୟାନୁସାରେ ସର୍ବଦା ବିଶୁଦ୍ଧ କରି ରଖିଥାନ୍ତି । ତାଦୃଶ ବିଶୁଦ୍ଧ "ଘଡ଼ି ସାଧାରଣତଃ ପରିଦୃଷ୍ଟ ହୁଏ ନାହିଁ ।

ଲୋକମାନଙ୍କର କୋଷ୍ଠୀ ଦେଖି ଦେଖି ସାମନ୍ତ ଅସ୍ଥିର ହେଉଥିଲେ । ସେ କୋଷ୍ଠୀ ନିର୍ମାଣ ବା ଫଳକଥନ ନିମିତ୍ତ ଏକ କପର୍ଦ୍ଦକ ସୁଦ୍ଧା କାହାରିଠାରୁ ପାରିଶ୍ରମିକ ଗ୍ରହଣ କରୁ ନ ଥିଲେ । ମଫିତା ସ୍ୱର୍ଗୀୟ ନାରାୟଣ ସଦସ୍ୟ ସାମନ୍ତଙ୍କର ପରମ ମିତ୍ର ଥିବାରୁ ଆମ୍ଭ ଛଅଭାଇ ଓ ଜ୍ୟେଷ୍ଠା ଭଗିନୀଙ୍କର କୋଷ୍ଠୀ ସାମନ୍ତ ସ୍ୱୟଂ ନିର୍ମାଣ କରି ଦେଇଥିଲେ । ସେ ମହୋଦୟ ବିନା ପାରିଶ୍ରମିକରେ କୋଷ୍ଠୀ ନିର୍ମାଣ କରିଦେବାରୁ ସେ ଅଞ୍ଚଳର ପ୍ରାୟ ସମସ୍ତେ ତାହାଙ୍କ ନିକଟକୁ ଦୌଡ଼ିବାକୁ ଲାଗିଲେ ଏବଂ ତାହାଙ୍କୁ ବ୍ୟତିବ୍ୟସ୍ତ କରି ପକାଇଲେ ।

ପଶ୍ଚାତ୍ତରେ ତଦ୍ଦ୍ୱାସ ଗଣକ ନାହାକମାନଙ୍କର ଜୀବିକାରେ ବ୍ୟାଘାତ ହେଲା । କାରଣ ସେମାନଙ୍କ ନିକଟକୁ ଜାତକାଦି ବିଷୟରେ କେହି ଗଲେ ନାହିଁ । ନାୟକମାନେ ସାମନ୍ତଙ୍କୁ ଏ ବିଷୟ ଜଣାଇବାରୁ ସେ ବିଶିଷ୍ଟ ବ୍ୟକ୍ତି ଭିନ୍ନ ସାଧାରଣ ଲୋକଙ୍କୁ କୋଷ୍ଠୀ ନିର୍ମାଣ ଓ ଫଳ କଥନ ସକାଶ ଅନ୍ୟାନ୍ୟ ଗଣକମାନଙ୍କ ନିକଟକୁ ପଠାଇ ଦେଉଥିଲେ । ଏହିପରି କୋଷ୍ଠୀ ସବୁ ନିର୍ମାଣ କରିଦେବା ନିମିତ୍ତ ସ୍ୱୟଂ ତାଳପତ୍ର ବିଡ଼ାମାନ ସଂଗ୍ରହ କରି ରଖିଥାନ୍ତି ।

ଗଣିତ ଜ୍ୟୋତିଷ ମଧ୍ୟରେ ଲୀଳାବତୀ ଓ ବୀଜଗଣିତ ସ୍ୱୟଂ ଅନୁଶୀଳନ କରିଥିଲେ । ୧୪ ବର୍ଷ ବୟସରେ ଗଣିତ ଜ୍ୟୋତିଷ ଚର୍ଚ୍ଚା ଆରମ୍ଭ କରିଥିଲେ । ସୂର୍ଯ୍ୟ ସିଦ୍ଧାନ୍ତର ଦେବୀ ଦାସ ଆଢ଼ଣା ବା ଟୀକା ପାଠ କରି ଗଣିତ ସାଧନର ନିୟମଗୁଡ଼ିକ ଆୟତ୍ତ କରିଥିଲେ ଭାସ୍କରାଚାର୍ଯ୍ୟ-ପ୍ରଣୀତ ସିଦ୍ଧାନ୍ତଶିରୋମଣି, ସୂର୍ଯ୍ୟସିଦ୍ଧାନ୍ତସ୍ଥିତ ସୂର୍ଯ୍ୟ ଓ ମୟ ଦୈତ୍ୟର କଥୋପକଥନ ଓ ବ୍ରହ୍ମ ସିଦ୍ଧାନ୍ତ ପ୍ରଭୃତିର ପର୍ଯ୍ୟାଲୋଚନା କରିଥିଲେ । ମାତ୍ର କମଳାକର ଭଟ୍ଟଙ୍କ ପ୍ରଣୀତ "ସିଦ୍ଧାନ୍ତତତ୍ତ୍ୱବିବେକ" ଗ୍ରନ୍ଥ ବୋଧହୁଏ ପାଠ କରି ନ ଥିଲେ । ତଦୀୟ ସିଦ୍ଧାନ୍ତଦର୍ପଣରେ ଅନ୍ୟାନ୍ୟ ସିଦ୍ଧାନ୍ତମାନଙ୍କର ଉଦାହରଣ ଥିବା ସ୍ଥଳେ ଉକ୍ତ ଗ୍ରନ୍ଥର ନାମ ସୁଦ୍ଧା ନ ଥିବା ତହିଁର ନିଦର୍ଶନ ଅଟେ । ସେ ୧୫ ବର୍ଷ ବୟସ ସମୟରେ ଯେତେବେଳେ ଗଣନା କରିବାର ସୂତ୍ରଗୁଡ଼ିକ ଜାଣିପାରିଲେ ସେତେବେଳେ ଦେଖିଲେ ଯେ ପୂର୍ବ ସିଦ୍ଧାନ୍ତାନୁସାରେ ନକ୍ଷତ୍ରମାନେ ଠିକ୍ ସମୟରେ ଦେଖା ଯାଉନାହାନ୍ତି କିମ୍ବା ଗ୍ରହମାନେ ଠିକ୍ ସ୍ଥାନରେ ପରିଦୃଷ୍ଟ ହେଉନାହାନ୍ତି । ତହୁଁ ସେ ବାରମ୍ବାର ଗଣନା କରିବାକୁ ଲାଗିଲେ । ଅଶୁଦ୍ଧ ଓ

---

* ଏହି ଟୀକା ରେଭେନ୍‌ସା କଲେଜର ଭୂତପୂର୍ବ ବିଜ୍ଞାନାଧ୍ୟାପକ ଯୋଗେଶ ବାବୁଙ୍କ ନିକଟରେ ଅଛି ।

ଶୁଦ୍ଧ ଗଣନାଗୁଡ଼କ ସ୍ୱତନ୍ତ୍ରଭାବେ ଲେଖି ଲେଖି ସେ ବୁଝିପାରିଲେ ଯେ ପୂର୍ବ ସିଦ୍ଧାନ୍ତାନୁସାରେ ପ୍ରକୃତରେ ପ୍ରଭେଦ ହେଉଅଛି । ତେଣୁ ସେଥିରେ ସଂସ୍କାର କରିବାକୁ ଆରମ୍ଭ କଲେ । ଯେତେବେଳେ ଯେଉଁ ଗଣନାର ଆରମ୍ଭ କରୁଥିଲେ ତାହା ସ୍ୱତନ୍ତ୍ର ତାଳପତ୍ରରେ ଲେଖି ରଖୁଥିଲେ ହେଁ ଗ୍ରନ୍ଥରଚନା କରିବାକୁ କଳ୍ପନା ସୁଦ୍ଧା କରି ନ ଥିଲେ । ସ୍ୱୀୟ ଗଣନା ସଙ୍ଗେ ପୁରାତନ ପଞ୍ଜିକାର ଦିନ ଦଣ୍ଡ ଲିତା ସମାନ ନ ହେବାର ଦେଖି ସେ କାରଣଜିଜ୍ଞାସୁ ହୋଇ ଘୋର ଅଧ୍ୟବସାୟ କରିବାକୁ ଲାଗିଲେ । ଗଣନାରେ ଯେଉଁସବୁ ଅସାମଞ୍ଜସ୍ୟ ଘଟୁଥିଲା ସାମନ୍ତ ସେ ସମସ୍ତ ଲେଖିବାକୁ ଲାଗିଲେ । ପ୍ରାଚୀନ ଗଣନାର ପ୍ରଭେଦ ଓ ନୂତନ ଗଣନାର ପ୍ରକାଶ ଏହି ଦୁଇଟି ବିଷୟ ତାହାଙ୍କ ଗଣନାର ପ୍ରଧାନ ଉଦ୍ଦେଶ୍ୟ ଥିବାରୁ ଦିନରାତି ସର୍ବଦା ଚିନ୍ତା ଓ ସାଧନା କରୁଥିଲେ । ଏପରି କି ଜପ କରୁଥିବା ସମୟରେ ସୁଦ୍ଧା ଗଣିତ ବିଷୟ ମନେ ପଡ଼ିଲେ ବାମ ହସ୍ତରେ ସଂଖ୍ୟା କରି ହଠାତ ଖଡ଼ିଗୋଡ଼ାଳୀ ସାହାଯ୍ୟରେ କାନ୍ଥରେ ଲେଖି ପକାଉଥିଲେ । ରାତିରେ ସେ ବିଷୟରେ ଭାବନାରେ ବସି ବସି ଅନେକ ସମୟ କଟାଉଥିଲେ । ଶୀତର ରାତିରେ ନକ୍ଷତ୍ରାବଳୀ ସ୍ପଷ୍ଟ ଦେଖାଯାନ୍ତି ବୋଲି ସାମନ୍ତ ସେହି ସମୟରେ ଆକାଶକୁ ନିରୀକ୍ଷଣ କରୁଥିଲେ । ସେତେବେଳେ ତାହାଙ୍କୁ ଶୀତସ୍ପର୍ଶ ମଧ୍ଯ କଷ୍ଟକର ବୋଧ ହେଉ ନ ଥିଲା । ନିଜ ଗୃହର ଚାଳରେ ରନ୍ଧ୍ର କରି ସେହିବାଟେ ଦିବସରେ ସୂର୍ଯ୍ୟକିରଣ ଓ ରାତିରେ ଚନ୍ଦ୍ରକିରଣ ପାତ କରାଇ ତାହା ପର୍ଯ୍ୟବେକ୍ଷଣ କରୁଥିଲେ । ପୂର୍ବ ସିଦ୍ଧାନ୍ତରେ କେବଳ ଚନ୍ଦ୍ର ବିଷୟରେ ସ୍ଥୂଳ ଗଣନା କରିଥିବାରୁ ତିଥ୍ୟାଦିରେ ୧୪ ଦଣ୍ଡର ପ୍ରଭେଦ ଲକ୍ଷିତ ହୁଏ । ଏହି ପ୍ରଭେଦ ଦେଖି ଦେଖି ସେ ଚନ୍ଦ୍ରର ସୂକ୍ଷ୍ମ ଗଣନାରେ ପ୍ରବୃତ୍ତ ହେଲେ । ସେହି ସୂକ୍ଷ୍ମ ଗଣନା ତୁଙ୍ଗାନ୍ତର, ପାକ୍ଷିକ ଓ ଦିଗଂଶ ଏହି ତିନି ବିଭାଗ ଘେନି ଗଠିତ ହେଲା । ସେହି ବିଷୟକ ଶ୍ଳୋକ ଏହି—

ଭୁଙ୍ଗାଗ୍ରଙ୍କ ପାଷିକ ନାମ ଧେୟଂ
ଫଳଂ ଦଗଂଶାଖ୍ୟ ମଦସ୍ତୁଗ୍ରୟଂ ।
କ୍ରମେଣ ବକ୍ଷ୍ୟାମି କଶ୍ରାଷ୍ୟ ଯନ୍ତ୍ରା—
ଛିନ୍ନାଂ ଗଛଂ ବ୍ରହିପତେ ସ୍ତିବ୍ରୟ ॥

(ସିଦ୍ଧାନ୍ତ ଦର୍ପଣ ପୃ ୪୮ ସ୍ଥା ଶୋ୬ଙ୍କ)

ଚନ୍ଦ୍ରଶେଖର ଗୋଟିଏ ମାନ ଯନ୍ତ୍ର ନିର୍ମାଣ କରିଥିଲେ । ସେ ବିଷୟ ସିଦ୍ଧାନ୍ତ ଦର୍ପଣର ବଂଶ ପ୍ରକାଶରେ ଗୋଳାଦିଯନ୍ତ୍ର ବର୍ଣ୍ଣନରେ ପୃ ୨୧୩ସ୍ଥା, ଶ୍ଳୋ ୮୨ କ ଠାରୁ ଆରବ୍ଧ ହୋଇଅଛି । ଏହି ଯନ୍ତ୍ରଦ୍ୱାରା ପର୍ବତ ଓ ବୃକ୍ଷାଦିର ଉଚ୍ଚତା, ଦୂରତା ଏବଂ ବିସ୍ତାର ନିର୍ଣ୍ଣୟ କରାଯାଏ । ସେ ବିଷୟ ତଦୀୟ ଗ୍ରନ୍ଥରେ ବର୍ଣ୍ଣିତ ଅଛି । ଏହିପରି ଶଙ୍କୁଯନ୍ତ୍ର, ଖ ଗୋଲ ପ୍ରଭୃତି ନାନା ବିଷୟର ଉଦ୍ଭାବନ କରିଥିଲେ ।

ପାଶ୍ଚାତ୍ୟ ଜ୍ୟୋତିର୍ବିତ୍ମାନଙ୍କ ମତରେ ପୃଥିବୀ ବୁଲୁଅଛି ଓ ସୂର୍ଯ୍ୟ ସ୍ଥିରଭାବରେ ଅଛନ୍ତି; ମାତ୍ର ସାମନ୍ତଙ୍କ ମତରେ ସୂର୍ଯ୍ୟ ଭ୍ରମଣ କରୁଅଛନ୍ତି ଏବଂ ପୃଥିବୀ ସ୍ଥିରଭାବରେ ରହିଅଛି; ଏହାହିଁ ପ୍ରାଚ୍ୟ ପ୍ରତୀଚ୍ୟ ମତର ବିରୋଧ । ସାମନ୍ତ ମହୋଦୟ ସ୍ୱୀୟ ସିଦ୍ଧାନ୍ତ ଦର୍ପଣର ସପ୍ତଦଶ ପ୍ରକାଶରେ ଏହି ପୃଥିବୀର ସ୍ଥିରତ୍ୱ ସମ୍ବନ୍ଧରେ ପ୍ରାୟ ୧୬୦ ଶ୍ଳୋକ ଲେଖିଅଛନ୍ତି । ଏହିପରି ନାନା ନୂତନ ତତ୍ତ୍ୱର ଆବିଷ୍କାର କରୁ କରୁ ୨୦ କୋଡ଼ିଏ ବର୍ଷ ଅତୀତ ହୋଇଗଲା । ସାମନ୍ତଙ୍କର ୩୪ ବର୍ଷ ସମୟରୁ ସିଦ୍ଧାନ୍ତ ଦର୍ପଣ ଗ୍ରନ୍ଥର ସମସ୍ତ ଶ୍ଳୋକ ରଚିତ ହୋଇଯାଇଥିଲା । ସେ ବିଷୟରେ ସିଦ୍ଧାନ୍ତ ଦର୍ପଣର ଉପସଂହାର ବର୍ଣ୍ଣନରେ ସାମନ୍ତ ଯେଉଁ ଶ୍ଳୋକ ଲେଖିଅଛନ୍ତି ତାହା ଏହି—

ଯାତାଙ୍ଗନିକବବ୍ଦ (୪୯୩୬) ବହୁଚକଳୌ ଜନ୍ମାଭବନ୍ମାମକଂ
ବେଦୋତ୍ତରୂର୍ଦ୍ଧ (୩୪) ବର୍ଷକେଣ ଚ ମୟା ଗ୍ରନ୍ଥୋଽୟମାବିଷ୍କୃତଃ ।

ସନ୍ତଃ ସନ୍ତତମନ୍ର ସନ୍ନିଗଣିତେ ସନ୍ତୋଷବନ୍ତୋ ଗୁଣଂ
ଗୃହ୍ନନ୍ତଃ ପରିହୃତ୍ୟ ଦୋଷଗଣନାଂ ନା*ସ୍ତେ ନପତ୍‌ସର୍ବଦା ।
(ଶ୍ଳୋ୧୪୯, ଉପସଂହାର ବର୍ଣ୍ଣନେ ।)

ଅର୍ଥାତ୍ କଳିଯୁଗର ୪୯୭୨ବର୍ଷଠାରେ ମୋହର ଜନ୍ମ ହୋଇଅଛି ଏବଂ ୪୭୮ବର୍ଷ ବୟସଠାରେ ମୁଁ ଏହି ଗ୍ରନ୍ଥର ଆବିଷ୍କାର କଲି । ସଜ୍ଜନମାନେ ଏହି ଗଣିତରେ ଦୋଷ ଗଣନାକୁ ପରିତ୍ୟାଗ କରି ଗୁଣ ଗ୍ରହଣପୂର୍ବକ ସର୍ବଦା ସନ୍ତୁଷ୍ଟ ହୁଅନ୍ତୁ । କାରଣ କୌଣସି ବ୍ୟକ୍ତି ସମସ୍ତ ବିଷୟରେ ଅଭିଜ୍ଞ ହୋଇ ନ ପାରେ ।

ସେହି ରଚନା ବିଷୟ ଅନ୍ୟ କେହି ଜାଣିନଥିଲେ । କେବଳ ତଦୀୟ ଶିଷ୍ୟ ପଣ୍ଡିତ ବ୍ରଜବଲ୍ଲଭ ମିଶ୍ର ସାମନ୍ତଙ୍କ ମୁଖରୁ ସେଥି ମଧ୍ୟରୁ କେତେକ ଗୋଟି ଶ୍ଳୋକ ଶ୍ରବଣ କରି ଚମତ୍କୃତ ହୋଇଥିଲେ ଏବଂ ଏହା ଗୋଟିଏ ଅମଲ୍ୟ ଗ୍ରନ୍ଥ ହେବ ବୋଲି ତାହାଙ୍କ ନିକଟରେ ପ୍ରକାଶ କରିଥିଲେ । ଗ୍ରନ୍ଥ ରଚନା ଶେଷରେ ତାଳପତ୍ର ପୁସ୍ତକରେ ଲିଖିତ ହୋଇ ପ୍ରାୟ ୩୦ ବର୍ଷ ପରେ ତାହା ମୁଦ୍ରିତ ହୋଇଥିଲା । ଏଥିରୁ ପାଠକମାନେ ରଚୟିତାଙ୍କର ଗ୍ରନ୍ଥ ମୁଦ୍ରଣ ବିଷୟରେ କିପରି ଅନାସ୍ଥା ତାହା ସହଜରେ ହୃଦୟଙ୍ଗମ କରିପାରିବେ । ପୁସ୍ତକର ମୁଦ୍ରଣ ସମ୍ବନ୍ଧରେ ବିସ୍ତୃତ ବିବରଣ ପରବର୍ତ୍ତୀ ପରିଚ୍ଛେଦରେ ପ୍ରକାଶିତ ହେବ ।

ସାମନ୍ତ ଚନ୍ଦ୍ରଶେଖରଙ୍କ ପର୍ଯ୍ୟବେକ୍ଷଣ ବିଷୟ ଅତ୍ୟନ୍ତ କୌତୂହଳୋଦ୍ଦୀପକ । ନିର୍ମଳ ଆକାଶ ତାହାଙ୍କର ପର୍ଯ୍ୟବେକ୍ଷଣିକା ଥିଲା । ଗ୍ରହର ଚଳନ ଓ ଅବସ୍ଥାନ ନିରୂପଣକାରୀ ଆଧୁନିକ ପାଶ୍ଚାତ୍ୟ ଯନ୍ତ୍ରର ପରିବର୍ତ୍ତରେ ଗ୍ରହାବସ୍ଥାନ-ଦର୍ଶକ ଗୋଲଯନ୍ତ୍ର ଓ ଉଲ୍ଲମ୍ବୀଚକ୍ର ତାହାଙ୍କର ଉପକରଣ ଥିଲା । ଏହି ଚକ୍ର ୟୁରୋପୀୟ ନାକ୍ଷତ୍ରିକ ଘଣ୍ଟାର ସ୍ଥାନ ପୂରଣ କରିଥିଲା । ସ୍ୱକଳ୍ପିତ ସୂର୍ଯ୍ୟଘଡ଼ିର ଶଙ୍କୁ ତଦୀୟ ପର୍ଯ୍ୟବେକ୍ଷଣିକାରେ

* ନା-ପୁରୁଷଃ

ସ୍ଥାନ ପାଇଥିଲା । ସେ ସ୍ୱୟଂବହ ନାମକ ଗୋଟିଏ ଯନ୍ତ୍ର ନିର୍ମାଣ କରିଥିଲେ ଏବଂ ତାହାକୁହିଁ ସର୍ବଦା ବ୍ୟବହାର କରୁଥିଲେ । ଆଧୁନିକ ଯୁଗରେ ସୁସଜ୍ଜିତ ପର୍ଯ୍ୟବେକ୍ଷଣିକାର ସାହାଯ୍ୟ ପାଇଥିଲେ ଅକ୍ଳାନ୍ତ ପରିଶ୍ରମ ଓ ପର୍ଯ୍ୟବେକ୍ଷଣଦ୍ୱାରା ସେ ଜ୍ୟୋତିର୍ବିଜ୍ଞାନର ପ୍ରଭୂତ ଉନ୍ନତି କରିପାରିଥାନ୍ତେ । ୨୩ବର୍ଷ ବୟସରେ ଚନ୍ଦ୍ରଶେଖର ସ୍ୱକୀୟ ପର୍ଯ୍ୟବେକ୍ଷଣର ଫଳ ଧାରାବାହିକରୂପେ ଲେଖିବାକୁ ଲାଗିଲେ ।

ଉଜ୍ଜ୍ୱଳ ସୂର୍ଯ୍ୟମଣ୍ଡଳରେ ସାମୟିକ କଳାଦାଗ ଦେଖା ଯାଉଥିବାର ସେ ୱଣ୍ଡାଲ୍ୟାଣ୍ଡର ପାଠ୍ୟପୁସ୍ତକରେ ଅଧ୍ୟୟନ କରିଥିଲେ ଏବଂ ତାହିର ଯାଥାର୍ଥ୍ୟ ଉପଲବ୍ଧି କରିବାପାଇଁ ଉଦ୍‌ବଗ୍ନ ହୋଇଥିଲେ । ମାତ୍ର ସ୍ୱଚକ୍ଷୁରେ ସେହି ଦାଗଗୁଡ଼ିକ ନ ଦେଖିବା ପର୍ଯ୍ୟନ୍ତ ସେ ତାହା ବିଶ୍ୱାସ କରି ନ ଥିଲେ । କିଛି ଦିନ ପରେ ସ୍ୱୀୟ ପର୍ଯ୍ୟବେକ୍ଷଣଦ୍ୱାରା ସେ କେତେକ ଦାଗ ଦେଖିଥିଲେ । ଚନ୍ଦ୍ରଙ୍କର ସ୍ଥାନ ନିରୂପଣ କରିବାକୁ ଯାଇ ଚନ୍ଦ୍ରଶେଖର କେତେକ ମୌଳିକ ସଂଶୋଧନ କରିଅଛନ୍ତି । ସେ ବିଷୟ ଅସ୍ମଦୀୟ ପ୍ରାଚୀନ ଜ୍ୟୋତିଷୀମାନଙ୍କୁ ଜଣା ନ ଥିଲା । କେବଳ ସୁଧାକର ଦ୍ୱିବେଦୀ ତାଙ୍କ ଗଣକତରଙ୍ଗିଣୀରେ ଚନ୍ଦ୍ର ଏକ ଡିଗ୍ରୀ ଅଗ୍ରପଶ୍ଚାତ୍ ଘୁଞ୍ଚିଯାଉଥିବାର ଆଭାସ ଦେଇଅଛନ୍ତି । ପୁନଶ୍ଚ ମାସକରେ ଥରେ ଚନ୍ଦ୍ରର ପରିବର୍ତ୍ତନ ହୁଏ । ଏହି ସବୁ ବିଷୟ ଭାରତୀୟ ଗଣକମାନଙ୍କ ମଧ୍ୟରେ ଚନ୍ଦ୍ରଶେଖର ହିଁ ଆବିଷ୍କାର କରିଥିଲେ । ଚନ୍ଦ୍ରଶେଖର ଇଂରାଜୀଭାଷାରେ ଅନଭିଜ୍ଞ ଥିବାରୁ କୌଣସି ବୈଦେଶିକ ଗ୍ରନ୍ଥ ତାହାଙ୍କୁ ସାହାଯ୍ୟ କରି ନ ଥିଲା । ସେ ଚନ୍ଦ୍ରର ଯେଉଁ ତିନିଗୋଟି ବିଶୃଙ୍ଖଳା ଆବିଷ୍କାର କରିଥିଲେ ତାହାର ନାମ ତୁଙ୍ଗାନ୍ତର, ପାକ୍ଷିକ ଓ ଦିଗଂଶ ଦେଇଅଛନ୍ତି ।

ସୂର୍ଯ୍ୟଙ୍କର ସ୍ଥାନ ପରିବର୍ତ୍ତନରେ ଚନ୍ଦ୍ରଶେଖରଙ୍କର ଅନ୍ୟ ଏକ ଆବିଷ୍କାର ପରିଦୃଷ୍ଟ ହୁଏ । ଭାରତର ପ୍ରାଚୀନ ଗଣକମାନେ ପ୍ରତ୍ୟେକ

ଗ୍ରହର ସ୍ଥାନ ପରିବର୍ତ୍ତନ ବିଷୟରେ ୧/୬୦ ଅଂଶକୁ ତାହାର ଦୈନିକଗତିରୂପେ ନିର୍ଣ୍ଣୟ କରିଅଛନ୍ତି । ତଦନୁସାରେ ସୂର୍ଯ୍ୟର ଦଗ୍‌ବଳୟ ପ୍ରତି ସମାନ୍ତରାଳ ପରିବର୍ତ୍ତନ ମି ୩ । ୫୬ ସେକଣ୍ଡ ବୋଲି ବିବେଚିତ ହୋଇଥିଲା ଏବଂ ଚନ୍ଦ୍ରର ମି ୫୨ । ୪୨ ସେକଣ୍ଡ ନିର୍ଣ୍ଣୀତ ହୋଇଥିଲା । ପ୍ରାଚୀନ ଦର୍ଶକଗଣ ତତ୍‌କାଳୀନ ସ୍ଥୂଳଯନ୍ତ୍ର ସାହାଯ୍ୟରେ ଭ୍ରାନ୍ତିମୂଳକ ଫଳ ସ୍ଥିର କରୁଥିଲେ । ପ୍ରାୟଶଃ ସୂର୍ଯ୍ୟ ଓ ଚନ୍ଦ୍ରର ସ୍ଥାନ ପରିବର୍ତ୍ତନ ସେମାନଙ୍କର ପର୍ବ୍ବଗ ଓ ଗ୍ରହଣ ବିଷୟକ ଭବିଷ୍ୟତ୍ ବାଣୀର ଅନ୍ତର୍ଗତ ହୁଏ । ଚନ୍ଦ୍ରଶେଖର ଚନ୍ଦ୍ରଙ୍କର ସାଧାରଣ ଦୂରତାର ପ୍ରାୟ ୧୫୪ ଗୁଣ ଦୂରରେ ସୂର୍ଯ୍ୟଙ୍କର ସ୍ଥାନ ନିର୍ଦ୍ଦେଶ କରିଅଛନ୍ତି । ସୂର୍ଯ୍ୟଙ୍କର ଦୂରତା ଗଣନାରେ ତାହାଙ୍କୁ ବହୁଦିନ ଚିନ୍ତା କରିବାକୁ ହୋଇଥିଲା । ଦିନେ ତଦୀୟ ଗୃହର ନିକଟବର୍ତ୍ତୀ ଏକ ତାଳତାଟୀର ଅତି ସୂକ୍ଷ୍ମରନ୍ଧ୍ର ମଧ୍ୟଦେଇ ତିର୍ଯ୍ୟକ୍‌ଭାବରେ ପତିତ ସୂର୍ଯ୍ୟଙ୍କର ପ୍ରତିବିମ୍ବ ଦେଖି ସେଥିରୁ ତାହାଙ୍କର ଅଭିଳଷିତ ବିଷୟର ପ୍ରମାଣ ପାଇଥିଲେ । ଛିଦ୍ରର ଉଭୟ ପାର୍ଶ୍ୱସ୍ଥିତ ଅନୁରୂପ ତ୍ରିଭୁଜସବୁରେ ଭୂମି, ସୂର୍ଯ୍ୟ ଓ ତାହାଙ୍କର ପ୍ରତିବିମ୍ବଦ୍ୱାରା ଗଠିତ ହୋଇଥିବାରୁ ସେଥିରୁ ସେ ଦୂରତା ନିର୍ଣ୍ଣୟ କରିବାରେ କ୍ଷମ ହୋଇଥିଲେ । ସୂର୍ଯ୍ୟଙ୍କର ବ୍ୟାସ ଗଣନାରେ ଅଥର୍ବବେଦ ତଦୀୟ ସନ୍ଦେହ ମୋଚନ କରିଥିଲା । ସୂର୍ଯ୍ୟଙ୍କର ବ୍ୟାସ୭୨୦୦୦ଯୋଜନ ନିର୍ଣ୍ଣୟ କରିବା-ଦ୍ୱାରା ଦେଖାଗଲା ଯେ ପୃଥିବୀଠାରୁ ସୂର୍ଯ୍ୟର ଦୂରତା ସୂର୍ଯ୍ୟବ୍ୟାସର୧୦୫ ଓ ୧୦୬ ଗୁଣ ମଧ୍ୟରେ ହେବ । ସୂର୍ଯ୍ୟ ସିଦ୍ଧାନ୍ତ ମତରେ ସୂର୍ଯ୍ୟଙ୍କର ବ୍ୟାସ ୬୫୦୦ ଯୋଜନ ଏବଂ ଅପରେକ୍ତିରେ ପୃଥିବୀଠାରୁ ସୂର୍ଯ୍ୟ ଓ ଚନ୍ଦ୍ରର ଦୂରତା ଯଥାକ୍ରମେ ପୃଥିବୀର ବ୍ୟାସାର୍ଦ୍ଧର ୯୫୧୦ ଓ ୬୧ ଗୁଣ ଅଟେ । ଚନ୍ଦ୍ରଶେଖର ପୃଥିବୀର ସ୍ଥିରତାବିଷୟକ ସିଦ୍ଧାନ୍ତରେ ଉପନୀତ ହୋଇ ତଦୀୟ ଗ୍ରନ୍ଥରେ ବହୁ ଯୁକ୍ତିପ୍ରଦର୍ଶନ କରିଅଛନ୍ତି । ତାହା ସ୍ୱତନ୍ତ୍ରଭାବରେ ଆଲୋଚିତ ହେବ ।

ଚନ୍ଦ୍ରଶେଖର ସୂର୍ଯ୍ୟ ବିଷୟ ସାଧନ କରୁଥିବା ସମୟରେ ଶ୍ରୀମଦ୍-ଭାଗବତର ସ୍ୱାମୀଟୀକାରୁ ଏହି ଶ୍ଳୋକଟି ସ୍ମରଣ କରିଥିଲେ—

ଦ୍ୱାବିମୌ ପୁରୁଷୌ ଲୋକେ ସୂର୍ଯ୍ୟମଣ୍ଡଳ ଭେଦିନୌ
ପରିବ୍ରାଟ୍ ଯୋଗଯୁକ୍ତଶ୍ଚ ରଣେ ଚାଭି ମୁଖୋ ହତଃ ।

ଅର୍ଥାତ୍ ପରିବ୍ରାଜକ ଯୋଗୀ ଏବଂ ସମ୍ମୁଖ ଯୁଦ୍ଧରେ ମୃତ, ଏହି ଦୁଇ ପ୍ରକାର ଲୋକ ସୂର୍ଯ୍ୟ ମଣ୍ଡଳସ୍ଥ ଦୁଇଟି ରନ୍ଧ୍ର ମଧ୍ୟ ଦେଇ ବ୍ରହ୍ମ ଲୋକକୁ ଗମନ କରନ୍ତି । ଏଣୁ ସୂର୍ଯ୍ୟ ମଣ୍ଡଳରେ ଥିବା ଦୁଇଗୋଟି ରନ୍ଧ୍ର ବିଷୟରେ କୌଣସି ଶାସ୍ତ୍ରରେ ଧ୍ୟାନର ଉଲ୍ଲେଖ ଅଛି କି ନାହିଁ ତାହା ସେ ଅନୁସନ୍ଧାନ କରିବାକୁ ଲାଗିଲେ । କିନ୍ତୁ କୌଣସିଠାରୁ ନ ପାଇ ବ୍ୟଥିତ ହୋଇ ରହିଥିଲେ । ଦିନେ ରାମ ପରମ ଗୁରୁଙ୍କ ପୁତ୍ର 'ଯୋଗୀନାଥ ପରମଗୁରୁ ନିମ୍ନଲିଖିତ ଶ୍ଳୋକଟିର ଅର୍ଥ ପଚାରିବାରୁ ସାମନ୍ତ ଅତ୍ୟନ୍ତ ଆନନ୍ଦିତ ହୋଇଥିଲେ । କାରଣ ସେହି ଶ୍ଳୋକଦ୍ୱାରା ତାହାଙ୍କର ଅନେକ ଦିନର ଅଭିଳାଷ ପୂର୍ଣ୍ଣ ହୋଇଥିଲା । ଶ୍ଳୋକଟି ଏହି—

ହେମମ୍ଭୋଜ ପ୍ରବାଳ ପ୍ରତିମ ନିଜ ରୁଚିଂ ଚାରୁଖଟ୍ୱାଙ୍ଗପଦ୍ମୌ
ଚକ୍ରଂ ଶକ୍ତିଂ ସପାଶଂ ଶୃଣି ମତିରୁଚିରା ମକ୍ଷମାଲାଂ କପାଲଂ ।
ହସ୍ତାମ୍ଭୋଜୈର୍ଦ୍ଧଧାନଂ ତ୍ରିନୟନ ବିଲସଦ୍ୱେଦବକ୍ତ୍ରାଭିରାମଂ
ମାର୍ତ୍ତଣ୍ଡଂ ବଲ୍ଲରେଦ୍ଧଂ ମଣିମୟ ମୁକୁଟଂ ଦୀପ୍ତହାରଂ ଭଜାମଃ ।

ଏହି ଶ୍ଳୋକଟିର ବଲ୍ଲରେଦ୍ଧଂ ପଦଟିର ଅର୍ଥ ଉକ୍ତ ପରମଗୁରୁ ପଚାରିବାରୁ ସାମନ୍ତ କହିଲେ "ସେହି ଶବ୍ଦରେ ତ ମୋହର ଉଦ୍ଦିଷ୍ଟ ବିଷୟ ଅଛି । ବଲ୍ଲର ଶବ୍ଦର ଅର୍ଥ ଗତି ଏବଂ ଇଦ୍ଧ ଶବ୍ଦର ଅର୍ଥ ଦୀପ୍ତ । ଅମର ସିଂହ କହି ଅଛନ୍ତି ବଲ୍ଲରେ ଗତିମସ୍ତ୍ରିୟାଂ । ଅତଏବ ସୂର୍ଯ୍ୟ ଗତିବାନ୍ ଥିବାର ପ୍ରକାଶିତ ହେଲା । ମୁଁ ସିନା ପୁରାଣରୁ ପ୍ରମାଣ

ଖୋଜୁଥିଲି, ବର୍ତ୍ତମାନ ତ ଆଗମରୁ ପ୍ରମାଣ ପାଇଲି । ଏହି ଶ୍ଳୋକଟି କୃଷ୍ଣାନନ୍ଦ ବାଗୀଶ ଭଟ୍ଟାଚାର୍ଯ୍ୟଙ୍କ ସଙ୍କଳିତ ତନ୍ତ୍ରସାରରେ ଉକ୍ତ ଅଛି ।”

ଚନ୍ଦ୍ରଶେଖର ସୂର୍ଯ୍ୟଙ୍କର ବ୍ୟାସ ୭୨୦୦୦ସହସ୍ର ଯୋଜନ ଥିବାର ନିରୂପଣ କରିଥିଲେ । ତାହା ମଧ୍ୟ ଅଥର୍ବବେଦରେ ପୂର୍ବରୁ ଉକ୍ତ ଅଛି;—

ଦ୍ୱିସପ୍ତତି ସହସ୍ର ଯୋଜନ ମିତାର୍କ ବମ୍ବାଦ୍ଧୃତ-
ମିହାପୁରୁଷ ବାଚୟେତ୍ୟନୁ କଗାବଥର୍ବା ଶ୍ରୁତିଃ ।
ମତ୍ୟେ ତଦନୁସାରତୋ ନୟନ ଗୋଚରକ୍ଷତ୍ରାହ—
ପ୍ରମାଣ ପରିଧିଗ୍ରହାଦକ ମକଣ୍ଡଳଂ* କଲ୍ପ୍ୟତେ ॥

(୧୨ ଶ୍ଳୋକ ୮ମ ପ୍ରକାଶ)

ସାମନ୍ତଙ୍କର ଜୀବନବ୍ୟାପୀ ପରିଶ୍ରମର ଫଳ ସିଦ୍ଧାନ୍ତ ଦର୍ପଣରେ ଯେଉଁ ସବୁ ବିଷୟ ବର୍ଣ୍ଣିତ ହୋଇଅଛି ଓ ନୂତନ ତତ୍ତ୍ୱ ଆବିଷ୍କୃତ ହୋଇଅଛି ତାହା ଏହି ପ୍ରକରଣର ଆଲୋଚ୍ୟ ବିଷୟ ନୁହେ । ସେ ସମ୍ବନ୍ଧରେ ସ୍ୱତନ୍ତ୍ରଭାବେ କେତେକ ବିବରଣ ଦ୍ୱିତୀୟ ଭାଗରେ ପ୍ରକାଶିତ ହେବାର ବାସନା ରହିଲା । ଈଶ୍ୱରଙ୍କ କୃପା ହେଲେ ତାହା ଫଳବତୀ ହେବ ।

**ଶିଷ୍ୟାବଳୀ**—ଚନ୍ଦ୍ରଶେଖରଙ୍କର ଅନେକ ଶିଷ୍ୟ ହୋଇ ଅଛନ୍ତି । ସର୍ବପ୍ରଥମେ ମେଦିନୀପୁରାନ୍ତର୍ଗତ ନଡ଼ୀ ଗ୍ରାମନିବାସୀ ରୁଦ୍ରନାରାୟଣ ଜ୍ୟୋତିର୍ଭୂଷଣ ଭଟ୍ଟାଚାର୍ଯ୍ୟ ଖଣ୍ଡପଡ଼ାରେ ସାମନ୍ତଙ୍କ ଗୃହରେ ପ୍ରାୟ ଦୁଇବର୍ଷ ରହି ସିଦ୍ଧାନ୍ତ ଦର୍ପଣ ଅଧ୍ୟୟନ କରିଥିଲେ । ସମୁଦାୟ ଗ୍ରନ୍ଥର ଅଧ୍ୟୟନ ଶେଷକରି ପ୍ରାୟ ସମସ୍ତ ଶ୍ଳୋକର ବଙ୍ଗାନୁବାଦ କରି ନେଇଥିଲେ ଏବଂ ସ୍ୱସ୍ଥାନରେ ରୁଦ୍ର ପଞ୍ଜିକା ନାମକ ଗୋଟିଏ ପଞ୍ଜିକା ଏକବର୍ଷ ମାତ୍ର

---

* ଅବଗଣଳଂ—ପ୍ରତ୍ୟକ୍ଷ ଭାବରେ ଅନୁଭବ କର ।

ପ୍ରକାଶ କରିଥିଲେ । କିନ୍ତୁ ବିଶୁଦ୍ଧ ଭାବରେ ଗଣନା କରିବାକୁ ଅସମର୍ଥ ହେଲେ । କାରଣ ଜ୍ୟୋତିଷତତ୍ତ୍ୱ ମଧ୍ୟରେ ତାହାଙ୍କର ବୁଦ୍ଧି ପ୍ରବେଶ କରି ପାରିଲା ନାହିଁ । ତେଣୁ ପଞ୍ଜିକା ବ୍ୟବସାୟ ପରିତ୍ୟାଗ କଲେ । ତତ୍ପରେ ମଞ୍ଜୁଷା ରାଜା ସାମନ୍ତଙ୍କ ଗୁଣରେ ମୁଗ୍ଧ ହୋଇ ଜ୍ୟୋତିଷ ଶିକ୍ଷାର୍ଥ ସ୍ୱୀୟ ରାଜ୍ୟରୁ ପଣ୍ଡିତମାନଙ୍କୁ ପ୍ରେରଣ କରିଥିଲେ ।

ପ୍ରଥମେ ବଲ୍ଲଭ ବିଦ୍ୟାଭୂଷଣ, ତତ୍ପରେ ତଦୀୟ ଜ୍ୟେଷ୍ଠ ପୁତ୍ର କୃଷ୍ଣଚନ୍ଦ୍ର ବାଣୀଭୂଷଣ (ମୃତ) ଖଣ୍ଡପଡ଼ାକୁ ଆସି କିଛି ସମୟ ସାମନ୍ତଙ୍କ-ଠାରୁ ଶିକ୍ଷା କରିଥିଲେ । ମଞ୍ଜୁଷାର ଶ୍ରୀଧର ପ୍ରହରାଜ (ମୃତ) ମଧ୍ୟ ସାମନ୍ତଙ୍କ ନିକଟରେ ଅଧ୍ୟୟନ କରିଥିଲେ; କିନ୍ତୁ ତାହାର ସିଦ୍ଧାନ୍ତ ବିଷୟରେ ବ୍ୟୁତ୍ପତ୍ତି ହୋଇ ନ ଥିଲା । ତଦନନ୍ତର ତନୟ ଗଦାଧର ବିଦ୍ୟାଭୂଷଣ ପ୍ରାୟ ୨।୩ ବର୍ଷ କାଳ ଖଣ୍ଡପଡ଼ାରେ ଅବସ୍ଥାନ କରି ସିଦ୍ଧାନ୍ତ ଦର୍ପଣ ଗ୍ରନ୍ଥର ସମସ୍ତ ବିଷୟ ଅଧ୍ୟୟନ କରିଥିଲେ । ଗଦାଧରଙ୍କ ସଂସ୍କୃତ ସାହିତ୍ୟରେ ବିଶେଷ ଦକ୍ଷତା ଥିବାରୁ ସେ ଗ୍ରନ୍ଥ ମଧ୍ୟରେ ସମ୍ୟକ୍ ପ୍ରବେଶ ଲାଭ କରିଥିଲେ ଏବଂ ଛାତ୍ରମଣ୍ଡଳୀରେ ଶୀର୍ଷସ୍ଥାନ ଅଧିକାର କରିଥିଲେ । ସେ ମଧ୍ୟ କିଛିଦିନ ନୂତନ ପଞ୍ଜିକା ପ୍ରକାଶ କରିଥିଲେ । ଉକ୍ତ ପଣ୍ଡିତ ମହାଶୟ ମଞ୍ଜୁଷାରେ ବିଦ୍ୟମାନ ଅଛନ୍ତି । ତତ୍ପରେ ତାଲଚେରନିବାସୀ ଦାମୋଦର ବାଣୀଭୂଷଣ (ମୃତ) ସାମନ୍ତଙ୍କ ଗୃହକୁ ଆସି କିଛି ସମୟ ଜ୍ୟୋତିଷ ଶିକ୍ଷା କରିଥିଲେ । ତଦନନ୍ତର ଖୋରଧା ପାଞ୍ଚଗଡ଼ନିବାସୀ ସଦାଶିବ ଖଡ଼ିରତ୍ନ କେବଳ ପଞ୍ଜିକା ନିର୍ମାଣ ପ୍ରକରଣଟି ଅଧ୍ୟୟନ କରି ତଦନୁସାରେ ସୂକ୍ଷ୍ମ ପଞ୍ଜିକା ପ୍ରକାଶ କଲେ । ତାହାଙ୍କ ମୃତ୍ୟୁପରେ ତତ୍ପୁତ୍ର ଲିଙ୍ଗରାଜ ଖଡ଼ିରତ୍ନ ବର୍ତ୍ତମାନ ପଞ୍ଜିକା ପ୍ରକାଶ କରୁଅଛନ୍ତି । ତାହା ଖଡ଼ିରତ୍ନ ପଞ୍ଜିକା ନାମରେ ଖ୍ୟାତ ହେଉଅଛି । ଲେଖକର ଉତ୍କଳ ଭାଷା ଶିକ୍ଷକ ପଣ୍ଡିତ ଶ୍ରୀ ରାଜବଲ୍ଲଭ ମିଶ୍ର ମଧ୍ୟ ସାମନ୍ତଙ୍କଠାରୁ ସିଦ୍ଧାନ୍ତ

ଦର୍ପଣ ଅଧ୍ୟୟନ କରି ତଦନୁସାରେ ପଞ୍ଜିକା ମୁଦ୍ରିତ କରାଇବାକୁ ଗୁରୁଙ୍କୁ ଅନୁରୋଧ କରିଥିଲେ ଏବଂ କିଛିଦିନ ପରେ ତାହାଙ୍କର ଅନୁରୋଧ ସଫଳ ହୋଇଥିଲା । ଏତଦ୍‌ଭିନ୍ନ ଗଞ୍ଜାମ ଘୁମୁସରନିବାସୀ ହରିହର ଶତପଥୀ, କଟକଜିଲ୍ଲାନ୍ତର୍ଗତ ଅଡ଼ଙ୍ଗ ଶାସନ ନିବାସୀ ଆଦିକନ୍ଦ ତ୍ରିପାଠୀ ପ୍ରଭୃତି କେତେଜଣ ପଣ୍ଡିତ କେବଳ ଗଣିତ-ଜ୍ୟୋତିଷ ଶିକ୍ଷା କରିବାକୁ ସାମନ୍ତଙ୍କର ଗୃହକୁ ଆସି ତାହାଙ୍କ ଶିଷ୍ୟତ୍ୱ ସ୍ୱୀକାର କରିଥିଲେ ।

**ବିବାହ**—ସାମନ୍ତ ଚନ୍ଦ୍ରଶେଖରଙ୍କର ୨୨ ବର୍ଷ ସମୟରେ ଅନୁଗୁଳ ରାଜବଂଶଜା ଭୁରଙ୍ଗ ଗ୍ରାମନିବାସୀ ଦାଶରଥି କ୍ଷତ୍ରିୟବର ସିଂହଙ୍କ କନ୍ୟା ସୀତାଦେବୀଙ୍କ ସଙ୍ଗରେ ଶୁଭପରିଣୟ ସମ୍ପାଦିତ ହୋଇଥିଲା । ସୀତାଦେବୀ ୧୭୬୧ ଶକାବ୍ଦରେ ଜନ୍ମଗ୍ରହଣ କରିଥିଲେ ଏବଂ ୧୮ ବର୍ଷ ବୟସରେ ପରିଣୀତା ହୋଇଥିଲେ । ବିବାହ ବେଦୀରେ ସାମନ୍ତଙ୍କର କୁରୂପ ଦେଖି କନ୍ୟାର ମାତା ତାହାଙ୍କ ହସ୍ତରେ ନିଜ କନ୍ୟା ସମର୍ପଣ କରିବାକୁ କୁଣ୍ଠିତା ହୋଇ ଗୋଳମାଳ ଆରମ୍ଭ କରିଥିଲେ । କବି କହିଅଛନ୍ତି—

କନ୍ୟା ବରୟତେ ରୂପଂ ମାତା ବିତ୍ତଂ ପିତା ଶ୍ରୁତଂ ।
ବାନ୍ଧବାଃ କୁଳମିଚ୍ଛନ୍ତି ମିଷ୍ଟାନ୍ନମିତରେ ଜନାଃ ।

ସାମନ୍ତ ଅତ୍ୟନ୍ତ ଗୁଣଶାଳୀ ହେଲେହେଁ ସୁରୂପ ନ ଥିଲେ; କିନ୍ତୁ ସ୍ତ୍ରୀଦେୟା ନିକଟରେ ଶରୀରର ସୌନ୍ଦର୍ଯ୍ୟ ଅତି ତୁଚ୍ଛ । ଉକ୍ତ ଗୋଳମାଳ ବିଷୟ ବରଯାତ୍ରୀମାନଙ୍କର କର୍ଣ୍ଣଗୋଚର ହୁଅନ୍ତେ ଜଣେ ବୟସ୍ୟ ସାମନ୍ତଙ୍କୁ କହିଲେ, "ସାଆନ୍ତ, ଆମେ ଶିଶୁପାଳପରି ହେବା ପରି ।" ସାମନ୍ତ କାରଣ ଜିଜ୍ଞାସା କରିବାରୁ ବୟସ୍ୟ ପ୍ରକୃତ ବିଷୟ ଜଣାଇଦେଲେ । ତହୁଁ ଚନ୍ଦ୍ରଶେଖର "ହଉ ତେବେ ଦେଖିବା" ଏତିକି କହି କଥା ପ୍ରସଙ୍ଗରେ ନୈଷଧ କାବ୍ୟର ଦମୟନ୍ତୀ ସ୍ୱୟମ୍ବର ଶ୍ଳୋକାର୍ଥ କରିବାକୁ ଆରମ୍ଭ

କରିଲେ । ତାହାଙ୍କର ମେଘ-ଗମ୍ଭୀର-ସ୍ୱର ଶ୍ରବଣରେ ଏବଂ ଅର୍ଥ ପାଠବରେ ତତ୍ରତ୍ୟ ସମସ୍ତେ ମୁଗ୍ଧ ହୋଇଗଲେ । ଶ୍ଲୋକାର୍ଥ ଶୁଣି କନ୍ୟା ପିତା ତତ୍ପଶ୍ଚାତ୍ ଦୁହିତାକୁ ସୁସଜ୍ଜିତା କରି ଜାମାତୃ ସଙ୍ଗରେ ବିଦାୟ କରିଦେଲେ । ସୀତାଦେବୀ ପିତ୍ରାଳୟରେ ଉତ୍ତମରୂପେ ଲିଖନ ପଠନ ଶିକ୍ଷା କରିଥିଲେ ଏବଂ ଶ୍ୱଶୁରାଳୟକୁ ଆସି ଦେବୋପମ ପତିସଙ୍ଗ ଲାଭରେ ଭକ୍ତି-ଗ୍ରନ୍ଥ ଓ ପୁରାଣାଦିର ଚର୍ଚ୍ଚା କରିବାକୁ ସୁଯୋଗ ପାଇଲେ । ସେ ଗୃହ କାର୍ଯ୍ୟରେ ସୁନିପୁଣା ଥିବାରୁ ତାହାଙ୍କ ଉପରେ ବିଶେଷ ପରିମାଣରେ ଗୃହର କାର୍ଯ୍ୟଭାର ଅର୍ପିତ ହୋଇଥିଲା । ସାମନ୍ତ ମହୋଦୟ ହିନ୍ଦୁଧର୍ମୋକ୍ତ ସମସ୍ତ ପର୍ବାଦି ପ୍ରତିପାଳନ ପୂର୍ବକ ନିଷେକ ବିଧି ରକ୍ଷା କରୁଥିଲେ । ନିଷିଦ୍ଧ ଦିବସମାନଙ୍କରେ ସ୍ତ୍ରୀ ସହବାସ ତ୍ୟାଗ ତାହାଙ୍କର ଏକପ୍ରକାର ବ୍ରତ ଥିଲା ଏବଂ ସଂଯମ ତାହାଙ୍କର ଗୋଟିଏ ପ୍ରଧାନ ଗୁଣ ଥିଲା ।

ଚନ୍ଦ୍ରଶେଖରଙ୍କର ପାଞ୍ଚ ପୁତ୍ର ଓ ଛଅ କନ୍ୟା ହୋଇଥିଲେ । (୧) ପୀତବାସ (୨) ବାସୁଦେବ (୩) ଯଦୁନାଥ (୪) ଗଦାଧର ଓ (୫) ଚକ୍ରଧର । ଏହି ନାମକରଣରୁ ପାଠକେ ଅବଗତ ହେବେ ଚନ୍ଦ୍ରଶେଖର ବିଶିଷ୍ଟ ଭଗବାନଙ୍କ ନାମ ଅନୁସାରେ କିପରି ପୁତ୍ରମାନଙ୍କର ନାମ ଦିଆ-ଯାଇଅଛି । କନ୍ୟାଗୁଡ଼ିକ ମଧ୍ୟରୁ ୫ଗୋଟି ମୃତା ଏବଂ ଗୋଟିଏ ବାଙ୍କୀଡ଼ମପଡ଼ା ଗଡ଼ରେ ବିବାହ କରିଅଛନ୍ତି । ସେ ସବୁ ଜୀବିତା ଅଛନ୍ତି । ଜ୍ୟେଷ୍ଠପୁତ୍ର ପୀତବାସ ସିଂହ ବିଶେଷ ସଂସ୍କୃତଜ୍ଞ ପଣ୍ଡିତ ଥିଲେ । ପିତାଙ୍କର ବାଲ୍ୟଗୁରୁ କୃତ୍ତିବାସ ରଥ ମଧ୍ୟ ବୃଦ୍ଧାବସ୍ଥାରେ ପୀତବାସଙ୍କର ବାଲ୍ୟଶିକ୍ଷକ ଥିଲେ । ପ୍ରୋକ୍ତ ଦୀନବନ୍ଧୁ ଖାଡ଼ଙ୍ଗାର ବଂଶଧର ବାଇଧର ପୁରୋହିତ ଓ ତତ୍ପୁତ୍ର ରାଜବଲ୍ଲଭ ମିଶ୍ର ତାହାଙ୍କର ସଂସ୍କୃତାଧ୍ୟାପକ ଥିଲେ । ବ୍ୟାକରଣ, କାବ୍ୟ, ନାଟକ ଓ ଅଳଙ୍କାରାଦିରେ ସେ ଜଣେ ଧୂରନ୍ଧର ପଣ୍ଡିତ ଥିଲେ ଏବଂ ତାହାଙ୍କର ରଚନା ଶକ୍ତି ମଧ୍ୟ ପ୍ରବଳ ଥିଲା । ସେ ଅନେକ ସଂସ୍କୃତ ଶ୍ଲୋକ ଏବଂ ଓଡ଼ିଆ କାବ୍ୟାଦି ରଚନା କରି ଅଛନ୍ତି । ସଂସ୍କୃତଭାଷାରେ କେତେକ

ଅଷ୍ଟକ ଓ ଶତକ ମଧ୍ୟ ରଚନା କରିଥିଲେ । ପୀତବାସ କୃଷ୍ଣକଳ୍ପଲତା କାବ୍ୟର ରଚୟିତା ଅଟନ୍ତି । ପ୍ରାଚୀନ ଓଡ଼ିଆ ସାହିତ୍ୟରେ ତାହାଙ୍କର ବିଶେଷ ଦକ୍ଷତା ଥିଲା । ମାତ୍ର ସେ ଜ୍ୟୋତିଷ ଚର୍ଚ୍ଚାରେ ଅପାରଗ ଥିଲେ । ପିତାଙ୍କପରି ନିଷ୍ଠାବାନ୍ ଓ ନିତ୍ୟକର୍ମରତ ଥିଲେ । ସେ ପିତୃବିୟୋଗ ଉପଲକ୍ଷରେ ପିତୃବିୟୋଗ-ବିଳାପ ନାମକ ଓଡ଼ିଆ ଚଉତିଶା ଏବଂ ସଂସ୍କୃତ ଭାଷାରେ ଦ୍ୱାଦଶଟି ଶ୍ଳୋକ ରଚନା କରି ଅଛନ୍ତି । ଉକ୍ତ ଶ୍ଳୋକଗୁଡ଼ିକ ପ୍ରତ୍ୟହ ନିତ୍ୟକର୍ମ ସମୟରେ ସେ ପାଠ କରୁଥିଲେ । ତାହାଙ୍କର ପରମାୟୁ ୫୫ ବର୍ଷ ଥିଲା ଏବଂ ସେ ସନ ୧୩୨୫ ସାଲ ଶ୍ରାବଣ ଅମାବାସ୍ୟା ଦିନ ବିସୂଚିକା ରୋଗରେ ପରଲୋକ ଗମନ କଲେ । ପୀତବାସଙ୍କର ଦୁଇ ପୁତ୍ର ଓ ଦୁଇ କନ୍ୟା ମଧ୍ୟରୁ ଜ୍ୟେଷ୍ଠପୁତ୍ର ସନାତନ ବାଲୁକେଶ୍ୱର ସିଂହଙ୍କର ପୋଷ୍ୟପୁତ୍ର ହୋଇ ଅଛନ୍ତି ଏବଂ କନିଷ୍ଠ ଜଗନ୍ନାଥ ବିଧବା ମାତାଙ୍କ ସମୀପରେ ଅଛନ୍ତି । କନ୍ୟା ଦୁଇଟି ମଧ୍ୟରୁ ଗୋଟିଏ ବିବାହିତା ହୋଇଅଛି । ପଣ୍ଡିତ ପଣ୍ଡିତ ମଧ୍ୟରେ ଯେପରି ବ୍ୟବହାର ସାମନ୍ତ ଜ୍ୟେଷ୍ଠ ପୁତ୍ରଙ୍କ ସହିତ ସେହିପରି ବ୍ୟବହାର କରୁଥିଲେ । ବାସୁଦେବ ୨୦ ବର୍ଷରେ ଓ ଯଦୁନାଥ ୧୬ ବର୍ଷରେ ବସନ୍ତ ରୋଗରେ ପରଲୋକ ପ୍ରାପ୍ତ ହେଲେ । ଚନ୍ଦ୍ରଧର ସନ ୧୯୩୧ ମସିହା ଜୁଲାଇ ମାସ ୯ ତାରିଖରେ ଲୋକାନ୍ତରିତ ହେଲେ । ସମ୍ପ୍ରତି ଏକମାତ୍ର ପୁତ୍ର ଗଦାଧର ବିଦ୍ୟମାନ ।

ଗଦାଧର କିଛି ସଂସ୍କୃତ ବ୍ୟାକରଣ ଓ କେତେକ କାବ୍ୟ ପଢ଼ିସାରି ଓଡ଼ିଆ ସାହିତ୍ୟର ଚର୍ଚ୍ଚା କରିଅଛନ୍ତି । କୋଟିବ୍ରହ୍ମାଣ୍ଡସୁନ୍ଦରୀ ଓ ପ୍ରବନ୍ଧ-ପୂର୍ଣ୍ଣଚନ୍ଦ୍ର ପ୍ରଭୃତି କାବ୍ୟ ଅଧ୍ୟୟନ କରି ଓଡ଼ିଆରେ ଅନେକ କବିତା ରଚନା କରି ଅଛନ୍ତି । ପିତାଙ୍କ ମୃତ୍ୟୁର ପାଞ୍ଚବର୍ଷ ପୂର୍ବରୁ ବା ସନ ୧୩୦୨ ସାଲରେ ସେ ଜ୍ୟୋତିଷ ଚର୍ଚ୍ଚା ଆରମ୍ଭ କଲେ । ସେତେବେଳକୁ ପିତୃଦେବ ରୁଗ୍‌ଣ ହୋଇ ଥିବାରୁ ଅତ୍ୟଳ୍ପ ମାତ୍ର ସମୟ ମିଳୁଥିଲା । ତେଣୁ ସମୁଦାୟ ସିଦ୍ଧାନ୍ତ ଦର୍ପଣ ଅଧ୍ୟୟନ କରି ପାରିଲେ ନାହିଁ । ମାତ୍ର ପଞ୍ଜିକା

କଲେ । ତାହାଙ୍କର ମେଘ-ଗମ୍ଭୀର-ସ୍ୱର ଶ୍ରବଣରେ ଏବଂ ଅର୍ଥ ପାଠବରେ ତନ୍ତତ୍ୟ ସମସ୍ତେ ମୁଗ୍ଧ ହୋଇଗଲେ । ଶ୍ଳୋକାର୍ଥ ଶୁଣି କନ୍ୟା ପିତା ତତ୍‌ପଣାତ୍ ଦୁହିତାଙ୍କୁ ସୁସଜ୍ଜିତା କରି ଜାମାତୃ ସଙ୍ଗରେ ବିଦାୟ କରିଦେଲେ । ସୀତାଦେବୀ ପିତ୍ରାଳୟରେ ଉତ୍ତମରୂପେ ଲିଖନ ପଠନ ଶିକ୍ଷା କରିଥିଲେ ଏବଂ ଶ୍ୱଶୁରାଳୟକୁ ଆସି ଦେବୋପମ ପତିସଙ୍ଗ ଲାଭରେ ଭକ୍ତି-ଗ୍ରନ୍ଥ ଓ ପୁରାଣାଦିର ଚର୍ଚ୍ଚା କରିବାକୁ ସୁଯୋଗ ପାଇଲେ । ସେ ଗୃହ କାର୍ଯ୍ୟରେ ସୁନିପୁଣା ଥିବାରୁ ତାହାଙ୍କ ଉପରେ ବିଶେଷ ପରିମାଣରେ ଗୃହର କାର୍ଯ୍ୟଭାର ଅର୍ପିତ ହୋଇଥିଲା । ସାମନ୍ତ ମହୋଦୟ ହିନ୍ଦୁଧର୍ମୋକ୍ତ ସମସ୍ତ ପର୍ବାଦ ପ୍ରତିପାଳନ ପୂର୍ବକ ବିଶେଷ ବିଧି ରକ୍ଷା କରୁଥିଲେ । ନିଷିଦ୍ଧ ଦିବସମାନଙ୍କରେ ସ୍ତ୍ରୀ ସହବାସ ତ୍ୟାଗ ତାହାଙ୍କର ଏକପ୍ରକାର ବ୍ରତ ଥିଲା ଏବଂ ସଂଯମ ତାହାଙ୍କର ଗୋଟିଏ ପ୍ରଧାନ ଗୁଣ ଥିଲା ।

ଚନ୍ଦ୍ରଶେଖରଙ୍କର ପାଞ୍ଚ ପୁତ୍ର ଓ ଛଅ କନ୍ୟା ହୋଇଥିଲେ । (୧) ପୀତବାସ (୨) ବାସୁଦେବ (୩) ଯଦୁନାଥ (୪) ଗଦାଧର ଓ (୫) ଚକ୍ରଧର । ଏହି ନାମକରଣରୁ ପାଠକେ ଅବଗତ ହେବେ ଚନ୍ଦ୍ରଶେଖର ବିଷ୍ଣୁ ଭଗବାନଙ୍କ ନାମ ଅନୁସାରେ ନିଜର ପୁତ୍ରମାନଙ୍କର ନାମ ଦିଆ-ଯାଇଅଛି । କନ୍ୟାଗୁଡ଼ିକ ମଧ୍ୟରୁ ଗୋଟି ମୃତା ଏବଂ ଗୋଟିଏ ବାଙ୍କୀ ଡ଼ମପଡ଼ା ଗଡ଼ରେ ବିବାହ କରିଅଛନ୍ତି । ସେ ସବୁ ଜୀବିତା ଅଛନ୍ତି । ଜ୍ୟେଷ୍ଠପୁତ୍ର ପୀତବାସ ସିଂହ ବିଶେଷ ସଂସ୍କୃତଜ୍ଞ ପଣ୍ଡିତ ଥିଲେ । ପିତାଙ୍କର ବାଲ୍ୟଗୁରୁ କୃତ୍ତିବାସ ରଥ ମଧ୍ୟ ବୃଦ୍ଧାବସ୍ଥାରେ ପୀତବାସଙ୍କର ବାଲ୍ୟଶିକ୍ଷକ ଥିଲେ । ପ୍ରୋକ୍ତ ଦୀନବନ୍ଧୁ ଖାଡ଼ଙ୍ଗାର ବଂଶଧର ବାଇଧର ପୁରୋହିତ ଓ ତତ୍‌ପୁତ୍ର ରାଜବଲ୍ଲଭ ମିଶ୍ର ତାହାଙ୍କର ସଂସ୍କୃତାଧ୍ୟାପକ ଥିଲେ । ବ୍ୟାକରଣ, କାବ୍ୟ, ନାଟକ ଓ ଅଳଙ୍କାରାଦିରେ ସେ ଜଣେ ଧୂରନ୍ଧର ପଣ୍ଡିତ ଥିଲେ ଏବଂ ତାହାଙ୍କର ରଚନା ଶକ୍ତି ମଧ୍ୟ ପ୍ରବଳ ଥିଲା । ସେ ଅନେକ ସଂସ୍କୃତ ଶ୍ଳୋକ ଏବଂ ଓଡ଼ିଆ କାବ୍ୟାଦି ରଚନା କରି ଅଛନ୍ତି । ସଂସ୍କୃତଭାଷାରେ କେତେକ

ଅଷ୍ଟକ ଓ ଶତକ ମଧ୍ୟ ରଚନା କରିଥିଲେ । ପୀତବାସ କୃଷ୍ଣକଲ୍ପଲତା କାବ୍ୟର ରଚୟିତା ଅଟନ୍ତି । ପ୍ରାଚୀନ ଓଡ଼ିଆ ସାହିତ୍ୟରେ ତାହାଙ୍କର ବିଶେଷ ଦକ୍ଷତା ଥିଲା । ମାତ୍ର ସେ ଜ୍ୟୋତିଷ ଚର୍ଚ୍ଚାରେ ଅପାରଗ ଥିଲେ । ପିତାଙ୍କପରି ନିଷ୍ଠାବାନ୍ ଓ ନିତ୍ୟକର୍ମରତ ଥିଲେ । ସେ ପିତୃବିୟୋଗ ଉପଲକ୍ଷରେ ପିତୃବିୟୋଗ-ବିଳାପ ନାମକ ଓଡ଼ିଆ ଚଉତିଶା ଏବଂ ସଂସ୍କୃତ ଭାଷାରେ ଦ୍ୱାଦଶଟି ଶ୍ଳୋକ ରଚନା କରି ଅଛନ୍ତି । ଉକ୍ତ ଶ୍ଳୋକଗୁଡ଼ିକ ପ୍ରତ୍ୟହ ନିତ୍ୟକର୍ମ ସମୟରେ ସେ ପାଠ କରୁଥିଲେ । ତାହାଙ୍କର ପରମାୟୁ ୫୫ ବର୍ଷ ଥିଲା ଏବଂ ସେ ସନ ୧୩୨୫ ସାଲ ଶ୍ରାବଣ ଅମାବାସ୍ୟା ଦିନ ବିସୁଚିକା ରୋଗରେ ପରଲୋକ ଗମନ କଲେ । ପୀତବାସଙ୍କର ଦୁଇ ପୁତ୍ର ଓ ଦୁଇ କନ୍ୟା ମଧ୍ୟରୁ ଜ୍ୟେଷ୍ଠପୁତ୍ର ସନାତନ ବାଲ୍ମିକେଶ୍ୱର ସିଂହଙ୍କର ପୋଷ୍ୟପୁତ୍ର ହୋଇ ଅଛନ୍ତି ଏବଂ କନିଷ୍ଠ ଜଗନ୍ନାଥ ବିଧବା ମାତାଙ୍କ ସମୀପରେ ଅଛନ୍ତି । କନ୍ୟା ଦୁଇଟି ମଧ୍ୟରୁ ଗୋଟିଏ ବିବାହିତା ହୋଇଅଛି ।(ପଣ୍ଡିତ ପଣ୍ଡିତ ମଧ୍ୟରେ ଯେପରି ବ୍ୟବହାର ସାମନ୍ତ ଜ୍ୟେଷ୍ଠ ପୁତ୍ରଙ୍କ ସହିତ ସେହିପରି ବ୍ୟବହାର କରୁଥିଲେ।) ବାସୁଦେବ ୨୦ବର୍ଷରେ ଓ ଯଦୁନାଥ ୧୬ବର୍ଷରେ ବସନ୍ତ ରୋଗରେ ପରଲୋକ ପ୍ରାପ୍ତ ହେଲେ । ଚକ୍ରଧର ସନ ୧୯୩୧ ମସିହା ଜୁଲାଇ ମାସ ୯ତାରିଖରେ ଲୋକାନ୍ତରିତ ହେଲେ । ସମ୍ପ୍ରତି ଏକମାତ୍ର ପୁତ୍ର ଗଦାଧର ବିଦ୍ୟମାନ ।

ଗଦାଧର କିଛି ସଂସ୍କୃତ ବ୍ୟାକରଣ ଓ କେତେକ କାବ୍ୟ ପଢ଼ିସାରି ଓଡ଼ିଆ ସାହିତ୍ୟର ଚର୍ଚ୍ଚା କରିଅଛନ୍ତି । କୋଟିବ୍ରହ୍ମାଣ୍ଡସୁନ୍ଦରୀ ଓ ପ୍ରବନ୍ଧ-ପୂର୍ଣ୍ଣଚନ୍ଦ୍ର ପ୍ରଭୃତି କାବ୍ୟ ଅଧ୍ୟୟନ କରି ଓଡ଼ିଆରେ ଅନେକ କବିତା ରଚନା କରି ଅଛନ୍ତି । ପିତାଙ୍କ ମୃତ୍ୟୁର ପାଞ୍ଚବର୍ଷ ପୂର୍ବରୁ ବା ସନ ୧୩୦୬ ସାଲରେ ସେ ଜ୍ୟୋତିଷ ଚର୍ଚ୍ଚା ଆରମ୍ଭ କଲେ । ସେତେବେଳକୁ ପିତୃଦେବ ରୁଗ୍‌ଣ ହୋଇ ଥିବାରୁ ଅତ୍ୟଳ୍ପ ମାତ୍ର ସମୟ ମିଳୁଥିଲା । ତେଣୁ ସମୁଦାୟ ସିଦ୍ଧାନ୍ତ ଦର୍ପଣ ଅଧ୍ୟୟନ କରି ପାରିଲେ ନାହିଁ । ମାତ୍ର ପଞ୍ଜିକା

ପ୍ରକରଣଟି ଉତ୍ତମରୂପେ ଶିକ୍ଷା କରି ବର୍ତ୍ତମାନ ପଞ୍ଜିକା ପ୍ରସ୍ତୁତ କରୁଅଛନ୍ତି । ଗଦାଧର ଓଡ଼ିଆ ଚତୁଷ୍ପଦୀ କବିତା ରଚନାରେ ଓ ସଂସ୍କୃତ ପଦ୍ୟ ରଚନାରେ ଅତ୍ୟନ୍ତ ଦକ୍ଷ ଅଟନ୍ତି । ସେ ପିତୃବିୟୋଗ ପରେ ଶୋକ-ଶତକ ନାମକ ଉତ୍କଳପଦ୍ୟ ଏବଂ ପିତୃସ୍ମୃତିନାମକ ଦ୍ୱାବିଂଶତି ସଂସ୍କୃତ ଶ୍ଳୋକ ରଚନା କରିଅଛନ୍ତି । ସେ କୌତୁକ ତରଙ୍ଗିଣୀ ନାମକ ଦ୍ୱାବିଂଶତି ଛନ୍ଦବିଶିଷ୍ଟ ଉତ୍କଳକାବ୍ୟ, ନକ୍ଷତ୍ରମୁକ୍ତାବଳୀ ଓ ଘଟୀସାରଣୀ ନାମକ ଜ୍ୟୋତିର୍ଗ୍ରନ୍ଥଦ୍ୱୟ ଉତ୍କଳ ଭାଷାରେ ରଚନା କରିଅଛନ୍ତି । ନକ୍ଷତ୍ରମୁକ୍ତାବଳୀରେ ନକ୍ଷତ୍ରଗଣର ବିବରଣ ଏବଂ ଘଟୀସାରଣୀରେ ଦଣ୍ଡ ସଂଶୋଧନ କରିବାର ପ୍ରଣାଳୀ ପ୍ରକାଶିତ ହୋଇଅଛି । ଉକ୍ତ ଗ୍ରନ୍ଥଦ୍ୱୟ ମୁଦ୍ରିତ ହୋଇ ପାରିନାହିଁ । ଫଳତ ଜ୍ୟୋତିଷରେ ମଧ ତାହାଙ୍କର ବିଶେଷ ବ୍ୟୁତ୍ପତ୍ତି ଅଛି । ପିତାଙ୍କ ପରି ବହୁଯନ୍ତ୍ରକର କୋଷ୍ଠୀ ନିର୍ମାଣ, ସାଧନ ଏବଂ ଫଳ କଥନରେ ତାହାଙ୍କର ଅନେକ ସମୟ ଯାପିତ ହୁଏ । ଗଦାଧର ସମୁଦାୟ ସିଦ୍ଧାନ୍ତଦର୍ପଣ ଅଧ୍ୟୟନ କରି ନ ଥିଲେହେଁ ତନ୍ମଧ୍ୟସ୍ଥ ଅନେକ ବିଷୟ ଅବଗତ ହୋଇଅଛନ୍ତି । ବର୍ତ୍ତମାନ ଗ୍ରନ୍ଥ-ବର୍ଣ୍ଣିତ ଶଙ୍କୁଚ୍ଛାୟା ବିଷୟ ପାଠକରି ସ୍ୱୟଂ ଶଙ୍କୁଦଣ୍ଡ ଓ ସୂର୍ଯ୍ୟ ଘଟୀ ନିର୍ମାଣ କରୁଅଛନ୍ତି ଏବଂ ମାନଯନ୍ତ୍ର, ସ୍ୱୟଂବହ ଯନ୍ତ୍ର ଓ ଖ ଗୋଳ ପ୍ରଭୃତି ନିର୍ମାଣ କରି ପାରୁ ଅଛନ୍ତି । ସେ ସମ୍ପ୍ରତି ଗଞ୍ଜାମଜିଲ୍ଲାନ୍ତର୍ଗତ ବଡ଼ଗଡ଼ ରାଜବାଟୀରେ ଗୋଟିଏ ଏବଂ ଅସ୍ମମାନଙ୍କର ଖଣ୍ଡପଡ଼ା ରାଜଧାନୀର କଚେରି ହତାରେ ଗୋଟିଏ ସୂର୍ଯ୍ୟଘଟୀ ନିର୍ମାଣ କରି ସ୍ଥାପନ କରିଅଛନ୍ତି । ଗଦାଧରଙ୍କର ଯେପରି ବୁଦ୍ଧିମତ୍ତା ଓ ଶିଳ୍ପ ବିଦ୍ୟାରେ ନିପୁଣତା ଅଛି ସେ ଅର୍ଥାଭାବରେ ପୀଡ଼ିତ ହେଉ ନ ଥିଲେ ପିତାଙ୍କ ଅବିଷ୍କୃତ ନାନା ବିଷୟ କାର୍ଯ୍ୟରେ ପରିଣତ କରି ପାରନ୍ତେ । ୧୮୬୭ ମସିହାରେ ତାହାଙ୍କର ଜନ୍ମ ଏବଂ ସେ ସୁସ୍ଥ ଶରୀର ଅଟନ୍ତି । ତାହାଙ୍କର ତିନପୁତ୍ର ଓ ଚାରି କନ୍ୟା ମଧ୍ୟରୁ ମଧ୍ୟମ ପୁତ୍ର ଲକ୍ଷ୍ମୀଧର ନୟାଗଡ଼ କିଲ୍ଲାନ୍ତର୍ଗତ

କୋରପିଠୀନିବାସୀ ମଦନ ମୋହନ ସାମନ୍ତଙ୍କର ପୋଷ୍ୟପୁତ୍ର ହୋଇ ଅଛନ୍ତି ଏବଂ ଜ୍ୟେଷ୍ଠ ବଂଶଧର ସଂସ୍କୃତ ଶିକ୍ଷା ପୂର୍ବକ ଜ୍ୟୋତିଃଶାସ୍ତ୍ରର ଆଲୋଚନା କରୁଅଛନ୍ତି । କନିଷ୍ଠ ପୁତ୍ରର ଶିକ୍ଷା ସମାପ୍ତ ହୋଇ ନାହିଁ ।

ଚନ୍ଦ୍ରଶେଖରଙ୍କର କନିଷ୍ଠ ପୁତ୍ର ଚକ୍ରଧର ଗଦାଧରଙ୍କଠାରୁ ବ ୧।୧୧ ମାସ ସାନ ଅର୍ଥାତ୍ ୧୮୭୯ ମସିହାରେ ଜନ୍ମଗ୍ରହଣ କରିଥିଲେ । ସେ ସଂସ୍କୃତ, ଓଡ଼ିଆ ଓ ଜ୍ୟୋତିଷ ବିଷୟର କିଛି କିଛି ଜାଣିଥିଲେ । ତାହାଙ୍କର ତିନି ପୁତ୍ର ଓ ଦୁଇ କନ୍ୟା ମଧ୍ୟରୁ ଦୁଇଟି କନ୍ୟା ବିବାହିତା । ଜ୍ୟେଷ୍ଠ ପୁତ୍ର ଜୟକୃଷ୍ଣ ସାମାନ୍ୟ ସଂସ୍କୃତ ଶିକ୍ଷା କରି ବଡ଼ାମ୍ବାରେ ବାସ କରୁଅଛନ୍ତି । ମଧ୍ୟମ ପଦ୍ମନାଭ ମାଟ୍ରିକୁଲେସନ ପରୀକ୍ଷା ଦେଇ ବିଫଳ ହୋଇଅଛନ୍ତି ଏବଂ କନିଷ୍ଠ ରଘୁନାଥ ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ଅଧ୍ୟୟନ କରୁଅଛନ୍ତି ।

**ନିତ୍ୟକର୍ମ**—ଆଜିକାଲି ନିତ୍ୟକର୍ମ କହିଲେ ଅନେକ ସ୍ଥଳରେ କେବଳ ପାଇଖାନା ଯିବା, ଦାନ୍ତ ଘଷିବା, ସ୍ନାନ କରିବା ଓ ଭୋଜନ କରିବାକୁ ବୁଝାଏ । ମାତ୍ର ଚନ୍ଦ୍ରଶେଖରଙ୍କର ନିତ୍ୟକର୍ମ ସେପରି ଅର୍ଥରେ ବ୍ୟବହୃତ ନୁହେ । ନିତ୍ୟ ଅର୍ଥାତ୍ ସ୍ଥାୟୀ କର୍ମ, ଯଦ୍ଦ୍ୱାରା ଭଗବତ୍ ସାନ୍ନିଧ୍ୟ ଲାଭ କରିବାର ପଥ ସୁଗମ ହୁଏ; ତାହାକୁହିଁ ପ୍ରକୃତ ନିତ୍ୟକର୍ମ ବୋଲାଯାଏ । ଚନ୍ଦ୍ରଶେଖର ପ୍ରାତଃକାଳରୁ ଗାତ୍ରୋତ୍ଥାନପୂର୍ବକ ପ୍ରାତଃ ସ୍ମରଣ ସମୟରେ ଅନ୍ୟାନ୍ୟ ସ୍ତବ ସହିତ ଜିହ୍ୱାକୁ ସମ୍ବୋଧନ କରି ପ୍ରତ୍ୟହ ନିମ୍ନୋକ୍ତ ରସନାଷ୍ଟକ ପାଠ କରୁଥିଲେ—

## ରସନାଷ୍ଟକଂ

କ୍ରୋଧଗ୍ରାହେବିଷୟ ସଲିଲେ ପାରଶୂନ୍ୟେ ଭବାବ୍ଧୌ
ସଂମଗ୍ନାନ୍ ତରଣିରିବ ଯସ୍ତାରୟତ୍ୟାଶୁ ଲୋକମ୍ ।

ତଂ ପ୍ରାପ୍ୟ ଶ୍ରୀଗୁରୁ କରୁଣୟା ସଞ୍ଚିତୈଃ ପୂର୍ବ-ପୁଣ୍ୟୈ
ର୍ଜିହ୍ୱେ ନିତ୍ୟଂ ଜପ ଜପ ହରେ ରାମକୃଷ୍ଣେତି ମନ୍ତ୍ରମ୍ । ୧ ।
ଯଜ୍ଞୈ ର୍ଦାନୈ ର୍ବ୍ରତଚୟତପୋ ହୋମତୀର୍ଥାଭିଷେକୈ
ର୍ଯା ନ ପ୍ରାପ୍ୟା ଗତିରହ ଜନୈ ର୍ଲଭ୍ୟତେ ଯେନ ସାପି ।
ହିତ୍ୱା ସର୍ବଂ ତଦିତରକଥାଜଲ୍ପନେ ତଂ ବିବକ୍ତେ
ଜିହ୍ୱେ ନିତ୍ୟଂ ଜପ ଜପ ହରେ ରାମକୃଷ୍ଣେତି ମନ୍ତ୍ରମ୍ । ୨ ।
ସତ୍ସ୍ୱନ୍ୟେଷୁ ଶ୍ରବଣ ନୟନତ୍ୱଙ୍ମୁଖେଷ୍ୱିନ୍ଦ୍ରିୟେଷୁ
ଯଦ୍ଦେବତୋସ୍ତ୍ୱଂ କଗତି ମୁନୟୋ ମୋକ୍ଷନଃ ଶ୍ରେଣୀମାହୁଃ ।
ତଂ ଯୋଗୀନ୍ଦ୍ରୈ ର୍ବିଷୟବିରତୈଃ କୀର୍ତ୍ତିତଂ ଧ୍ୟାନ ନିଷ୍ଠୈ
ର୍ଜିହ୍ୱେ ନିତ୍ୟଂ ଜପ ଜପ ହରେ ରାମକୃଷ୍ଣେତି ମନ୍ତ୍ରମ୍ । ୩ ।
ଯେ ଦୁର୍ବାର ମୁହୁରୁପଚିତୈଃ କୃଚ୍ଛ୍ରଚାନ୍ଦ୍ରାୟଣାଦ୍ୟୈ
ରଂହଃ ସଙ୍ଘା ନରକଗତିଦାଃ କାୟବାକ୍ଚିତ୍ତଜାତାଃ ।
ତେଷାଂ ନାଶଃ ସକୃଦପି ଯତଃ କୀର୍ତ୍ତିତା ଜ୍ଜାୟତେ ତମ୍
ଜିହ୍ୱେ ନିତ୍ୟଂ ଜପ ଜପ ହରେ ରାମକୃଷ୍ଣେତି ମନ୍ତ୍ରମ୍ । ୪ ।
ଲବ୍ଧ୍ୱା ଜନ୍ମାନ୍ୟହହ ଦୁରିତୈଃ ସ୍ଥାବରାଦିଷ୍ୱନେକା—
ନ୍ୟାପ୍ତଂ ପୁଣ୍ୟୈ ରଥ କତିପୟୈ ର୍ଜନ୍ମୟା ମାନୁଷତ୍ୱମ୍ ।
ତଦ୍ ବୈଫଲ୍ୟଂ ବ୍ରଜତୁ ନ ପୁନଃ ପ୍ରାଞ୍ଜଳିଃ ପ୍ରାର୍ଥୟେତ୍ୱାଂ
ଜିହ୍ୱେ ନିତ୍ୟଂ ଜପ ଜପ ହରେ ରାମକୃଷ୍ଣେତି ମନ୍ତ୍ରମ୍ । ୫ ।
ନିତ୍ୟଂ ବାଞ୍ଛା ଭବତି ମଧୁରେ ତାବକୀ ଚେଲ୍ଲୟଶୂନ୍ୟ—
ତୁଲ୍ୟଂ କିଞ୍ଚିଜ୍ଜଗତି ମଧୁରଂ କୃଷ୍ଣନାମାମୃତେନ ।
ଏତଜ୍ଜ୍ଞାତ୍ୱା ତଦିତର ମନନ୍ୱିଷ୍ୟ କିଞ୍ଚିତ୍କିକାମଂ
ଜିହ୍ୱେ ନିତ୍ୟଂ ଜପ ଜପ ହରେ ରାମକୃଷ୍ଣେତି ମନ୍ତ୍ରମ୍ । ୬ ।
ଯେନାପ୍ରୀତୋ ଭବତି ମନୁଜଃ ଶଳ୍ପବନ୍ଧୋ ଯଥୈବ
ମାବାଦୀସ୍ତତ୍ ପରୁଷ ବଚନଂ ଗ୍ରାମ୍ୟଗୀତଞ୍ଚ କିଞ୍ଚିତ୍ ।

ଯସ୍ୟା ନାସ୍ତେ ଦୁରିତ ମଧିକଂ ତା ମତଥ୍ୟାଂ ଚ ବାଚଂ
ଛିନ୍ଦ୍ଧେ ନିତ୍ୟଂ ଜପ ଜପ ହରେ ରାମକୃଷ୍ଣେତି ମନ୍ତ୍ରମ୍ । ୭ ।
ଦତ୍ତ୍ୱା ଭୁକ୍ତ୍ୱଂ ଦଧିଘୃତପୟଃ ଶର୍କରାଫାଣିତାଦ—
ସ୍ୱାଦୁଦ୍ରବ୍ୟାଣ୍ୟନିଶ ମଧୁନା କଣ୍ଠଦଭ୍ୟର୍ଥୟେଽହମ୍ ।
ଯାବତ୍ ପ୍ରାଣା ଇହ ମମ ତନୌ ହନ୍ତ ତିଷ୍ଠନ୍ତି ତାବ—
ଚ୍ଛିନ୍ଦ୍ଧେ ନିତ୍ୟଂ ଜପ ଜପ ହରେ ରାମକୃଷ୍ଣେତି ମନ୍ତ୍ରମ୍ । ୮ ।

ଏହି ରସନାଷ୍ଟକଟି ଅତ୍ୟନ୍ତ ଉପାଦେୟ ଥିବାରୁ ଏଥିର ଅର୍ଥ ସର୍ବସାଧାରଣର ବୋଧଗମ୍ୟ ହେବା ବାଞ୍ଛନୀୟ । ତେଣୁ ମୋହର ଅନୁରୋଧ କ୍ରମେ ସାମନ୍ତଙ୍କ ମଧ୍ୟମ ପୁତ୍ର ଶ୍ରୀ ଗଦାଧର ସିଂହ ଉକ୍ତ ଶ୍ଲୋକ ଗୁଡ଼ିକର ଯେଉଁ ପଦ୍ୟାନୁବାଦ କରିଦେଇ ଅଛନ୍ତି ତାହା ଏହି—

ରସନେ ଜପ ଜପ ସତତ, ହରେ ରାମକୃଷ୍ଣ ଏ ମହାମନ୍ତ୍ର ଗୋ । ଘୋଷା । ଯହିଁ କ୍ରୋଧଚୟ-କୁମ୍ଭୀର, ବିଷୟ ସଲିଳ ଅଛି ଯହିଁରେ । ଘୋର ଅପାର ଭବ-ସିନ୍ଧୁରେ ମାନବ ଯେ ବୁଡ଼ି ରହିଛି ଅତିଶୟରେ । ତାହାକୁ ଖରେ ଉଦ୍ଧାର କରେ, ଗୁରୁ କୃପାରେ ତା ଲଭି ସଞ୍ଚିତ ପୁର୍ବପୁଣ୍ୟରେ ଗୋ । ୧ । ଯେତେ ଯଜ୍ଞ ବ୍ରତ ଦାନ ତପ ତୀର୍ଥ ହୋମ ଅଭିଷେକମାନ । ତେଣେ ଯେଉଁ ଗତି ପାଇ ନ ପାରନ୍ତି ଯେଣେ ତା ଲଭିନ୍ତି ଏ ଭବେ ଜନ । ସେ ମନ୍ତ୍ର ଉଲ୍ଲକଥା ଜଲ୍ପନଠାରେ ଆସନ୍ନ-ଭବ ଛାଡ଼ି ଯହିଁ ନିର୍ଜନ ସ୍ଥାନ ଗୋ । ୨ । ଥିଲେ ହେଲେ ଅନ ଶ୍ରବଣନୟନଚର୍ମାଦ ଇନ୍ଦ୍ରିୟ ବ୍ରାତ । ତୋତେ ମୁନିଶ୍ରେଣୀ ମୋକ୍ଷର ନିଃଶ୍ରେଣୀ ଯା ହେତୁ ଜଗତେ କହନ୍ତି ସେ ତ । ବିଷୟ ଷାନ୍ତ,ଧ୍ୟାନ କରତ, ଯୋଗୀ ପ୍ରଶସ୍ତ ମାନଙ୍କରେ ହୋଇଅଛୁ କୀର୍ତ୍ତିତ ଗୋ ।୩। କାୟମନୋବାକ୍ୟ ସମ୍ଭୂତ ନରକ ଗତିଦ ଯେ ପାପବାର । ଅଚିନ୍ତ୍ୟ ବହୁତବାର ସମାହୃତ କୃଚ୍ଛ୍ର ଚାନ୍ଦ୍ରାୟଣାଦିରେ ଦୁର୍ବାର । ଥରେ ମାତର, କୀର୍ତ୍ତିନ୍ତୁ ଯାର, ସେମାନଙ୍କର

ବିନାଶ ଜାତ ହୁଅଇ ସତ୍ୱର ଗୋ ।୪। ବହୁ ପାତକରେ ସ୍ଥାବର ଆଦରେ ଆହା ଜନମ ବହୁତ । ଲଭି ଏ ଉତ୍ତାରେ କେତେକ ପୁଣ୍ୟରେ ପାଇଅଛି ମୁହିଁ ଯେ ମନୁଷ୍ୟତ୍ୱ । ପୁଣି ସେ ବ୍ୟର୍ଥ, ଭାବକୁ ପ୍ରାପ୍ତ, ନ ହେଉ ହସ୍ତ ଯୋଡ଼ି ନିବେଦୁଛି ତୋତେ ଏମନ୍ତ ଗୋ । ୫ । ମଧୁର ଦ୍ରବ୍ୟରେ ରହିଛି ନିତ୍ୟରେ ଯେବେ ତୋହର ବାଞ୍ଛିତ । କୃଷ୍ଣନାମାମୃତତୁଲ୍ୟ ଏ ଜଗତ ମଧ୍ୟେ ଅନ୍ୟ ସ୍ୱାଦୁ ନାହିଁ କିଛି ତ । ଜାଣି ଏ ତତ୍ତ୍ୱ, ସେ ନାମାମୃତ, ଭକ୍ତ ଇପ୍ସିତ ଅନ୍ୱେଷଣାକୁ ନ କର କାଙ୍କ୍ଷିତ ଗୋ । ୬ । ଯାହା ହେତୁ ଶଙ୍ଖ ବନ୍ଧ ହେବା ତୁଲ୍ୟ ଦୁଃଖିତ ହୁଅଇ ଲୋକ । ସେ କଠୁ ବଚନ କହନାହିଁ ପୁଣ ଗ୍ରାମ୍ୟଗୀତକୁ କାଙ୍କ୍ଷିତ ମାନକ । ତୁ* ନ ବଳକ ଯହିଁ ଅଧିକ, ନାହିଁ ପାତକ ପୁଣି ନ ଭଷ ସେ ଅତଥ୍ୟ ବାକ୍ୟ ଗୋ । ୭ । ଦଧି ଘୃତ କ୍ଷୀର ଫାଣିତ ଶାକର ଆଦ ସ୍ୱାଦୁଦ୍ରବ୍ୟମାନ । ଅନବରତରେ ତୋହ ନିମିତ୍ତରେ ପ୍ରଦାନ କର କରୁଛି ପ୍ରାର୍ଥନ । ଆହା ସାମାନ୍ୟ ମୁଁ ବର୍ତ୍ତିମାନ, ଏ ଦେହେ ପ୍ରାଣ, ଅଛନ୍ତି ଯାବତ ତାବତ ଦନ ଗୋ । ୮ । ମୋ ତାତ ଯେ ଅଷ୍ଟଶ୍ଳୋକୀ କଣା ଶିଷ୍ଟ ✝ ଦଣ୍ଡେ କଡ଼ି ହୋଇ ତୁଷ୍ଟ । ପଢୁଥାନ୍ତି ମିଷ୍ଟ ଭାବେ ତାର ସ୍ପଷ୍ଟ ଅର୍ଥ ପୁଣ୍ଡରୀତ ହୋଇଲା ସୃଷ୍ଟ । ହସ୍ତକୃତ ଭ୍ରଷ୍ଟ, ଭକ୍ତଙ୍କ ଇଷ୍ଟ, କରୁଣ ଏ ପୁଷ୍ଟ, ହରୁ ଗଦାଧର ସିଂହ ଅନିଷ୍ଟ ଗୋ । ୯ ।

ଏହାପରେ ନାନା ପ୍ରକାର ପ୍ରାତଃସ୍ମରଣ ପୂର୍ବକ ମୁଖ ପ୍ରକ୍ଷାଳନାନନ୍ତର ଦନ୍ତଧାବନ କରୁଥିଲେ । ଦନ୍ତ କାଷ୍ଠ ଖଣ୍ଡିକ ମଧ୍ୟ ସ୍ମୃତି ଶାସ୍ତ୍ରୋକ୍ତ ପରିମାଣରେ କଟା ହୋଇଥାଏ । ଅଧିକାଳ ଦାନ୍ତରେ ଗୁଡ଼ାଖୁ ଘଷିବା ଜନପଲ୍ଲୀରେ ମଧ୍ୟ ଦେଖାଯାଏ । ସେ ସମୟରେ ନସ୍ୟ ଅର୍ଥାତ୍ ଧୂଆଁପତ୍ର ଗୁଣ୍ଡର ବ୍ୟବହାର ଓଡ଼ିଶା ଏବଂ ଗଞ୍ଜାମ ଜିଲ୍ଲାରେ

---

କହନା

✝ ଅବଶିଷ୍ଟ

ବହୁଳ ଭାବରେ ଦୃଷ୍ଟ ହେଉଥିଲା । ଚନ୍ଦ୍ରଶେଖର ଦନ୍ତଧାବନ ସମୟରେ ନସ୍ୟ ବ୍ୟବହାର କରୁଥିଲେ । ଦନ୍ତଧାବନାନନ୍ତର ବହିର୍ଦ୍ଦେଶ ଯାଉଥିଲେ ଏବଂ ତତ୍ପରେ ପ୍ରାୟ ଏକଘଣ୍ଟା ତୈଳମର୍ଦ୍ଦନ ହେଉଥିଲା । ଇଦାନୀନ୍ତନ ନବ୍ୟ ଶିକ୍ଷିତ ସମ୍ପ୍ରଦାୟ ମଧ୍ୟରେ ତୈଳ-ମର୍ଦ୍ଦନ କ୍ୱଚିତ୍ ଦେଖାଯାଏ । ତିଳତୈଳର ମର୍ଦ୍ଦନଦ୍ୱାରା ବାସ୍ତବିକ ବାତବ୍ୟାଧିର ଶାନ୍ତି ହୁଏ ଏବଂ ମସ୍ତିଷ୍କ ଶୀତଳ ରହେ । ସେଥିପାଇଁ ଆର୍ଯ୍ୟଋଷିମାନେ ବାତବ୍ୟାଧିରେ ତୈଳମର୍ଦ୍ଦନର ବ୍ୟବସ୍ଥା କରିଅଛନ୍ତି । ସମ୍ପ୍ରତି ମଧ୍ୟ ମସ୍ତକରେ ବ୍ୟବହାର କରିବା ନିମନ୍ତେ ଯେଉଁ ସୁବାସିତ ତୈଳମାନ ବଜାରରେ ବିକ୍ରୀତ ହୁଏ ତହିଁର ପ୍ରଧାନ ଉପକରଣ ତିଳତୈଳ ।

ଚନ୍ଦ୍ରଶେଖର ତୈଳମର୍ଦ୍ଦନ ସମୟରେ ଗୃହର ଦୈନିକ କୃତ୍ୟ ବୁଝାସୁଝା କରୁଥିଲେ । ସେହି ସମୟରେ ତାହାଙ୍କୁ କୋଷ୍ଠୀ-ବ୍ୟବସ୍ଥାଦିର ପ୍ରଶ୍ନ ସମାଧାନ କରିବାକୁ ହେଉଥିଲା । ସ୍ମୃତିଶାସ୍ତ୍ରରେ ସାମନ୍ତଙ୍କର ଅସାଧାରଣ ପାଣ୍ଡିତ୍ୟ ଥିଲା । ଉତ୍କଳର ଗଦାଧର ପଦ୍ଧତି, ହରିହର ବାଜପେୟୀ, ମନୁ ସଂହିତା, ପରାଶର ସଂହିତା ପ୍ରଭୃତି ପ୍ରାୟ ସମସ୍ତ ସ୍ମୃତି ଶାସ୍ତ୍ର ତାହାଙ୍କର କଣ୍ଠସ୍ଥ ଥିଲା । କାହାରି ଶିଶୁଟିଏ ମରିଗଲେ କିଏ କେତେଦିନ ଅଶୌଚ ପାଳନ କରିବ ବୋଲି ପଚାରିବାକୁ ଆସିଲେ ସାମନ୍ତ ତତ୍କ୍ଷଣାତ୍ ଗୋଟିଏ ଗୋଟିଏ ଶ୍ଳୋକ ଉଚ୍ଚାରଣ କରି ମୁଖେ ମୁଖେ ତାହାର ବ୍ୟବସ୍ଥା କରି ଦେଉଥିଲେ । ତଦନନ୍ତର ସ୍ନାନ ସମୟରେ ଗଙ୍ଗାଙ୍କର ଅଷ୍ଟକ ଓ ସ୍ତୋତ୍ର ପାଠ କରୁଥିଲେ ଏବଂ ସ୍ନାନାନ୍ତେ ତିଳକ ଗ୍ରହଣ ସମୟରେ ସେ ଈଶ୍ୱରଙ୍କର ନାନା ପ୍ରକାର ସ୍ତୁତି ସ୍ତୋତ୍ର ପାଠ କରୁଥିଲେ । ଚନ୍ଦ୍ରଶେଖର ସ୍ମାର୍ତ୍ତ ବୈଷ୍ଣବ-ମତାବଲମ୍ବୀ ଏବଂ ଅତିବଡ଼ୀ ସମ୍ପ୍ରଦାୟଭୁକ୍ତ ଥିଲେ । ଓଡ଼ିଆ ଭାଗବତ

ପ୍ରଚୁରକ ଅଛିବଡ଼ ଜଗନ୍ନାଥ ଦାସଙ୍କ ମଠରେ ବର୍ତ୍ତମାନ ନାମ ଓଡ଼ିଆ ମଠ । ସାମନ୍ତ ସେହି ମଠର ମହନ୍ତଙ୍କୁ ବଡ଼ ଭକ୍ତି କରୁଥିଲେ । ଓଡ଼ିଶାରେ ପ୍ରତ୍ୟେକ ବ୍ରାହ୍ମଣ ଓ କ୍ଷତ୍ରିୟ ଗୃହରେ ଦେବତାଙ୍କ ସକାଶେ ଗୋଟିଏ ସ୍ୱତନ୍ତ୍ର କକ୍ଷ ଥାଏ । ତାହାକୁ ଦଅଁଘର କହନ୍ତି । ଆଜକାଲି କିନ୍ତୁ ତାହାର ବ୍ୟତିକ୍ରମ ଦେଖା ଯାଉଅଛି । ଚନ୍ଦ୍ରଶେଖର ଦଅଁଘରେ ବସି ନିତ୍ୟକର୍ମ କରନ୍ତି । ତାହାଙ୍କ ନିତ୍ୟକର୍ମ ଆରମ୍ଭ ପୂର୍ବରୁ ପୁରୋହିତ ବ୍ରାହ୍ମଣ ଆସି ଦେବଦେବୀମାନଙ୍କର ସ୍ନାନ ମାର୍ଜନା ଶେଷ କରି ଥାନ୍ତି । ସାମନ୍ତ ମହୋଦୟଙ୍କର ପୂର୍ବାହ୍ନ ନିତ୍ୟ କର୍ମରେ ପ୍ରାୟ ତିନିଘଣ୍ଟା ସମୟ ଯାପିତ ହେଉଥିଲା । ରାଧାକୃଷ୍ଣ, ହରିହର, ଲକ୍ଷ୍ମୀନାରାୟଣ, ନୃସିଂହ ଓ ଗଣେଶ ତାହାଙ୍କର ପୀଠ ଦେବତା ଥିଲେ । ତିଳକ ପରେ ତାନ୍ତ୍ରିକ ସନ୍ଧ୍ୟା ସମାପନାନନ୍ତର ଆସନରେ ଉପବିଷ୍ଟ ହୋଇ ପ୍ରଣବ, ମାତୃକାଦି ଷୋଡ଼ଶୋପଚାରରେ ମାନସ ପୂଜା ଶେଷ କରି ୬୮ଗୋଟି ଇଷ୍ଟମନ୍ତ୍ର ଜପ କରୁଥିଲେ । ତତ୍ପରେ ଭଗବଦ୍‌ଗୀତା, ଜଗନ୍ନାଥାଷ୍ଟକ, ଶ୍ରୀକୃଷ୍ଣାଷ୍ଟକ, ବିରୂପାକ୍ଷ ସ୍ତୁତି ଓ ଗ୍ରହସ୍ତୋତ୍ରାଦି ପାଠ କରୁଥିଲେ । ମାତ୍ର ଭଗବଦ୍ ଭକ୍ତି ସେ ସମସ୍ତର ପ୍ରଧାନ ଅଙ୍ଗ ଥିଲା । ତାହାଙ୍କର ସମସ୍ତ ପୂଜା ନିଷ୍କାମ ଭାବରେ ଅନୁଷ୍ଠିତ ହେଉଥିଲା । ଶ୍ରୀମଦ୍ ଭଗବଦ୍ ଗୀତାର ଦ୍ୱାଦଶ ଅଧ୍ୟାୟ ଅଥବା ଭକ୍ତିଯୋଗ ପ୍ରତ୍ୟହ ପାଠ ଶେଷକରି ପରେ ଗୀତାର ଅନ୍ୟାଂଶ ପାଠ କରୁଥିଲେ । ଯେଉଁ ସବୁ ସ୍ତୁତି ସ୍ତୋତ୍ର ପଠିତ ହେଉଥିଲା, ସେଥିପାଇଁ ତାହାଙ୍କୁ ପୁସ୍ତକର ଆଶ୍ରୟ ନେବାକୁ ହେଉ ନ ଥିଲା । ପ୍ରାୟ ସମସ୍ତ ପ୍ରଚଳିତ ସ୍ତୁତି ସ୍ତୋତ୍ରାଦି ତାହାଙ୍କର ମୁଖସ୍ଥ ଥିଲା । ସାମନ୍ତ ମୁଦ୍ରିତ ଚକ୍ଷୁରେ ଯେଉଁ ମାନସପୂଜା କରୁଥିଲେ ତାହା ଏହି—

ପଦ୍ମଂ ଗୃଷ୍ଟଦଲଂ ସୁବର୍ଣ୍ଣ ଘଟିତଂ ନାନାମଣି ପ୍ରସ୍ଫୁରତ୍
କାନ୍ତି ଶ୍ରେଣିମନୋହରଂ ସ୍ଫୁଟତରଂ ଧାତ୍ରା ସ୍ୱୟଂ ନିର୍ମିତଂ ।
ନିତ୍ୟଂ ଗୃସନ ମାଦରାନ୍ନ ନ ଗଣୈର୍ଭକ୍ତ୍ୟାପି ସଂଶନ୍ତିତଂ
ପଦ୍ମେଶସ୍ଫୁଟ ପଦ୍ମଲୋଚନ ହୃଦାଦତ୍ତଂ ତ୍ୱମଙ୍ଗୀ କୁରୁ । ୧ ।
ସ୍ୱାଗତାୟ ଜଗଦୀଶ ପେଶଲଂ ପୁଷ୍ପଗନ୍ଧମମଲଂ ମୟାର୍ପିତଂ ।
ପରିଗୃହାଣ ବିଭୋ କରୁଣାନିଧେ ତଦଧୁନା ମଧୁନା ପରିରଞ୍ଜିତମ୍ ।୨।
ଶ୍ୟାମାକାଦ୍ୟୁତଂ ମତଂ ମତିମତାଂ ସ୍ପୀତଂ ସୁଶୀତଂ ହୃଦା
ଦତ୍ତଂ ପାଦ୍ୟମିଦଂ ଗୃହାଣ ଚ ମୟା ଭକ୍ତ୍ୟା ସୁଧା ସନ୍ନିଭଂ ।
ଅର୍ଘ୍ୟଂ ତାବଦଦଂ ଯବାଦ ସହିତଂ ଦତ୍ତଂ ମୟା ଚେତସା
ବାରଂବାର ମନନ୍ତ କେଶବହରେ ଲକ୍ଷ୍ମୀପତେ ସ୍ୱୀକୁରୁ । ୩ ।
ଲବଙ୍ଗଜାତୀ ଫଲକାଦ ଯୁକ୍ତଂ ପୂତଂ ଗୃହାଣାଚମନୀୟ ମେତତ୍ ।
ଦତ୍ତଂ ହୃଦା ତୁଭ୍ୟମନନ୍ତ ଶର୍ମପ୍ରଦଂ ମୟା ତତ୍ପୁରସ୍ୟାଚ ଭକ୍ତ୍ୟା ।୪।
ଦଧ୍ୟାଜ୍ୟ ମଧୁଖଣ୍ଡାଢ଼୍ୟଂ ମଧୁପର୍କଂ ମନୋରମଂ ।
ମନସା ତରସା ଦତ୍ତଂ ଗୃହାଣ ପରମେଶ୍ୱର । ୫ ।
ପୁନରାଚମନୀୟଂତେ ପୁଣ୍ୟଜନ୍ଧ ନ ସାର୍ପିତମ୍ ।
ଗୃହାଣ ଜଗତାଂ ନାଥ ପାଥୋରୁହ ନିଭେକ୍ଷଣ । ୬ ।
ଗଙ୍ଗାଦ ତୀର୍ଥବର ନିର୍ଝର ନୀର ପୁର୍ଣ୍ଣୈ
ଲକ୍ଷ୍ମୀପତେ କନକକୁମ୍ଭଚୟୈ ର୍ମନୋଜ୍ଞୈଃ ।
କର୍ପୂର କୁଙ୍କୁମ ଲସନ୍ମୃଗନାଭିଗନ୍ଧ—
ବ୍ୟାମିଶ୍ରିତୈସ୍ତ ମନସା ସ୍ନପନଂ କରୋମି । ୭ ।
ଚମ୍ପକଚଣ୍ଡକରସ୍ଫୁର ଦ୍ୟୁତହରଂ ନବ୍ୟାମ୍ବରଂ ସୁନ୍ଦରଂ
ପୀତ ପୂତତରଂ ମହା ସୁଖକରଂ ସୁକ୍ଷ୍ମଂତ୍ୱ ମଙ୍ଗୀକୁରୁ ।
ନାନା ଭୂଷଣ ସଂଚୟଂ ସବନୟଂ ଧାତ୍ରା ସ୍ୱୟଂ ନିର୍ମିତଂ
ଶର୍ତ୍ତୈର୍ନୈବ ମୟାର୍ପିତଂ ତ୍ୱ ମଧୁନା ସ୍ୱୀକୁରୁକ ଶ୍ରୀପତେ । ୮ ।

ଯଜ୍ଞୋପବୀତେନ ସମଂ ମୁରାରେ ଦବ୍ୟୋତ୍ତରୀୟଂ ମନସାର୍ପିତଂ ଚ ଯତ୍ ।
ଗୃହାଣ ତଚ୍ଚାରୁତରଂ ନବୀନଂ ହେ ଦୀନବନ୍ଧୋଦ୍ଭବ ସାନ୍ଦ୍ରକମ୍ପଃ ।୯।
ସୁଗନ୍ଧମାନନ୍ଦଭରେଣ ଦତ୍ତଂ ଚତ୍ତେନ ମେ ମାଧବ ଦେବଦେବ ।
ଅଙ୍ଗୀକୁରୁଷ୍ୱଂ କୃପୟା ମୁରାରେ ସଂସାରସାରଂ ବରସୌରଭଶ୍ରି । ୧୦ ।
ମଲ୍ଲୀ ଚମ୍ପକ ଜାତିକାମ୍ବୁ ତୁଳସୀ ପୁଂନାଗ ସତ୍ କେତକୀ
କୁନ୍ଦାଦ୍ୟୁତ୍ତମପୁଷ୍ପଜାଲରଚିତା ମାଲାତୁଲା ମଞ୍ଜୁଳା ।
କର୍ପୂରସ୍ପୁରୁବାସିତା ମଧୁରପୋ ଚତ୍ତେନ ଭକ୍ତ୍ୟାମୟା ।
ଦତ୍ତା ସମ୍ପ୍ରତି ଗୃହ୍ୟତାଂ ନବଘନଶ୍ୟାମାଭିରାମାଃଚ୍ୟୁତେ । ୧୧ ।
ଗନ୍ଧବ୍ୟାପ୍ତ ଦଗନ୍ତରୋଽତିମଧୁରେ ଯୋ ଯୋଗନିଦ୍ରାହ୍ୱରେ
ଦତ୍ତୋ ମେ ମନସା ମହାସୁଖକରେ ଧୂପୋଽଧୁନା ଗୃହ୍ୟତାମ୍ ।
ଦିକ୍ସଂଖ୍ୟା କଳିତାଙ୍ଗ ଧୂପବସୁ ସଂଯୁକ୍ତୋ ମୁରାରେ ତଥା
ଦୀପୋଽୟଂ ନବଗୋଘୃତାକ୍ତ ବଲସଦବର୍ତ୍ତ୍ୟା ସ୍ଫୁରନ୍ ଗୃହ୍ୟତାମ୍ ।୧୨।
ଚଞ୍ଚଲବ୍ୟଘୃତେନ ପାଚିତତରଂ ସାରଂ ମହା ସୁନ୍ଦରଂ
ନାନାସୂପଭରଂ ମହାସୁଖକରଂ ସ୍ଫୀତଂ ତଥାଽନ୍ନଂ ବହୁ ।
ନାନାବ୍ୟଞ୍ଜନ ସଂଯୁତଂ ଚ ବଣିଜାଂ ଦ୍ରବ୍ୟୈପରଂ ରଞ୍ଜିତଂ
ହେ ଲକ୍ଷ୍ମୀଶ ବଶେଷତୋଷଦ ଜଳଂ ଦତ୍ତଂ ହୃଦା ଗୃହ୍ୟତାମ୍ ।
ପୁନଶ୍ଚମଣୀୟମାଦବଲ୍ଲଥୁବନାଥ ହୃଦା ମୟାର୍ପିତମ୍ ।
ମୁଖଶୁଦ୍ଧିକରଂ ଗୃହାଣଭୋ ହ୍ୟପରାଧଂ ବବଧଂ କ୍ଷମସ୍ୱମେ । ୧୪
ଜାତୀଫଲାଦିସହିତଂ ସୁହିତଂ ମୁରାରେ
ତାମ୍ବୁଲଜାଲମତୁଲଂ ବିମଲଂ ମନୋଜ୍ଞଂ ।
ଆନନ୍ଦବୃନ୍ଦଜନକଂ ମନସାର୍ପିତଂ ମେ
ପୂଗଂ ଗୃହାଣ ନବନୀରଦସୁନ୍ଦର ତ୍ୱମ୍ । ୧୫ ।
ଛତ୍ର ଚାମରଭବରୋତ୍ତମ ବୀଣା ଯନ୍ତ୍ରବାଦ୍ୟ ମଧୁରୀ ପ୍ରମୁଖାଢ୍ୟଂ ।
ଗୀତନୃତ୍ୟରଚନଂ ମନସା ଯତ କଳ୍ପିତଂ ସୁଖଯୁତାନ୍ୟୁହରେଦ୍ୱାମ୍ ।୧୬।
ଇତି ଶ୍ରୀ ସୂତସଂହିତୋକ୍ତା ମାନସପୂଜା ସମାପ୍ତା ।

**ଭୋଜନ**—ଅଧୁନିକ ଯୁଗରେ ସାମନ୍ତଙ୍କର ଖାଦ୍ୟ ବ୍ୟବହାର ଶୁଣିଲେ କେହି କେହି ଉପହାସ କରିବେ । କାରଣ ତଦୀୟ ଭୋଜନରେ ସ୍ୱତନ୍ତ୍ରତା ଥିଲା । ଯେଉଁ ତିଥିରେ ଯେଉଁ ଖାଦ୍ୟ ନିଷିଦ୍ଧ, ସେ ତାହା ବର୍ଜନ କରୁଥିଲେ । ମତ୍ସ୍ୟାଦି ଆମିଷ, ପଲାଣ୍ଡୁ, ରସୋନ, ଫଳାମିଷ ଓ ମୂଳାମିଷ ପ୍ରଭୃତି ସମସ୍ତ ବର୍ଜିତ ଥିଲା । କୁକ୍କୁଟାଣ୍ଡ ପ୍ରମାଣ ୨୦ ଗୁଣ୍ଡା ପୂର୍ବାହ୍ନରେ ଏବଂ ରାତିରେ ସେହିପରି ୧୮ ଗୁଣ୍ଡା ପ୍ରତ୍ୟହ ଭୋଜନ କରୁଥିଲେ । ଭୋଜନ ସମୟରେ ମଧ୍ୟ ବାମହସ୍ତ ରେଖାଦ୍ୱାରା କେବଳ ଜ୍ୟୋତିର୍ବିଷୟର ଗଣନା କରୁଥିଲେ । ନିମ୍ନଲିଖିତ ଶ୍ଳୋକାନୁସାରେ ସାମନ୍ତ ମହୋଦୟ ପ୍ରତ୍ୟେକ ତିଥିର ନିଷିଦ୍ଧ ପଦାର୍ଥ ବର୍ଜନ କରୁଥିଲେ ।

କୁଷ୍ମାଣ୍ଡେ ଚାର୍ଥହାନିଃ ସ୍ୟାତ୍ ବୃହତ୍ୟାଂ ନ ସ୍ମରେଦ୍ଧରିଂ ।
ବହୁଶତ୍ରୁଃ ପଟୋଲେ ସ୍ୟାଦ୍ଧନହାନିଶ୍ଚ ମୂଳକେ । ୧ ।
କଳଙ୍କୀ ଜାୟତେ ବିଲ୍ୱେ ତିର୍ଯ୍ୟଗ୍ୟୋନିଶ୍ଚ ନିମ୍ବକେ ।
ତାଳେ ଶରୀରନାଶଃ ସ୍ୟାନ୍ନାରିକେଳେ ଚ ମୂର୍ଖତା । ୨ ।
ତୁମ୍ବୀ ଗୋମାଂସ ତୁଲ୍ୟା ସ୍ୟାତ୍ କଲମ୍ବୀ ଗୋବଧାତ୍ମିକା ।
ଶିମ୍ବୀ ପାପକରଜ୍ଞେୟା ପୂତିକା ବ୍ରହ୍ମଘାତିକା । ୩ ।
ବାର୍ତ୍ତାକ୍ୟାଂ ସୁତହାନିଃ ସ୍ୟାତ୍ ଚିରରୋଗଶ୍ଚ ମାଷକେ ।
ମହାପାପକରଂ ମାଂସଂ ବର୍ଜୟେତ୍ ପ୍ରତିପତ୍ କ୍ରମାତ୍ । ୪ ।

ଅର୍ଥାତ୍ ପ୍ରତିପଦାରେ ପାଣିକଖାରୁ, ଦ୍ୱିତୀୟାରେ ବୋଇତିକଖାରୁ, ତୃତୀୟାରେ ପଟୋଳ, ଚତୁର୍ଥୀରେ ମୂଳା, ପଞ୍ଚମୀରେ ବେଲ, ଷଷ୍ଠୀରେ ନିମ୍ବ, ସପ୍ତମୀରେ ତାଳ, ଅଷ୍ଟମୀରେ ନଡ଼ିଆ, ନବମୀରେ ଲାଉ, ଦଶମୀରେ କଲମ୍ବ ଶାଗ, ଏକାଦଶୀରେ ଶିମ୍ବ, ଦ୍ୱାଦଶୀରେ ପୋଇ, ତ୍ରୟୋଦଶୀରେ ବାଇଗଣ, ଚତୁର୍ଦ୍ଦଶୀରେ ବିରି ଏବଂ ଅମାବାସ୍ୟା ଓ ପୂର୍ଣ୍ଣିମାରେ ମାଂସ ଭୋଜନ ଦୋଷାବହ ।

ଗୃହସ୍ଥିତ ଦେବଦେବୀଙ୍କର ଭୋଗ ସକାଶେ ସ୍ୱତନ୍ତ୍ର ସୂପକାର (ପାଚକ) ନିଯୁକ୍ତ ଥିଲେ । ସୂପକାର ପାକ ଶେଷ କରି ଦଅଁ ଘରକୁ ନୈବେଦ୍ୟ ସବୁ ଆନୟନ କରେ ଏବଂ ପୁରୋହିତ ବ୍ରାହ୍ମଣ ତାହା ଯଥାବିଧି ପୂଜା ଶେଷ କଲେ ସାମନ୍ତ ତାଙ୍କ ଭୋଜନ କରୁଥିଲେ । ଯାହା ଦେବଯୋଗ୍ୟ ନୁହେ ଅଥବା ଯାହା ହିନ୍ଦୁମାନଙ୍କର ନଷିଦ୍ଧ ଖାଦ୍ୟ ତାହା ସାମନ୍ତଙ୍କର ଭୋଜନ ପାଇଁକୁ ଆସୁ ନ ଥିଲା । ସେ ପଥ୍ୟାଶୀ ଥିବାରୁ ପରିମିତ ଭାବରେ ଲଘୁପାଚ୍ୟ ଦ୍ରବ୍ୟ ଭୋଜନ କରୁଥିଲେ । ଚନ୍ଦ୍ରଷଦ୍ଧ ପ୍ରଭୃତି ଅନ୍ନ ଭୋଜନର ନଷିଦ୍ଧ ଦିବସମାନ ଯଥାବିଧି ପାଳନ କରୁଥିଲେ । ଶାସ୍ତ୍ରାନୁମୋଦିତ ଏକାଦଶୀ ବ୍ରତ କରୁଥିଲେ । ସେଥିରେ ଶାରୀରିକ କ୍ଳେଶ ହେଲେହେଁ ତାହାକୁ ଗଣନା କରୁ ନ ଥିଲେ । ଦ୍ୱାଦଶୀ ଦିଥିରେ କେବଳ ପାରଣା ସକାଶେ ଅନ୍ୟାନ୍ୟ ଦିବସ ତୁଳନାରେ ଦଅଁ ଘରର କାର୍ଯ୍ୟ ଶୀଘ୍ର ସମ୍ପାଦିତ ହେଉଥିଲା । ସେ ଦିବା ଭୋଜନ ପରେ ଅଳ୍ପକ୍ଷଣ ନିଦ୍ରା କରୁଥିଲେ । ତାହା ମଧ୍ୟ ବିଧିଅନୁଯାୟୀ ହେଉଥିଲା । ଯେପରି

ଶ୍ୱାସାନଷ୍ଟୌ ସମୁତ୍ତାନଃ ତାନ୍ଦ୍ୱିଃ ପାର୍ଶ୍ୱେତୁ ଦକ୍ଷିଣେ ।
ତତସ୍ତଦ୍ଦ୍ୱିଗୁଣାନ୍ ବାମେ ପଶ୍ଚାତ୍ ସ୍ୱପ୍ୟାତ୍ ଯଥାସୁଖମ୍ ।

ଅର୍ଥାତ୍ ଆଠ ନିଶ୍ୱାସ ଚିତ୍ ହୋଇ, ଷୋଳ ନିଶ୍ୱାସ ଦକ୍ଷିଣ ପାର୍ଶ୍ୱରେ ଏବଂ ବତିଶ ନିଶ୍ୱାସ ବାମ ପାର୍ଶ୍ୱରେ ଶୋଇ ପରେ ଇଚ୍ଛାନୁସାରେ ଶୟନ କରିବା ଉଚିତ । ସେ ନିଦ୍ରା ଯିବା ସମୟରେ ଓ ନିଦ୍ରା ଭଙ୍ଗ ପରେ ବାରମ୍ବାର ହରିନାମ ଉଚ୍ଚାରଣ କରୁଥିଲେ ।

ସାମନ୍ତ ଅମେଧ୍ୟ ବସ୍ତୁର ସ୍ପର୍ଶ ସ୍ପୃହା କରୁ ନ ଥିଲେ । ଖାଦ୍ୟ ଦୋଷରୁ କଦାପି ତାହାଙ୍କର ଅଜୀର୍ଣ୍ଣାଦି ରୋଗ ଜାତ ହେଉ ନ ଥିଲା । ଦୁଷ୍ପାଚ୍ୟ ବା ଗରିଷ୍ଠ ଖାଦ୍ୟର ସେ ପକ୍ଷପାତୀ ନ ଥିଲେ । ବାଡ଼ ବଗିଚାରେ

କୌଣସି ନୂତନ ଫଳ ଜାତହେଲେ ପ୍ରଥମେ ଦେବତା ବ୍ରାହ୍ମଣଙ୍କୁ ନ ଦେଇ ସେ କେବେହେଁ ତାହା ଭକ୍ଷଣ କରୁ ନ ଥିଲେ । ଖାଦ୍ୟପେୟରେ ତାହାଙ୍କର କୌଣସି ଆଡ଼ମ୍ବର ନ ଥିଲା । ନିଜେ ଭଲ ଖାଇ ପରିବାରର ଅନ୍ୟମାନଙ୍କୁ ସେଥିରୁ ବଞ୍ଚିତ କରିବା ତାହାଙ୍କ ଜୀବନରେ ଦିନେ ସୁଦ୍ଧା ଘଟି ନ ଥିଲା । ଯେତେ ଶୋଗ ହେଲେ ମଧ୍ୟ ଦେବତାଙ୍କୁ ନୈବେଦ୍ୟ ନ କରି ସେ କଦାପି ଭୋଜନ କରୁ ନ ଥିଲେ । ନିଜେ ଖାଇବା ଅପେକ୍ଷା ପରକୁ ଖୁଆଇବାରେ ତାହାଙ୍କର ଅଧିକ ସ୍ନେହ ଥିଲା । ପିତୃ ଶ୍ରାଦ୍ଧାଦିରେ ବ୍ରାହ୍ମଣ-ମାନେ ଯେପରି ନାନା ପ୍ରକାର ସୁଖାଦ୍ୟ ପଦାର୍ଥ ଭୋଜନ କରନ୍ତି, ସେ ନିଜେ ତାହାର ବ୍ୟବସ୍ଥା କରୁଥିଲେ । ଖାଇବା ପୂର୍ବରୁ ଅତିଥି ଉପସ୍ଥିତ ହେଲେ ପ୍ରଥମେ ତାହାର ଭୋଜନର ବନ୍ଦୋବସ୍ତ ନ କରି ନିଜେ ଆହାର କରୁ ନ ଥିଲେ । ପର୍ବ ଦିବସମାନଙ୍କରେ ଦେବତାଙ୍କ ପାଇଁ ଯେପରି ନାନାବିଧ ଉତ୍କୃଷ୍ଟ ଭୋଗ ପ୍ରସ୍ତୁତ ହୁଏ, ତହିଁର ବ୍ୟବସ୍ଥା କରୁଥିଲେ । ସେ ନସ୍ୟଭିନ୍ନ କୌଣସି ପ୍ରକାର ମାଦକ ଦ୍ରବ୍ୟ ସେବନ କରୁ ନ ଥିଲେ । କେବଳ ଦେଶ ପ୍ରଚଳନ ଅନୁସାରେ ତାମ୍ବୁଳ ଚର୍ବଣ କରୁଥିଲେ । ସେଥିରେ କଦାପି ଗୁଣ୍ଡିର ବ୍ୟବହାର ହେଉ ନ ଥିଲା । ତାହା ମଧ୍ୟ ଅତି ପବିତ୍ର ଭାବରେ ବ୍ୟବହୃତ ହେଉଥିଲା । ଛୁଆଁଛୁ ଲୁଗା ପିନ୍ଧି ସେ କଦାପି ପାନ ଖାଉ ନ ଥିଲେ ଏବଂ ଭଲ ଲୁଗା ପିନ୍ଧି ବସିବା ସମୟରେ ପାନ ଖାଇ ପ୍ରତ୍ୟେକ ଥର ହସ୍ତ ପ୍ରକ୍ଷାଳନ କରୁଥିଲେ । ସେଥିପାଇଁ ନିକଟରେ ଗୋଟିଏ ଜଳପୂର୍ଣ୍ଣ ଗଡ଼ୁ ଓ ତଦୁପରି ଖଣ୍ଡେ କରିଆ ଗାମୁଛା ରଖା ହୋଇଥାଏ । ରାତିରେ ଭୋଜନ ଶେଷରେ ଭଲ ଲୁଗା ପିନ୍ଧି ପାନ ଖାଇ-ସାରି ମୁଖ ପ୍ରକ୍ଷାଳନ କରୁଥିଲେ ଓ ତତ୍ପରେ ଶଯ୍ୟାକୁ ଯାଉଥିଲେ । ପାନ ଚର୍ବିତ ହେବା ପୂର୍ବରୁ ମଧ୍ୟ କୃଷ୍ଣାର୍ପିତ ହେଉଥିଲା ।

ଦିବା ନିଦ୍ରାଭଙ୍ଗ ପରେ 'ବିଦ୍ୟାଚର୍ଚ୍ଚା' ହେଉଥିଲା । ବୃଦ୍ଧାବସ୍ଥାରେ ତାଳପତ୍ର ପୁସ୍ତକ ପଠନ ସମୟରେ ସାମାନ୍ୟ ଚଷମା ବ୍ୟବହାର କରୁଥିଲେ ।

ମାତ୍ର ନକ୍ଷତ୍ରାବଲୋକନ ସମୟରେ ଚଷମା ଆବଶ୍ୟକ ହେଉ ନ ଥିଲା । ଦିନର ସେହି ସମୟରେ ସମସ୍ତ ପଣ୍ଡିତ ସାକ୍ଷାତ୍ ଲାଭ କରି ବିଦ୍ୟାଚର୍ଚ୍ଚା କରୁଥିଲେ ଏବଂ ବହୁଲୋକ କୋଷ୍ଠୀ ଦେଖାଇ ଫଳାଫଳ ବୁଝୁଥିଲେ । ସନ୍ଧ୍ୟା ଉପସ୍ଥିତ ହେବା ମାତ୍ରେ ଯେତେ କାର୍ଯ୍ୟ ଥାଉ ପଛକେ ହଠାତ୍ ଉଠିଯାଇ ସେ ଶୁଚି ହୋଇ ସନ୍ଧ୍ୟୋପାସନା ଓ ଜପ କରୁଥିଲେ । କୌଣସି ବିଶିଷ୍ଟ ବ୍ୟକ୍ତିଙ୍କ ସହିତ ଆଳାପ କରିବାରେ ସନ୍ଧ୍ୟୋପାସନାର ସମୟ ଅତୀତ ହୋଇଗଲେ ତହିଁର ପ୍ରାୟଶ୍ଚିତ୍ତ ସ୍ୱରୂପ ଅତିରିକ୍ତ ଗାୟତ୍ରୀମନ୍ତ୍ର ଜପ କରି ତତ୍ପରେ ନୈମିତ୍ତିକ ଜପାଦି କରୁଥିଲେ । ସନ୍ଧ୍ୟା ସମୟରେ ଉପାସନା ଓ ଜପାଦିରେ ତାହାଙ୍କର ଦୁଇଘଣ୍ଟା ସମୟ ଅତିବାହିତ ହେଉଥିଲା । ଏତଦ୍ଭିନ୍ନ ଦିବାରାତ୍ର ସର୍ବଦା ସେ ହରେର୍ନାମ ଉଚ୍ଚାରଣ କରୁଥିଲେ । ଜପାନ୍ତେ ପ୍ରତ୍ୟହ ଗୀତଗୋବିନ୍ଦରୁ ଗୋଟିଏ ଲେଖାଏ ସର୍ଗ ପାଠ କରୁଥିଲେ ଏବଂ ତତ୍ପରେ ନାମ ସଙ୍କୀର୍ତ୍ତନ କରୁଥିଲେ । ରାତ୍ରିରେ ସେ ଜପାଦି ଶେଷରେ ସଂସ୍କୃତ ମହାଭାରତ, ଶ୍ରୀମଦ୍ଭାଗବତ, ହରିବଂଶ, ବ୍ରହ୍ମବୈବର୍ତ୍ତ ପୁରାଣ ପ୍ରଭୃତିର ଚର୍ଚ୍ଚା କରୁଥିଲେ ଏବଂ ଜଗନ୍ନାଥ ଦାସଙ୍କ କୃତ ଓ ଦୀନବନ୍ଧୁ ଖାଡ଼ଙ୍ଗାଙ୍କ କୃତ ଓଡ଼ିଆ ଭାଗବତ ଏବଂ ବିଦଗ୍ଧ ଚିନ୍ତାମଣି ପ୍ରଭୃତି ଓଡ଼ିଆ ପୁରାଣାଦିର ଆଲୋଚନା କରୁଥିଲେ । ଏ ସମସ୍ତ କାର୍ଯ୍ୟ ମଧ୍ୟରେ ଗଣନା ବଗୁର ବୁଡ଼ ରହୁଥାଏ । ନାମ କୀର୍ତ୍ତନ ସମୟରେ ମଧ୍ୟ ବ୍ରାହ୍ମଣଙ୍କ ଦ୍ୱାରା ପଠିତ ପୁରାଣର ପଦ ସଂଖ୍ୟା ହେଉଥାଏ ।

**ନାମ ପ୍ରଚାର**—ପ୍ରାୟ ୬୦ ବର୍ଷ ପୂର୍ବରେ ପାରିକୁଦରେ ଖଣ୍ଡପଡ଼ାର ତଦାନୀନ୍ତନ ରାଜା ନଟବର ସିଂହ ବିବାହ କରିବା ସମୟରେ ସାମନ୍ତ ତାହାଙ୍କ ସଙ୍ଗରେ ସେଠାକୁ ଯାଇଥିଲେ । ସେତେବେଳକୁ ସେ ସିଦ୍ଧାନ୍ତ ଦର୍ପଣ ଗ୍ରନ୍ଥ ରଚନା ଶେଷ କରିଥିଲେ । ସେଠାରେ ମଞ୍ଜୁଷାରାଜ ଜଗନ୍ନାଥ ରାଜମଣି ଦେଓ (ବାସୁଦେବଙ୍କ ପିତା ଓ ଶ୍ରୀନିବାସଙ୍କ ପିତାମହ)

ଉପସ୍ଥିତ ଥିଲେ । ସେ ସାମନ୍ତଙ୍କ ପାଣ୍ଡିତ୍ୟର ପରିଚୟ ପାଇ ତାହାଙ୍କୁ ମଞ୍ଜୁଷାକୁ ଡକାଇ ନେଲେ ଏବଂ ସାମନ୍ତ ତତ୍‌ସ୍ଥ ମହେନ୍ଦ୍ର ପର୍ବତର ଉଚ୍ଚତା ନିର୍ଣ୍ଣୟ କଲେ । ତାହା ପୂର୍ବ ନିର୍ଦ୍ଦିଷ୍ଟ ଉଚ୍ଚତା ସଙ୍ଗେ ସମାନ ହେବାରୁ ଲୋକେ ଆଶ୍ଚର୍ଯ୍ୟାନ୍ୱିତ ହେଲେ । ମଞ୍ଜୁଷାରାଜ ସେ ବିଷୟ ମାନ୍ଦ୍ରାଜ ଗଭର୍ଣ୍ଣମେଣ୍ଟଙ୍କୁ ଜଣାଇଲେ ଏବଂ ସାମନ୍ତ ଜଣେ ପ୍ରଧାନ ଜ୍ୟୋତିଷୀ ବୋଲି ଦାକ୍ଷିଣାତ୍ୟରେ ପରିଚିତ ହେଲେ ।

ତତ୍ପରେ ସେ ଗୋଟିଏ ସୂର୍ଯ୍ୟଗ୍ରହଣ ଗଣନା କରି କଳିକତାରେ ଦୃଶ୍ୟ ହେବ ବୋଲି ପ୍ରକାଶ କରନ୍ତେ ସେହି ରାଜା ମାନ୍ଦ୍ରାଜ ଗଭର୍ଣ୍ଣମେଣ୍ଟଙ୍କୁ ଜଣାଇଲେ । ତାହା ଶୁଣି ତତ୍‌ସ୍ଥ ଅନ୍ୟ ଜଣେ ପ୍ରସିଦ୍ଧ ଜ୍ୟୋତିଷୀ ରଘୁନାଥ ଆଚାର୍ଯ୍ୟ ଏପରି ଗ୍ରହଣ ଘଟିବ ନାହିଁ ବୋଲି ମଞ୍ଜୁଷାରାଜାଙ୍କୁ ଲେଖିଥିଲେ । ମାତ୍ର ସାମନ୍ତଙ୍କ ଗଣନା ଠିକ୍ ହେଲା । ଅର୍ଥାତ୍ ତାହାଙ୍କ ସିଦ୍ଧାନ୍ତ ଅନୁସାରେ କଳିକତାରେ ସେହି ଗ୍ରହଣ ଦୃଷ୍ଟ ହେଲା । ତେଣୁ ଦୂର ଦେଶରେ ମଧ୍ୟ ସାମନ୍ତଙ୍କର ନାମ ପରିଚିତ ହେଲା ।

ଥରେ ଗୋଟିଏ ଗ୍ରହ ଚନ୍ଦ୍ରମଣ୍ଡଳର ପୃଷ୍ଠ ଭେଦକରି ଚାଲିଗଲା । ସାମନ୍ତ ତାହା ଗଣନାରେ ପ୍ରମାଣିତ କରି ସେହିଦିନ ସମସ୍ତ ମୁଖ୍ୟ ବ୍ୟକ୍ତିଙ୍କୁ ଦେଖାଇ ଦେଇଥିଲେ । ଏକଦା ଅପରାହ୍ଣରେ ସନ୍ଧ୍ୟା ପୂର୍ବରୁ ଶୁକ୍ଳଗ୍ରସ୍ତ ସୂର୍ଯ୍ୟଗ୍ରହଣ ଘଟିଥିଲା । ସାମନ୍ତ ସେ ବିଷୟ ମାନ୍ଦ୍ରାଜର ରଘୁନାଥ ଆଚାର୍ଯ୍ୟଙ୍କ ନିକଟକୁ ସାଧନ ସହିତ ଲେଖିଥିଲେ । ତାହା ନିର୍ଦ୍ଦିଷ୍ଟ ଦିବସରେ ଠିକ୍ ଘଟିଲା । ଅନ୍ୟ ଗୋଟିଏ ଚନ୍ଦ୍ରଗ୍ରହଣ ସାଧନ କରି ଆମେରିକାରେ ଦୃଶ୍ୟ ହେବା ବିଷୟ କେତେକ ବିଶିଷ୍ଟ ବ୍ୟକ୍ତିଙ୍କ ନିକଟକୁ ସାମନ୍ତ ଲେଖିଥିଲେ । ନିର୍ଦ୍ଦିଷ୍ଟ ସମୟରେ ତାହାହିଁ ଘଟିଥିଲା । କେବଳ କେତେକ ଲିପ୍ତା ମାତ୍ର ପ୍ରଭେଦ ଘଟିଲା ବୋଲି ଆମେରିକାର ଜ୍ୟୋତିର୍ବିତ୍‌ମାନେ କଟକରେ

ଯୋଗେଶ ବାବୁଙ୍କୁ ଜଣାଇଥିଲେ । ସେ ସାମନ୍ତଙ୍କୁ ତାହା ଜଣାଇବାରୁ ସାମନ୍ତ ଟିକିଏ ହସି ସାଧନା ସହିତ ଲେଖି ପଠାଇଲେ ଏବଂ କହିଲେ ସେମାନେ ଯନ୍ତ୍ରରେ ଦେଖୁଅଛନ୍ତି;ମାତ୍ର ମୁଁ କେବଳ ଚକ୍ଷୁରେ ଦେଖୁଅଛି । ଅତଏବ ସେମାନଙ୍କ ଦର୍ଶନରେ କିଛି ପ୍ରଭେଦ ଘଟିବା ସ୍ୱାଭାବିକ । ଏହି ଘଟନା ହେତୁରେ ସାମନ୍ତଙ୍କର ନାମ ପ୍ରଚାରିତ ହେଲା ।

ଭଗବତୀଚରଣ ସ୍ମୃତିତୀର୍ଥ ସିଦ୍ଧାନ୍ତ ଦର୍ପଣ ସମ୍ବନ୍ଧରେ ସଂସ୍କୃତ ଭାଷାରେ ୫ଗୋଟି ପ୍ରଶ୍ନ ପଚାରିଥିଲେ ଏବଂ ସଂସ୍କୃତ ଭାଷାରେ ତାହାର ଯଥାର୍ଥ ଉତ୍ତର ସାମନ୍ତଙ୍କଠାରୁ ପାଇ ପରମସନ୍ତୋଷ ଲାଭପୂର୍ବକ ସାମନ୍ତଙ୍କର ନାମ ପ୍ରଚାର କରିଥିଲେ । ସେହି ପ୍ରଶ୍ନୋତ୍ତର ଗୁଡ଼ିକ ଏହି—

ସିଦ୍ଧାନ୍ତ ଦର୍ପଣ ପର୍ଯ୍ୟାଲୋଚନା ପ୍ରବୃତ୍ତସ୍ୟ ଶ୍ରୀ ଭଗବତୀଚରଣ ସ୍ମୃତିତୀର୍ଥସ୍ୟ ପ୍ରଶ୍ନପଞ୍ଚକଂ ଯଥା—

୧ । ୬ ଷ୍ଠ ପ୍ରକାଶ ସମସ୍ତ ଶ୍ଳୋକେ ସନିଭ ସୂର୍ଯ୍ୟସ୍ଥାନାଦିତ୍ୟତ୍ର ସୂର୍ଯ୍ୟପଦଂ ସୂର୍ଯ୍ୟମଧ୍ୟପରଂ ଉତ ସ୍ଫୁଟ ସୂର୍ଯ୍ୟପରଂ ? ସ୍ଫୁଟପରତ୍ୱେ ଚ କିଂ ସ୍ଥୂଳ ସୂର୍ଯ୍ୟପରଂ ଅଥବା ସୂକ୍ଷ୍ମ ସୂର୍ଯ୍ୟପରଂ ? ତନ୍ନୈବାଷ୍ଟମ ଶ୍ଳୋକେ ସ୍ଫୁଟାର୍କପଦଂ ସୂକ୍ଷ୍ମ ସୂର୍ଯ୍ୟପରଂ ସ୍ଥୂଳ ସୂର୍ଯ୍ୟପରଂ ବା ?

୨ । ତନ୍ନୈବ ପ୍ରକାଶେ ୧୨ ଶ ଶ୍ଳୋକେ ସୂର୍ଯ୍ୟୋନତେତ୍ୟତ୍ର ସୂର୍ଯ୍ୟପଦଂ ସୂର୍ଯ୍ୟମଧ୍ୟପରଂ ସ୍ଫୁଟ ସୂର୍ଯ୍ୟପରଂ ବା ?

୩ । ତସ୍ୟ ପ୍ରକାଶେ ୫୮ ଶୋକେ କଥ୍ୟନ୍ତେ ଇତ୍ୟତ୍ର ବାରେ ପିଧୋଃ ସାଧିତା ଇତି କଥଂ ସଙ୍ଗଚ୍ଛତେ ?

ଯତଃ ଘସ୍ରାସ୍ୟ ବିଧୁବାରତ ଇତି ପୂର୍ବମୁକ୍ତଂ, ଅତସ୍ତତ୍ ପୂର୍ବ ଦିବସେ ରବିବାର ଏବ ଭବିତୁ ମର୍ହତି । ଅତଏବ ପରିଶିଷ୍ଟେ ୨୪୬ ପୃଷ୍ଠାୟାଂ ଜନ୍ମେ ଗତାବ୍ଦ ବାହର୍ଗଣଃ ୧୮୧୫୩୩ ଏବ ଲଖିତଃ । ଏଷ୍ୱଙ୍କେଷୁ

ସପ୍ତଭିକ୍ତେଷୁ ୩ ଅବଶିଷ୍ୟତେ, ଶୁକ୍ରବାରାଦ୍ ଗଣନୟା ରବିବାର ଏବ ଲଭ୍ୟତେ । ତସ୍ମାଦ୍‌ବାରେ ବିଧୋକ୍ତସ୍ତ ଭ୍ରାନ୍ତଂ ସଙ୍ଗତଂ ବା ତତ୍‌ଲେଖ୍ୟଂ ।

୪ । କର୍ଣ ପରିଶିଷ୍ଟେ ରବି ମଧ୍ୟ ପଦକାନାଂ କମ୍ଭେ ଖଣ୍ଡକ୍ଷେପଂ ୦।୭।୫୩।୫ ଲିଖିତମସ୍ତି । ଏତତ୍ କସ୍ମିନ୍ କର୍ମଣି ଉପଯୁଜ୍ୟତେ ? ତଥା ଚନ୍ଦ୍ର ମଧ୍ୟ ପଦକାନାଂ କମ୍ଭେ କେନ୍ଦ୍ର କ୍ଷେପରାଶ୍ୟାଦ । ୦।୧୩।୩।୫୩ ଇତ ଲିଖିତମସ୍ତି । ଏତଦପି କୁତ୍ରୋପଯୁଜ୍ୟତେ ? ତଚ୍ଚ କର୍ମ କସ୍ମିନ୍ ପ୍ରକାଶେ କତମ ଶ୍ଳୋକେ ଲିଖିତମସ୍ତି ତଲ୍ଲେଖ୍ୟମ୍ ।

୫ । ୮ମ ପ୍ରକାଶେ ୭ମ ଶ୍ଳୋକେ ଗ୍ରହାମୟୋ ରିତ୍ୟାଦ ସିଦ୍ଧେ ବିଧାବିତ କିଂ ପ୍ରଥମଚନ୍ଦ୍ର ପରଂ ଉତ ସୂକ୍ଷ୍ମଚନ୍ଦ୍ର ପରଂ ? ଏବଂ ତିଥ୍ୟନ୍ତପଦଂ କିଂ ସ୍ଥୂଳ ତିଥ୍ୟନ୍ତ ପରଂ ଅଥବା ସୂକ୍ଷ୍ମ ତିଥ୍ୟନ୍ତପରଂ ? ସ୍ଥୂଳଚନ୍ଦ୍ର ସ୍ଥୂଳ ତିଥ୍ୟନ୍ତ ପରତ୍ୱେ ସୂର୍ଯ୍ୟଗ୍ରହଣୋକ୍ତେନ ସୂକ୍ଷ୍ମେନ୍ଦୁ ସୂର୍ଯ୍ୟଜନିତ ସ୍ଫୁଟ ଦର୍ଶନାଶ ଇତ୍ୟାଦ ପଦେନ ବିରୁଦ୍ଧେତ । ତସ୍ମାଦ୍ ଯଥା ଗ୍ରହଣୟୋଃ ସମପର୍କକାଳ ସାଧନଂ କର୍ତ୍ତବ୍ୟଂ ତଦ୍‌ବିସ୍ପଷ୍ଟଂ ଲେଖ୍ୟମ୍ । ତଦ୍ରୋ ଦୟ୍ନାନ୍ତର ଭୁଜାନ୍ତରକେ ଇତ୍ୟାଦ୍ୟର୍ଦ୍ଧସ୍ୟ ବିସ୍ପଷ୍ଟଂ ବ୍ୟାଖ୍ୟାନଂ ଲେଖ୍ୟମ୍ । କିଞ୍ଚ ଚନ୍ଦ୍ରସ୍ୟ ସୂକ୍ଷ୍ମଗତ୍ୟା ସମପର୍କ ସାଧନଂ କଥଂ ବିହିତଂ ତଦପି ଲେଖ୍ୟମ୍ । ଅପରେଽପି ବହବଃ ସନ୍ଦେହା ବର୍ତ୍ତନ୍ତେ । ଏଷାମୁତ୍ତର ପ୍ରାପ୍ତ୍ୟନନ୍ତରଂ ଲେଖ୍ୟାଃ ।

ଠିକଣା:—କଲିକତା ବାଦୁଡ଼ବାଗାନ, ସେକେଣ୍ଡ ଲେନ୍ ଚତୁଷ୍ପାଠୀ ।

ପ୍ରତ୍ୟୁତ୍ତରମ୍

୧ । ଉ—ଗ୍ରନ୍ଥେଽସ୍ମିନ୍ କେବଲ ସୂର୍ଯ୍ୟ ଚନ୍ଦ୍ର ପଦପ୍ରୟୋଗେ ଯଥାଧିକାରଂ ମଧ୍ୟସ୍ଫୁଟ ସୂକ୍ଷ୍ମାଭିବ ଜ୍ଞେୟୌ । ବିଶେଷୋକ୍ତୌ ଅଧିକାର ବ୍ୟତ୍ୟୟେଽପି ମଧ୍ୟତା, ସ୍ଫୁଟତା, ସୂକ୍ଷ୍ମତା ଜ୍ଞେୟା । ଅତଃ ସନ୍ନିଭ ସୂର୍ଯ୍ୟ ସ୍ଥାନାପାତ୍ୟେନ ସୂର୍ଯ୍ୟପଦଂ ସୂକ୍ଷ୍ମସ୍ଫୁଟ ସୂର୍ଯ୍ୟପରଂ, ଉ ପଦଂ ରାଶିପରଂ,

ସ୍ଫୁଟାର୍କଚନ୍ଦ୍ରାନ୍ତରେ ଦୋର୍ଗୁଣଘ୍ନୀତ୍ୟନ ସୁକ୍ଷ୍ମପଞ୍ଜିକୋଦ୍ଦେଶାତ୍ ସୁକ୍ଷ୍ମାର୍କ ପ୍ରଥମଚନ୍ଦ୍ରାନ୍ତର ଭୁଜଜ୍ୟା ଗୁଣିତେଛ ବୋଧ୍ୟମ୍ । ଯତଃ ସୁକ୍ଷ୍ମରବେଃ ପୂର୍ବଂ ସିଦ୍ଧଃ, ଚନ୍ଦ୍ରସ୍ୟ ସୁକ୍ଷ୍ମତା ଭବତୀ ।

୨ । ଉ—ସୂର୍ଯ୍ୟୋଦିତ ଶ୍ଲୋଇ ବଧୂଇ ଶେଷେଭ୍ୟନ ରବ ମନ୍ଦୋଚ୍ଚାତ୍ ସୁକ୍ଷ୍ମରବେଃ ଶୋଧ୍ୟଃ । ପୁନଶ୍ଚନ୍ଦ୍ର ମନ୍ଦୋଚ୍ଚାତ୍ ସ ଏବ ଶୋଧ୍ୟଃ ଅବଶିଷ୍ଟ କେନ୍ଦ୍ରୟୋ ଶ୍ରେଜସ୍ୟଗ୍ମ ପଦାନୁକ୍ରମାଦ୍ ଗତ ଗମ୍ୟ ରାଶ୍ୟାଦକ ମଂଶୀକୃତ୍ୟ ତ୍ରିଂଶ ଦୂନ କଳାଂ ବିଧାୟ ତ୍ରିଂଶ ଦଧିକଲତ୍ୱେ ଅଂଶସ୍ଥାନେ ଏକଯୋଗଃ କାର୍ଯ୍ୟଃ । ଏବଂ ଦ୍ୱିଧାଂଶାନାଂ ପରସ୍ପର ଗୁଣନାଙ୍କସମୂହଂ ଖାଷ୍ଟେନ୍ଦୁଭି ର୍ବିଭଜ୍ୟ ଲବ୍ଧଂ ନବତ୍ୟା ଯୁକ୍ତଂ କାର୍ଯ୍ୟଂ । ଖାଷ୍ଟେନ୍ଦୁହୃତ ଶେଷସ୍ୟ ନବତ୍ୟୂନତ୍ୱେ ଲୋପଃ, ନବତ୍ୟଧିକତ୍ୱେ ଏକଯୋଗଃ କାର୍ଯ୍ୟଃ । ଏବଂ ପାକ୍ଷିକଫଳାୟୁ ହାରେ ଭବତ ।

୩ । ଉ—ଅସ୍ୟ ପ୍ରକାଶେ ୪ର୍ଥ ଶ୍ଲୋକେ କଥ୍ୟନ୍ତ ଇତ୍ୟାଦ ପଦ୍ୟସ୍ୟାର୍ଥଃ ମଧ ସୂର୍ଯ୍ୟାନୁକ୍ରମାଦହର୍ଗଣା ନୟନ କଷ୍ଟସ୍ୟାଦଦାନାଂ ପ୍ରାୟୁଶ୍ଚ କ୍ଷିପ୍ରସଂକ୍ରାନ୍ତି ଦୃଗ୍ଗାସ୍ୟ ଦନେ ମଧ୍ୟାର୍କସ୍ୟ ମେଷ ପ୍ରବେଶାତ୍ ସ୍ଫୁଟ ମେଷ ସଂକ୍ରାନ୍ତି ଦୃଗ୍ଗାସ୍ୟ ଦିନଂ ପଞ୍ଜିକା ମୁଖଂ ଭବତ । ଅତଃ କରଣାଦାଦୌ ମଙ୍ଗଳବାରାଦେରେକ ଦ୍ୱିତ୍ୟା ଦ୍ୟହର୍ଗଣ ଗଣନା ଭବତ । ତତ୍ପୂର୍ବଦିନେ ସୋମବାରେ ଲଙ୍କାର୍କୋଦୟ କାଳକ ସୂର୍ଯ୍ୟାଦି ରାଶ୍ୟଂ ଶାଦିକଂ କରଣା ଦଧ୍ରୁବତ୍ୱେ ନୋଚ୍ୟତେ । କଲ୍ୟାଦେ ର୍ଗ୍ରହଧ୍ରୁବାହର୍ଗଣଃ ୧୮୧୫୩୩୪ ଏଷୁ ବେଂଷୁ ସପ୍ତ ଭକ୍ତେଷୁ ୩ ଅବଶିଷ୍ୟତେ । ଶୁକ୍ରବାରାଦି ଗଣନୟା ରବିବାରେ ଗତଃ । ଲଙ୍କାର୍ଦ୍ଧରାତ୍ରତୋ ବାରପ୍ରବୃତ୍ତେଃ ସୂର୍ଯ୍ୟୋଦୟେ ସୋମବାରତଃ ପାଦଭୂକ୍ତବାତା । ଅତୋ ବାରେ ବଧୋ ସାଧୁତା ଇତ ସଙ୍ଗତଂ ଲକ୍ଷିତଂ, ନ ତୁ ଭ୍ରାନ୍ତଂ । ଭବଲକ୍ଷିତାଙ୍କ ପଂକ୍ତିଃ ୧୮୧୫୩୩ ଅନନ୍ତରଂ ୪ ଇତ୍ୟାଦି । ତଥାପି ୪ ଦତ୍ତ୍ୱା ସପ୍ତାବଶେଷଫଳଂ ୩

ଯଥାର୍ଥଂ ଲକ୍ଷିତଂ । ଅତ୍ର ବହୁବିଧାହର୍ଗଣା ନୟନ ପ୍ରକାରେଷୁ ପୂର୍ବାଚାର୍ଯ୍ୟ ମତ ମାଦାୟ ବର୍ଷମାସଦିନାନି ଗତାନି ନିର୍ଦ୍ଦିଶ୍ୟନ୍ତେ । ଯଥା ସିଦ୍ଧାନ୍ତ ଶିରୋମଣୌ;—ଯାତାଃ ଷଣ୍ମନବ ଇତ୍ୟାଦି ପିତାମହ ଦିନେସ୍ୟ ବର୍ତ୍ତିମାନେ ଗତା ଇତ୍ୟନ୍ତଂ ।

ଦେବୀଦାସଃ କଲ୍ୟାଦ୍ୟବ୍ଦ ଗଣ ଇତ୍ୟାଦି ଲଙ୍କାର୍ଦ୍ଧସୂର୍ଯ୍ୟେ ଇତ୍ୟନ୍ତଂ । ଅତ୍ର ତୃତୀୟ ପ୍ରକାଶେ ନବମ ଶ୍ଲୋକେ ବାସରଃ କୁଦିନାଖ୍ୟାତ୍ସେ ଗତା ଲଙ୍କାର୍ଦ୍ଧ ରାତ୍ରେ ଇତି । ଅତ ଏବ କଲ୍ୟାଦ୍ୟହର୍ଗଣାଦ୍ ଗତବାର ଆୟାତି । ବର୍ତ୍ତିମାନ ସୋମବାର ପ୍ରାତର୍ଗ୍ରହ ଧ୍ରୁବା ରଚିତା । ତଦ୍ଦୈନିକ ଦିନଗତି ଯୋଗାତ୍ ପଞ୍ଜିକା ପ୍ରଥମ ଦିନେ କୁଜବାରେ ପ୍ରାତର୍ମଧ୍ୟଗ୍ରହୋ ଭବତୀତି ଜ୍ଞେୟଂ ।

୪ । ଉ—ରବେଃ ଖଣ୍ଡକ୍ଷେପ ସ୍ଥାପନ ପ୍ରୟୋଜନଂ—ପ୍ରତିଦିନଂ ରବେର୍ମନ୍ଦୋଚ୍ଚଂ ସ୍ଥାପୟିତ୍ୱା ତସ୍ମାତ୍ ସ୍ୱଦେଶ ସିଦ୍ଧ ମଧ୍ୟ ରବି ଶୋଧନାତ୍ କେନ୍ଦ୍ରମାନୀୟ ବାହୁସଂଜ୍ଞାଦିକଂ କୃତ୍ୱା ସଂଜ୍ଞାଦିପଞ୍ଚକଂ ପ୍ରତ୍ୟେକମସ୍ମାଭିଃ ସଙ୍ଗୃଣ୍ୟ ପଦ୍ଧତଃ ଷଷ୍ଟି ଷଷ୍ଟି ଷଷ୍ଟି ନିଂଶଙ୍କରଣ ଫଳଂ ରାଶିସ୍ଥାନ ସଂଯୋଗାତ୍ ଖଣ୍ଡ ସଂଖ୍ୟାଂ ଗୃହୀତ୍ୱାଦିତ ପ୍ରତିଦିନ ପରିଶ୍ରମାତ୍ ମଧ୍ୟଗତି ମତ୍ର ୫୯।୮।୧୦।୧୦ ଅଷ୍ଟଘ୍ନଂ କୃତ୍ୱା ଅଂଶାଦି ୭।୫୩।୫।୨୧ ଏତେ ଭବତି । ଗତଦିନ ଖଣ୍ଡାଦିତ ଏତଚ୍ଛୋଧନା ଦିଷ୍ଟଦିନ ରବିମଲ ଖଣ୍ଡାଦିକଂ ସିଧ୍ୟତୀତି ପରିଶ୍ରମହ୍ରାସାର୍ଥଂ ଲୁଣ୍ଠନାଚାର୍ଯ୍ୟାଦିଭିଃ ପଦକାନ୍ତେ ଖଣ୍ଡକ୍ଷେପନାମ୍ନା ସ୍ଥାପିତଂ । କ୍ଷେପଶବ୍ଦଃ ସଙ୍କଳନେ ବ୍ୟବକଳନେ ଚ ସଙ୍ଗଚ୍ଛତେ । ଏବଂ ଚନ୍ଦ୍ର ମଧ୍ୟ ଗତ୍ୟଂଶାଦ୍ୟଂ ୧୩।୧୦।୩୪।୫୨।୪ ଏତସ୍ମାତ୍ ତନ୍ମନ୍ଦୋଚ୍ଚ ଗତି ୦।୬।୪୦।୫୪।୩୧ ଶୋଧନାତ୍ କେନ୍ଦ୍ରଗତିଃ ୧୩।୩।୫୩।୫୭ ଭବତି । ଏତଦେବ କେନ୍ଦ୍ରକ୍ଷେପ ନାମ୍ନା ଲକ୍ଷିତଂ ପ୍ରତିଦିନ ମନ୍ଦୋଚ୍ଚାନୟନ ମଧ୍ୟଚନ୍ଦ୍ର ଶୋଧନ ମନ୍ଦକେନ୍ଦ୍ରା ନୟନାୟା ସତଃ

କେନ୍ଦ୍ରକ୍ଷେପ ଶୋଧନ ମାନେଣ କେନ୍ଦ୍ରସ୍ୟ ସୁଲଭତ୍ୱା ଦତ୍ଥଂ ଲିଖିତଂ । ନ ତ୍ୱେତଦର୍ଥଂ କବତା କୃତା । ଉପପତ୍ତି ମତ୍ତଃ ସୁବୋଧତ୍ୱାତ୍ । ଚନ୍ଦ୍ରଗ୍ରହଣାଦୌ ସମପର୍ବା ନନ୍ୟୁନ ମନ୍ତୁଲ୍ୟତ ଭିନର୍ଣ୍ଣିତ୍ୟ ଲିଖିତଂ, ଅନ୍ୟୋପଲବ୍ଧିରେବ ବାସନା, ନ ତୁ ଯୁକ୍ତିରନ୍ୱେଷ୍ଟବ୍ୟା ।

୫ । ଉ—ସ୍ପକାମୟୋ ରିତ୍ୟାଦି ପଦ୍ୟ ପଞ୍ଚକସ୍ୟ ବିଶଦବ୍ୟାଖ୍ୟା ସଂକ୍ଷେପାତ୍ କ୍ରିୟତେ । ସ୍ପକାମୟୋଃ ପୂର୍ଣ୍ଣିମା ଦର୍ଶୟୋରବସାନେ ଉତ୍ପନ୍ନ-ଚନ୍ଦ୍ରମନ୍ଦୋଚ୍ଚାତ୍ତତ୍କାଳିକ ମଧ୍ୟଚନ୍ଦ୍ରଂ ଶୋଧୟିତ୍ୱା ମାନ୍ଦ୍ୟକର୍ମଣା ସ୍ଫୁଟୀକୃତ ପ୍ରଥମଚନ୍ଦ୍ର ଦର୍ଗଂଶଫଳ ମାନ ସଂସ୍କାରାତ୍ ସୂକ୍ଷ୍ମେଚ ତସ୍ମିନ୍ ସ୍ପକାୟାଂ ସୂକ୍ଷ୍ମ ତପନ ଚନ୍ଦ୍ରାର୍ଦ୍ଧାଦମାୟାଂ ସୂକ୍ଷ୍ମସ୍ଫୁଟ ଦିବାକରାନ୍ୟୂନେ ଽଧିକେଚ ସତି ଅନ୍ୟ ପର୍ବାନ୍ତେ ତୁଙ୍ଗାନ୍ତର ପାକ୍ଷିକଫଳାସମ୍ଭବାଦ୍ଧର୍ଗଂଶସଂସ୍କାରମାନେଣସୂକ୍ଷ୍ମଷ୍ଟନ୍ଦ୍ରୋ ଭବତ । ପର୍ବାନ୍ତକାଳ ସମୀକୃତୌ ଷଷ୍ଠପ୍ରକାଶ ପଞ୍ଚମଶ୍ଳୋକାନୁସାରଚନ୍ଦ୍ରସ୍ୟ ପ୍ରଥମ ଗତ୍ୟାଦେଃ ସୂକ୍ଷ୍ମ ଗତ୍ୟାଚ ବିମ୍ବକଳାବ୍ୟାସ ସ୍ଥିରପର୍ବ ସନ୍ଧି ଲୁପ୍ତାୟା ଚନ୍ଦ୍ରାର୍କ ମନ୍ଦକର୍ଣ୍ଣ ସୂର୍ଯ୍ୟଗ୍ରହଣଲମ୍ବନକାଳ ସଂସ୍କାରାଣାଂ ସିଦ୍ଧେଃ । ସ୍ପକାକ୍ଷ କାଳିକସୂକ୍ଷ୍ମ ଚନ୍ଦ୍ରସ୍ୟ ରବିଚନ୍ଦ୍ରାର୍ଦ୍ଧାଦ୍ ଯଦନ୍ତରଂ; ଦର୍ଶାନ୍ତକାଳିକ ସୂକ୍ଷ୍ମଚନ୍ଦ୍ରସ୍ୟ ସୂକ୍ଷ୍ମରବିତୋ ଯଦନ୍ତର ମାୟାତି ତପୃସ୍ପକଂ ବଧାୟ ପ୍ରଥମଚନ୍ଦ୍ରଗତି ସୂକ୍ଷ୍ମସୂର୍ଯ୍ୟ ଗତ୍ୟୋରନ୍ତର କାଳଭକ୍ତ୍ୱା ଲବ୍ଧପଳୈସ୍ତିଥ୍ୟନ୍ତ ଅତ୍ୟ ବିଯୁତ ଇତି । ଉକ୍ତ ସାଧନସିଦ୍ଧସୂକ୍ଷ୍ମବଧୌ ପୂର୍ଣ୍ଣିମାନ୍ତେ ତପନରାର୍ଦ୍ଧତ୍ ଦର୍ଶାନ୍ତେ ସୂକ୍ଷ୍ମଦିବା କରାନ୍ୟୂନେ ସତି ଫଳ ପଳୈସ୍ତିଥ୍ୟନ୍ତ ଅତଃ ଅଧିକେ ସତି ତୈର୍ବିଯୁତଃସନ୍ ସମପର୍ବୋକାଳୋଭବତ । ପୂର୍ଣ୍ଣିମାନ୍ତେତାତ୍କାଳିକଭଦଳଂ ଦର୍ଶାନ୍ତେ ତାତ୍କାଳିକ ସୂକ୍ଷ୍ମରବିଷ୍ଟ ଶଶୀତି ବେଦ୍ୟଃ । ଇତି ତୌ ଚନ୍ଦ୍ରାର୍କୌ ଭବେତାମ୍ । କିନ୍ତୁ କ୍ୱଚନ ପର୍ବଣି ତଦ୍ବିଶେଷୋ ଦୃଶ୍ୟତେ । ସ ଚ ସ୍ୱକଳ୍ପନୟା ଅତ୍ର ଉଚ୍ୟତେ । ଯଦି ସୂର୍ଯ୍ୟସ୍ୟ ମାନ୍ଦ୍ୟବାହୁଫଳଞ୍ଚ ତସ୍ୟ ଗତି ଫଳଂ ଚ ପୂର୍ବୋକ୍ତ ମୁଦୟାନ୍ତର ଫଳଞ୍ଚ; ଏତତ୍ତ୍ରୟଂ ଏକକାଳେ ଋଣାତ୍ମକଂ

ବା ଧନାତ୍ମକଂ ବା ସ୍ୟାତ୍ । ତତ୍ର ସମୟେ ସ୍ପଧାଂଶୋ ଗୁର୍ବିନ୍ୟାନ୍ତର ଫଳ ବିକଳାସ୍ତସ୍ୟ ଭୁଜାନ୍ତର ଫଳ ବିକଳାଃ ସୂର୍ଯ୍ୟସ୍ୟ ଗତଫଳ ବିଲାସ୍ତ ସଂଯୋଜ୍ୟ ସୀତାଂଶୁମାନ୍ଦ୍ୟ ବାହୁଫଳକଳାଭିଃ ସଂଗୁଣ୍ୟ ତତ୍ପିଣ୍ଡଂ ପୂର୍ଣ୍ଣିମାୟାଂ ଚନ୍ଦ୍ରବ୍ୟାସ ଯୋଜନୈଃ ୪୪୪, ଦର୍ଶେର ବିବ୍ୟାସେନ ୭୨୦୦୦ଭିଭକ୍ତାଃ କାର୍ଯ୍ୟାଃ । ତତୋଲବ୍ଧା ଢଲିପ୍ତା ଜ୍ଞେୟାଃ, ତାଃ ପୁନଃ ସ୍ପଷ୍ଟସୂର୍ଯ୍ୟେନ୍ଦ୍ର ଗତ୍ୟନ୍ତର କଳାଭକ୍ତ୍ୱା ଦଣ୍ଡାଦିଲବ୍ଧୈଃ ପୁର୍ବୋଦିତସୂର୍ଯ୍ୟ ଫଳସଂଯୁକ୍ତ୍ୱ ସମୟେ ସମପର୍ବ ସୁକ୍ତଂ । ଫଳସଂଯୁ ସ୍ତତ୍ତ୍ୱ ସମୟେ ସମପର୍ବନ୍ୟୂନଂ ସତ୍ଦୃକ୍‌ସମଂ ଭବତି । ପୂର୍ବୋକ୍ତ ସମପର୍ବ ଦୃକ୍ ସମପର୍ବଣୋରନ୍ତର କାଳାତ୍ । ସ୍ପଷ୍ଟଚନ୍ଦ୍ର ସୂର୍ଯ୍ୟଗତିଭ୍ୟାଂ ସ୍ଫୁଟାର୍କଚନ୍ଦ୍ରୟୋର୍ଯଥା ସ୍ୱଂ ସ୍ଫୁଟାନ୍ତରମାଶାଯୁ ଦୃକ୍‌ସମ ପର୍ବଣିନ୍ୟୂନେ ସମପର୍ବ କାଳକା ସ୍ଫୁଟରବୌ ଚନ୍ଦ୍ରେ ଚ ଋଣଂ କୁର୍ଯ୍ୟାତ୍ । ଦୃକ୍ ସମପର୍ବଣ୍ୟଧିକେ ଧନଂ କୁର୍ଯ୍ୟାଦିତି ତୟୋଃ ପୁନଃ ସମକଳା କୃତିର୍ଭବତି । ଅତ୍ର ଦୃକ୍‌ସମପର୍ବଣି ଚନ୍ଦ୍ରସ୍ୟୈବ ସ୍ପଷ୍ଟଗତ୍ୟା ସ୍ଫୁଟୀକରଣଂ ଗ୍ରହଣୋପଯୋଗୀ ଜ୍ଞାତବ୍ୟଂ । ସୂର୍ଯ୍ୟସ୍ୟ ନାସ୍ତି ପ୍ରୟୋଜନଂ, ସାହଚର୍ଯ୍ୟ ମର୍ଯ୍ୟାଦାର୍ଥଂ ଲିଖିତ ମଲମତି ବିସ୍ତରେଣ । ମମ ବୁଦ୍ଧ୍ୟା ଦୁରୁତ୍ତରଦାନ ବିଳମ୍ବଃ ସୋଢ଼ବ୍ୟଃ ।

ଏହି ପ୍ରଶ୍ନୋତ୍ତର ଏବଂ ବିଶାଖାପାଟଣା ଜିଲ୍ଲାନ୍ତର୍ଗତ ଜୟପୁର ଦୁର୍ଗସ୍ଥିତ ପଣ୍ଡିତ ଶ୍ରୀ ଚିନ୍ତାମଣି ରଥଙ୍କ ପ୍ରଶ୍ନର ଉତ୍ତର ଗୁଡ଼ିକ ସାମନ୍ତଙ୍କ ସ୍ୱହସ୍ତ ଲିଖିତ ତାଳପତ୍ରରୁ ଉଦ୍ଧୃତ ହୋଇଅଛି ।

ପଣ୍ଡିତ ଚିନ୍ତାମଣି ରଥଙ୍କ ପ୍ରଶ୍ନର ଉତ୍ତର—ତା ୭।୧୨।୧୮୯୯

ଶ୍ରୀ ଦୁର୍ଗାଚରଣାରବିନ୍ଦପରିଚର୍ଯ୍ୟାପରାୟଣେଷୁ ପଣ୍ଡିତ ମହାଶୟେଷୁ । ପ୍ରଣତି ପୂର୍ବକ ପ୍ରତ୍ୟୁତ୍ତରମିଦଂ—ବିଷୟୁଷ୍ଟ ଦେଶଭୁଷୟା । ଶ୍ରାବଣ ପୂର୍ଣ୍ଣିମା ନନ୍ଦାବିଦ୍ଧ ହେଲେ ବଳଭଦ୍ର ଜନ୍ମଦାରେ ତ୍ୟାଜ୍ୟ । "ରୌଦ୍ରଭ୍ୱାଦପରାହ୍ନେଽପି" ଏପରି କାଳହାପରେ ଲେଖିଥିବାରୁ ଚତୁର୍ଦ୍ଦଶୀ ରବିବାରେ ପ୍ରାପ୍ତ ହେଲା । ରକ୍ଷାବନ୍ଧନ ସୁତରାଂ ଅପରାହ୍ଣରେ ସେହିଦିନ

ପ୍ରାପ୍ତ ହେଲା । *ଉପାକର୍ମ ପୂର୍ଣ୍ଣିମାପର୍ଣ୍ଣକୁ ଉଦ୍ଧିବ୍ୟାପ୍ତିରେ କର୍ତ୍ତବ୍ୟ ହେଲୁ ପରଦିନ ସୋମବାରେ ପ୍ରାପ୍ତ । ଅମ୍ଭ ପାଞ୍ଜିରେ ଏପରି ଲେଖା ଅଛି । ସଦାଶିବ ଖଡ଼ିରତ୍ନ ଅମ୍ଭର ଛାତ୍ର ହୋଇ ପ୍ରିଣ୍ଟିଂକୋମ୍ପାନୀ ଯନ୍ତ୍ରାଳୟ ସେକ୍ରେଟେରୀ ଶ୍ରୀ ଗୌରୀଶଙ୍କର ବାବୁଙ୍କୁ ପାଞ୍ଜି ଦେଇ ଅମ୍ଭଙ୍କୁ ଷଡ଼ଗ୍ରସ୍ତ କରୁଅଛନ୍ତି । ଅମ୍ଭେ ମଧ୍ୟ ସେହିଠାରେ ପୂର୍ବରୁ ପାଞ୍ଜି ଦେଉଥିଲୁଁ । ସେକ୍ରେଟେରୀ ଦୁଇ ଛନ କଥାରେ ଅପମାନ କରିବାରୁ ତାହାଙ୍କୁ ଛାଡ଼ି ରାଧୁପ୍ରେସରେ ଦୁଇବର୍ଷ ହେଲା ଦେଉଅଛୁଁ । ଏପରି ଦ୍ୱିବିଧ ପାଞ୍ଜି ଚଳିବାରୁ କେହି କେହି ଅମ୍ଭ ପାଞ୍ଜି, କେହି କେହି ତାଙ୍କ ପାଞ୍ଜି, କେହି କେହି ଉଭୟ ପାଞ୍ଜି ରଖି କେତେ କେତେ ବିଷୟରେ ସନ୍ଦିଗ୍ଧ ହେଉଅଛନ୍ତି । ଏଥିରୁ ଖଡ଼ିରତ୍ନ ହସ୍ତ ଉଦ୍ଧାନଭଙ୍ଗ, ସ୍ମୃତି ଶାସ୍ତ୍ରେ ସୁଦ୍ଧା ଦେଖି ନାହାନ୍ତି । ପୂର୍ବରୁ ଅମ୍ଭ ପାଖେ ରହି ପର୍ବମାନ ଲେଖି ନଅନ୍ତି । ବର୍ତ୍ତମାନ ୬ବର୍ଷ ହେଲା ରାଜବଲ୍ଲଭ ମିଶ୍ରଙ୍କ ସହିତ ଅମ୍ଭେ ପାଞ୍ଜି ସାଧନ କରୁଅଛୁଁ । ସେହି ହେତୁ ସେ ଅମ୍ଭ ବିରୋଧରେ ପ୍ରବୃତ୍ତ ଅଛନ୍ତି । ବର୍ତ୍ତମାନରୁ ଅମ୍ଭର ଗ୍ରହାଚାରର ଦୋଷରୁ ନାନାରୋଗ, ଋଣଗ୍ରସ୍ତ ହୋଇ ଗତାଯାତ ବିଷୟେ ନିତାନ୍ତ ଅସମର୍ଥ ହେଉଅଛୁଁ । ଆପଣମାନଙ୍କର ଆଶୀର୍ବାଦରୁ ଅବା କେତେକାଳେ ସ୍ୱାସ୍ଥ୍ୟଲାଭ କରିବୁଁ । ପ୍ରକୃତ ମନ୍ତ୍ରସବିମଃ—

ଛଥି କ୍ଷୟ ହେଲେ କେବଳ ଶ୍ରୀକୃଷ୍ଣ ଜନ୍ମାଷ୍ଟମୀ ପୂର୍ବଦିନ ଛାଡ଼ି ଶୁଦ୍ଧି ନବମୀରେ ବୈଷ୍ଣବ ବ୍ରତ କରିବାକୁ କାଳ ସର୍ବସ୍ୱ ଲେଖିଥିବାରୁ ତେତିକି ମାତ୍ର ଉତ୍କଳ ଦେଶରେ ଚଳୁଅଛି । ତଦ୍‌ବ୍ୟତିରିକ୍ତ ରାମ, ନୃସିଂହ, ବାମନ, ରାଧା, ଚୈତନ୍ୟ ଜନ୍ମ ଛଥି କ୍ଷୟ ପଡ଼ିଲେ ବୈଷ୍ଣବମାନେ ପୂର୍ବଦିନ ଛଥିରେ ଉପବାସ କରୁଥିବାର ବ୍ୟବହାର ଚଳୁଅଛି । ଆପଣଙ୍କ ଲିଖିତ ପର ଛଥିବାକ୍ୟ କେଉଁ ସ୍ମୃତିରେ ଥିବ, ତାହା ଚଳୁନାହିଁ । ଜନ୍ମାଷ୍ଟମୀ ପୂର୍ବବିଦ୍ଧାଂ ସରୁକ୍ଷାଂ ସକଳାମପି, ବିହାୟ ନବମୀଂ ଶୁଦ୍ଧା ମୁପୋଷ୍ୟ ବ୍ରତ

ମାଚରେତ୍ । ଏହ ବାକ୍ୟ ମାନ ଗ୍ରାହ୍ୟ ହେଉଅଛି । ଅତଏବ ଦ୍ୱାଦଶୀ କ୍ଷୟ ଦିନ ସ୍ୱାତି ନୈଷ୍ଣବ ସଂଯୋଗେ ବାମନ ଜନ୍ମ କଲେ ।

ଅଜ୍ କାର୍ତ୍ତିକ ଦର୍ଶତିଥି ବର୍ଦ୍ଧମାନ ହେତୁ ଅମାବାସ୍ୟା ଶ୍ରାଦ୍ଧ ପରଦିନ ପ୍ରାପ୍ତ ହେଲା । ଅମାବାସ୍ୟା ବିଷୟ ବିଚାର ବଡ଼ କଠିନ ହେତୁ ଦର୍ଶ ଦୀପିକା ନାମକ କ୍ଷୁଦ୍ର ଗ୍ରନ୍ଥ ଖଣ୍ଡିଏ ମୁଁ ନିର୍ମିତ କରଅଛି । ତାହା ମୁଦ୍ରିତ ହୋଇ ପାରନାହିଁ । ସଂକ୍ଷିପ୍ତ କଥା ଏମନ୍ତ ଯେ ଅନ୍ୱାହାର୍ଯ୍ୟ ବିଷୟରେ ଚନ୍ଦ୍ରକ୍ଷୟ ବିଶିଷ୍ଟ ଦର୍ଶ, ଚନ୍ଦ୍ରକ୍ଷୟ ବିଶିଷ୍ଟ ଚତୁର୍ଦ୍ଦଶୀ, କେବଳ ଦର୍ଶ । ଏପରି ତିନି ପ୍ରକାର ତିଥି କ୍ରମରେ କ୍ଷୟ, ସାମ୍ୟ ବୃଦ୍ଧିରେ ଗ୍ରାହ୍ୟ ହୁଅଇ । ଆଷାଢ଼ ଓ ପୌଷରେ ଚନ୍ଦ୍ରକ୍ଷୟ ଚତୁର୍ଦ୍ଦଶୀ ଶେଷରେ ନୋହି ଦଶାରମ୍ଭାଦ ସମାପ୍ତ ହୁଅଇ । ଅଧିମାସ ଥିବା ବର୍ଷରେ ପୁଣି ସେ ଦୁଇ ଅମାବାସ୍ୟା ପର ହୁଅନ୍ତି । ମହାଳୟ ଶ୍ରାଦ୍ଧ ସାଗ୍ନିକମାନେ ଚନ୍ଦ୍ରକ୍ଷୟ ବିଶିଷ୍ଟ ଦର୍ଶରେ କରନ୍ତି । ନିରଗ୍ନିକମାନେ କେବଳ ଦର୍ଶରେ କରନ୍ତି । ତିଥିକ୍ଷୟ ତିଥିସାମ୍ୟରେ ଚନ୍ଦ୍ରକ୍ଷୟ ଗ୍ରାହ୍ୟ ହୁଅଇ । ତିଥି ବୃଦ୍ଧିଠାରେ ଚନ୍ଦ୍ରକ୍ଷୟାଦର ନାହିଁ । ସର୍ବସ୍ମୃତି ସମ୍ମତ ବାକ୍ୟ ଏହି ଯେ ବର୍ଦ୍ଧମାନାମମାବାସ୍ୟାଂ ଲକ୍ଷୟେ ଦପରେଽହନି । ଯାମାଂ ସ୍ତ୍ରୀ ନଧିକାନ୍ ବାପି ପିତୃଯଜ୍ଞ ସ୍ତତୋ ଭବେତ୍ । ପ୍ରତିପଦ୍ୟପି କୁର୍ବୀତ ଶ୍ରୀଦ୍ଧଂ ଶ୍ରାଦ୍ଧବଦୋବଦୁଃ । ସ୍ମୃତିସ୍ତୁ ସର୍ବନ ସାବକାଶା, ବର୍ଦ୍ଧମାନା ସ୍ମୃତିସ୍ତୁ ନିରବକାଶେତି ପରଦିନେ ବର୍ଦ୍ଧମାନଦର୍ଶସ୍ୟ ଯାମତ୍ରୟ-ମାନଲାଭେ ପୂର୍ବଦିନେ ଚନ୍ଦ୍ରକ୍ଷୟ ମନାଦୃତ୍ୟ ପରଦିନ ଏବ ଶ୍ରାଦ୍ଧଂ କାର୍ଯ୍ୟମିତି ସର୍ବସମ୍ମତଂ । ଏବଂ ଦର୍ଶରେ ସାମ୍ବତ୍ସରିକ, ନୈମିତ୍ତିକ ଶ୍ରାଦ୍ଧ ପଡ଼ିଲେ କାଳକାମ ବିଶ୍ୱେଦେବାର୍ଚ୍ଚନ ଛାଡ଼ି ପାର୍ବଣ ଶ୍ରାଦ୍ଧ ପୁରୂରବ ମାଦ୍ରବଶ ଧର ପୂଜା ଉକ୍ତଯୋଗେ ପୂର୍ବଦିନାପରାହ୍ଣ ବ୍ୟାପ୍ତ ଦର୍ଶ ତିଥି ଛାଡ଼ି ପରଦିନ ନିଯାମାନ୍ତ ବର୍ଦ୍ଧମାନ ଦର୍ଶବଳବତ୍ତର ହେବାରୁ ପିତୃଶ୍ରାଦ୍ଧ

ପରଦିନ କର୍ତ୍ତବ୍ୟ। ଅତଏବ ଶୁକ୍ରବାରେ ବର୍ତ୍ତମାନ ଦର୍ଶ ଦ ୨୫।୩୯ରେ ମାସିକ ଶ୍ରାଦ୍ଧ ସିଦ୍ଧ ହେଲା । ଅଉ ମହାଳୟ ବିଷୟରେ “ଯେୟଂ ପାପାନ୍ୱିତା ସ୍ୱଜନ୍ ଖ୍ୟାତା ପଞ୍ଚଦଶୀଭୃବ, ତସ୍ୟାଂ ଦଦ୍ୟାଲଚ୍ଛେଦତ୍ତଂ ପିତୃଣାଂ ବୈ ମହାଳୟେ” । ଏହି ସିଦ୍ଧାନ୍ତରୁ ଯଦି ପ୍ରଥମ ଦଣ୍ଡପ୍ରାପ୍ତ ପାପାନ୍ୱିତ ଦର୍ଶଦିନ ଚତୁର୍ଦ୍ଦଶୀ ଶ୍ରାଦ୍ଧ କାଳରେ ଥିଲେହେଁ ଦର୍ଶବିହିତ ମହାଳୟ ଶ୍ରାଦ୍ଧ କର୍ତ୍ତବ୍ୟ । ଯଥା ଦୁର୍ଗୋତ୍ସବ-ମୂଳାଷ୍ଟମୀ ସୂର୍ଯ୍ୟାସ୍ତବ୍ୟାପିନୀ ହେଲେ ପ୍ରାତଃକାଳେ ସପ୍ତମୀରେ ଅଷ୍ଟମୀ ତିଥି ସଂକଳ୍ପରେ ଉଲ୍ଲିଖିତ ହୁଅଇ । କାର୍ତ୍ତିକ କୃତ୍ୟରେ ସାୟାହ୍ନରେ ପ୍ରତିପତ୍ ପ୍ରବେଶ ହେଲେ ପ୍ରାତଃକାଳେ ଅଶ୍ୱିନ ପୂର୍ଣ୍ଣିମାରେ ପ୍ରତିପତ୍ ସଂକଳ୍ପ ହୁଅଇ । “ଅଭ୍ରବେଽପି ପ୍ରତିପଦଃ ସଂକଳ୍ପଃ ପ୍ରାତରିଷ୍ୟତେ” । ସେହିପରି ପାପାବଳ କାଳ ବ୍ୟାପ୍ତ ଦର୍ଶଦିନ ଚତୁର୍ଦ୍ଦଶୀ ଯୁକ୍ତାପରାହ୍ନରେ ଅମାବାସ୍ୟା ସଂକଳ୍ପିତ ହେବାର ଦୂଷିତ ନୋହେ । ଇତି ।

“ଅମାବସତି ଯତ୍ରାର୍କୌ ତତ୍ର ପାପଂ ପ୍ରଦାପୟେତ୍ ।
ତର୍ପଣଂ ପିଣ୍ଡଦାନଂ ଚ ଶ୍ରାଦ୍ଧଞ୍ଚୈ ବା ପରେଽହନି ।”

ଏହିବାକ୍ୟ ମାସିକ ଓ ନୈମିତ୍ତିକ ଶ୍ରାଦ୍ଧ ବିଷୟ, ମହାଳୟ ବିଷୟ ନୋହେ । ଅଲମତି ବିସ୍ତରେଣ । ଲ—ଶ୍ରୀ ଚନ୍ଦ୍ରଶେଖର ସିଂହ ସାମନ୍ତ ।

ପାଇ ବିଳାସ—ଏ ପ୍ରତ୍ୟୁତ୍ତର ପତ୍ର ବିଶାଖା ପାଟଣା କିମ୍ବା ଜୟପୁର ଗଡ଼ସ୍ଥିତ ଚିନ୍ତାମଣି ରଥଙ୍କ ଠାରେ ପ୍ରବେଶ ହେବ ।

ପୋ: ଜୟପୁର ଗଡ଼ ।

ପୁନଶ୍ଚ ବାପୁଦେବଶାସ୍ତ୍ରୀ ଓ ସୁଧାକର ଦ୍ୱିବେଦୀ ସିଦ୍ଧାନ୍ତଦର୍ପଣର ପ୍ରକାଶ ପରେ ବହୁ ପ୍ରଶ୍ନ କରି ପ୍ରକୃତ ଉତ୍ତର ପାଇଥିଲେ । ବାରମ୍ବାର ଗୃହ ଦାହରେ ସେ ସମସ୍ତ କାଗଜପତ୍ର ନଷ୍ଟ ହୋଇ ଯାଇଥିବାରୁ ପ୍ରକାଶିତ ହୋଇ ପାରିଲା ନାହିଁ । ପ୍ରାୟ ୪୦ ବର୍ଷ ପୂର୍ବରେ ଜୟପୁରରୁ ଭଗବାନ ମିଶ୍ର,

ନାମକ ଜଣେ ଜ୍ୟୋତିର୍ବିତ୍ ପଣ୍ଡିତ ପୁରୀ ଜଗନ୍ନାଥ ଦର୍ଶନରୁ ଫେରିବା ସମୟରେ ଖଣ୍ଡପଡ଼ା ଆସିଥିଲେ । ସେ ଖଣ୍ଡପଡ଼ାବାସୀ ଫକୀର ବ୍ରହ୍ମା ଓ ସାମନ୍ତଙ୍କର ବାଲ୍ୟସଖା ଲକ୍ଷ୍ମୀଧର ବକ୍ସି ପଟ୍ଟନାୟକଙ୍କ ସହ ମଣ୍ଡପରେ ବସି ସାମନ୍ତଙ୍କୁ କେତେକ ପ୍ରଶ୍ନ ପଚାରି ଆଶାତୀତ ଉତ୍ତର ପାଇଥିଲେ ଏବଂ ଅତ୍ୟନ୍ତ ସନ୍ତୁଷ୍ଟ ହୋଇ ପ୍ରତ୍ୟାଗମନପରେ ସ୍ୱୀୟ ପ୍ରଦେଶରେ ସାମନ୍ତଙ୍କର ନାମ ପ୍ରଚାର କରିଥିଲେ । ଏହିପରି ନାନାଭାବରେ ଚନ୍ଦ୍ରଶେଖରଙ୍କର ନାମ ଚତୁର୍ଦ୍ଦିଗରେ ପ୍ରଚାରିତ ହୋଇଥିଲା ।

**ମହେଶଚନ୍ଦ୍ର ନ୍ୟାୟରତ୍ନ**—୧୮୯୩ ସାଲରେ କଲିକତା ସଂସ୍କୃତ କଲେଜର ପ୍ରିନ୍‌ସିପାଲ ମହେଶଚନ୍ଦ୍ର ନ୍ୟାୟରତ୍ନ କଟକକୁ ଆସି ସାମନ୍ତଙ୍କୁ ଖଣ୍ଡପଡ଼ାରୁ ଡକାଇ ନେଇଥିଲେ । ସେ ମାନଯନ୍ତ୍ର ଦେଖିବାକୁ ଇଚ୍ଛାକରିବାରୁ ସାମନ୍ତ ମହୋଦୟ ତତ୍‌କ୍ଷଣାତ୍ ସେହିଠାରେ ତାଳପତ୍ରରେ ଉକ୍ତ ଯନ୍ତ୍ର ନିର୍ମାଣ କରି ଦେଖାଇ ଦେଇଥିଲେ । ଅଧ୍ୟାପକ ଯୋଗେଶବାବୁ ଓ ନ୍ୟାୟରତ୍ନ ମହାଶୟଙ୍କ ଉପସ୍ଥିତିରେ କଟକ ପ୍ରିଣ୍ଟିଂକୋମ୍ପାନୀ ଗୃହରେ ଗୋଟିଏ ସଭା ହୋଇଥିଲା । ସେଥିରେ ନ୍ୟାୟରତ୍ନ ମହାଶୟ ସଂସ୍କୃତ ଭାଷାରେ ଆଳାପ କରିବାକୁ ଆରମ୍ଭ କଲେ । ସେତେବେଳେ ସାମନ୍ତଙ୍କ ମୁଖରୁ ଅନର୍ଗଳ ସଂସ୍କୃତ ଭାଷା ବଜ୍ରସ୍ଫୋଟନବତ୍ ବହିର୍ଗତ ହେବାରୁ ସେ ପରମ ଆପ୍ୟାୟିତ ହୋଇଥିଲେ । ସାମନ୍ତଙ୍କର ଶାସ୍ତ୍ରଜ୍ଞାନ ବୁଝିବା ସକାଶ ସେ ଏବଂ ଯୋଗେଶବାବୁ ପ୍ରାୟ ୭।୮ ଦିନ କାଳ ବରାବର ସାମନ୍ତଙ୍କ ବସାକୁ ଆସୁଥିଲେ । ଜ୍ୟୋତିର୍ବିଷୟରେ ମଧ୍ୟ ସେ ଅନେକ ପ୍ରଶ୍ନ କରି ସମୁଚିତ ଉତ୍ତର ପାଇବାରୁ ଚମତ୍କୃତ ହୋଇଥିଲେ । କବିବର ରାଧାନାଥ ପ୍ରଥମେ ସାମନ୍ତଙ୍କୁ ନ୍ୟାୟରତ୍ନଙ୍କର ପରିଚୟ କରାଇ ଦେଇଥିଲେ । ତାହାଙ୍କ ମଧ୍ୟସ୍ଥତାରେ ନ୍ୟାୟରତ୍ନ ମଧ୍ୟ କେତେକ ପ୍ରଶ୍ନ ସାମନ୍ତଙ୍କ ନିକଟକୁ ପଠାଇଥିବାର ୧୮୯୫ ମସିହା ପତ୍ରରୁ ସୂଚିତ ହୁଏ । ପରିଶେଷରେ

ନ୍ୟାୟରତ୍ନ ସାମନ୍ତଙ୍କ ପାଣ୍ଡିତ୍ୟରେ ପରିତୃପ୍ତ ଓ ତପସ୍ୟା ଋଷିଚରିତ୍ର ଦର୍ଶନରେ ଭକ୍ତିଯୁକ୍ତ ହୋଇ ଫେରି ଯାଇଥିଲେ । କଥିତ ଅଛି ସେହି ନ୍ୟାୟରତ୍ନଙ୍କ ନିର୍ଦ୍ଦେଶରେ ସାମନ୍ତଙ୍କ ଉପାଧି ଲବ୍ଧ ଓ ତତ୍‌ସଙ୍ଗେ ପ୍ରଦତ୍ତ ପରିଚ୍ଛଦାଦି ସ୍ୱତନ୍ତ୍ର କଳ୍ପିତ ହୋଇଥିଲା । ତାହାଙ୍କୁ ପଟ୍ଟବସ୍ତ୍ର ଓ ଶୁକ୍ଳ ଚପ୍‌କନ୍ ପ୍ରଭୃତିର ସହିତ କୁସ୍ତୁର ପଙ୍ଖା ଓ ପୁଷ୍ପମାଳ, ଫୁଲ, ଚନ୍ଦନ ଆଦି ପ୍ରଦତ୍ତ ହୋଇଥିଲା ।

**ରାଜନିଗ୍ରହ**—ଖଣ୍ଡପଡ଼ାର ତଦାନୀନ୍ତନ ରାଜା ନଟବର ସିଂହଙ୍କର ବାଲ୍ୟକାଳରେ ଭ୍ରାତୃରାଜା କୃଷ୍ଣବିହାରୀ ସିଂହଙ୍କ ସଙ୍ଗେ ମନୋମାଳିନ୍ୟ ଘଟିବାରୁ ସେ ରାଜଭବନରୁ ଚାଲିଆସି ସାମନ୍ତଙ୍କ ଗୃହରେ ୫ବର୍ଷ କାଳ ଅବସ୍ଥାନ କରିଥିଲେ ଏବଂ ପୁତ୍ରବତ୍ ପ୍ରତିପାଳିତ ହୋଇଥିଲେ । କୃଷ୍ଣବିହାରୀଙ୍କର ପରଲୋକ ପ୍ରାପ୍ତି ପରେ ନଟବର ସିଂହ ସ୍ୱୟଂ ରାଜା ହୋଇ ଚନ୍ଦ୍ରଶେଖରଙ୍କୁ ନିର୍ଦ୍ଦିଷ୍ଟ ଖଞ୍ଜା ମଧ୍ୟରୁ ନ୍ୟୂନ ଥିବା ଭୂମିବୃତ୍ତି ଖଞ୍ଜି ଦେଇଥିଲେ । ପିତୃବ୍ୟ ସାମନ୍ତଙ୍କ ପ୍ରତି ତାହାଙ୍କର ସମ୍ମାନ ଓ ଭୟ ରହି ରାଜତ୍ୱର ଅର୍ଦ୍ଧେକ ସମୟ ଯାପିତ ହୋଇଥିଲା । ସେତେବେଳେ ଖଣ୍ଡପଡ଼ାର ପ୍ରଜାମାନେ ସୁଖରେ କାଳଯାପନ କରିଥିଲେ । କିନ୍ତୁ ରାଜତ୍ୱର ଦ୍ୱିତୀୟାର୍ଦ୍ଧରେ ସେହି ରାଜାଙ୍କର ପ୍ରତାପରେ ରାଜ୍ୟର ସମସ୍ତ ପ୍ରଜା କମ୍ପମାନ ହେଉଥିଲେ । ଧନ, ଧାନ୍ୟ ସଞ୍ଚୟ ନିମନ୍ତେ ସେ ପ୍ରଜାବର୍ଗଙ୍କର ରକ୍ତ ଶୋଷଣ କରିଥିଲେ । କାରଣ ସେ ରାଜାର ପ୍ରକୃତ ଲକ୍ଷଣ ବୁଝିପାରି ନ ଥିଲେ । ଶ୍ରୀମଦ୍ଭାଗବତର ୪ର୍ଥ ସ୍କନ୍ଧରେ ଲିଖିତ ଥିବା ରାଜ ପ୍ରଶଂସା ବିଷୟକ ଶ୍ଳୋକ ପାଠ କରିଥିଲେ ସେ ଏପରି କରି ନ ଥାନ୍ତେ । ଶ୍ଳୋକଟି ଏହି—

ଶ୍ରେୟଃ ପ୍ରଜାପାଳନମେବ ରାଜ୍ଞୋ ଯତ୍ ସାମ୍ପରାୟେ ସୁକୃତାତ୍ ଷଷ୍ଠମଂଶମ୍ ।
ହର୍ତ୍ତାନ୍ୟଥାଽହୃତ ପୁଣ୍ୟଃ ପ୍ରଜାନାମରକ୍ଷିତା କରହାରୋଽଘମତ୍ତି ।

ଅର୍ଥାତ୍ ପ୍ରଜାମାନଙ୍କର ପାଳନହିଁ ରାଜାଙ୍କର ଶ୍ରେୟସ୍କର ଅଟେ । ଯେହେତୁ ସେମାନଙ୍କୁ ଉତ୍ତମରୂପେ ପାଳନ କଲେ ରାଜା ପରଲୋକରେ ସେମାନଙ୍କର ସୁକୃତରୁ ଷଷ୍ଠଭାଗ ଗ୍ରହଣ କରନ୍ତି । ଅନ୍ୟ ପକ୍ଷରେ ଉତ୍ତମ ପାଳନ ନ କରି ସେ ପ୍ରଜାମାନଙ୍କଠାରୁ କର ଗ୍ରହଣ କଲେ ସେମାନଙ୍କ ପୁଣ୍ୟର ଭାଗ ଲାଭ କରିବା ଦୂରେ ଥାଉ ବରଂ ପାପରାଶି ଭୋଗ କରନ୍ତି ।

ମାନ ନିଟବର ହିନ୍ଦୁ ଧର୍ମରେ ପୂର୍ଣ୍ଣ ବିଶ୍ୱାସୀ ଥିଲେ ଏବଂ ପ୍ରଜା-ମାନଙ୍କର ଗୁଣ, ଚରିତ ପ୍ରତି ତାହାଙ୍କର ତୀକ୍ଷ୍ଣ ଦୃଷ୍ଟି ଥିଲା । ନଗର ଓ ଉପବନ ଅପୂର୍ବଶ୍ରୀ ଧାରଣ କରିଥିଲା । ନାନା ବୃକ୍ଷ ବହୁ ସଂଖ୍ୟାରେ ରୋପଣ କରାଇ ମର୍ତ୍ତ୍ୟରେ ନନ୍ଦନବନର ଶ୍ରୀ ସ୍ଥାପନ କରିଥିଲେ । ବର୍ତ୍ତମାନ ସେ ସମସ୍ତର ଅଧିକାଂଶ ନଷ୍ଟ ହୋଇଅଛି । ତଥାପି ରାଜତ୍ୱର ଶେଷାର୍ଦ୍ଧରେ ପ୍ରଜାପୀଡ଼ା ବୃଦ୍ଧିଲାଭ କରିବାରୁ ୯୬ ସାଲର ଦୁର୍ଭିକ୍ଷରେ ବହୁଲୋକ ରାଜ୍ୟ ପରିତ୍ୟାଗ କରି ଚାଲିଗଲେ । ଅପୁତ୍ରକମାନେ ପ୍ରାୟ କୃପଣ ହୋଇ ଧନ ସଞ୍ଚୟରେ ଆସକ୍ତ ଥିବାର ଦେଖାଯାଏ । ନିଟବର ସେହିପରି ଅପୁତ୍ରକ ଓ ଧନଲିପ୍ସୁ ଥିଲେ । ଧନରେ କୁବେର ଶ୍ରୀ ଲାଭ କରି ଥିଲେହେଁ ଦାନପର ନ ଥିଲେ । ତେଣୁ ସେ ସାମନ୍ତଙ୍କଠାରେ ଲକ୍ଷ୍ମୀ ସରସ୍ୱତୀ ବିବାଦର ଅଭିନୟ ଦେଖାଇ ଥିଲେ । ପରଶ୍ରୀକାତରତା ସେହି ରାଜାଙ୍କର ସ୍ୱାଭାବିକ ଦୋଷ ଥିଲା । ସ୍ୱୟଂ ବିଦ୍ୟାଶୂନ୍ୟ ଥିବାରୁ ସାମନ୍ତଙ୍କ ପାଣ୍ଡିତ୍ୟରେ ତାହାଙ୍କର ଈର୍ଷା ହେଉଥିଲା । ସୁତରାଂ ଶେଷକୁ ସାମନ୍ତଙ୍କର ପ୍ରତିଷ୍ଠା ବିଷବତ୍ ବୋଧ ହେଲା । ନିଟବର ସଂସ୍କୃତ କିମ୍ବା ଜ୍ୟୋତିଃଶାସ୍ତ୍ର ଜାଣି ନ ଥିଲେ । ମାନ ସଙ୍ଗୀତ ବିଦ୍ୟାରେ ତାହାଙ୍କର ପଟୁତା ଥିଲା । ବ୍ୟାଘ୍ର ବଧ କରିବାରେ ତାହାଙ୍କର ଅସାଧାରଣ ଦକ୍ଷତା ଥିଲା । ଆମ୍ର, ପନସ, ଚମ୍ପା, କେତକୀ ପ୍ରଭୃତି ବହୁ ବୃକ୍ଷ ରୋପଣ କରିଥିଲେ । ନିଜ ଗଡ଼ରେ ବାଇ ବଗିଚା ନାମକ ଯେଉଁ ଉଦ୍ୟାନର ବିସ୍ତାର କରିଥିଲେ ଏବଂ ନନ୍ଦନବନ

ନାମକ ପେଉଁ ଅମ୍ବ ବାଟିକାର ବର୍ଦ୍ଧନ କରିଥିଲେ ତାହା ଗଡ଼ଜାତରେ ଅତୁଳନୀୟ । ଖଣ୍ଡପଡ଼ାର କେତେକ ଲୋକ ସେହି ସମୟରେ ଚୁଗୁଲିପ୍ରିୟ ଥିବାରୁ ନାନା ବ୍ୟକ୍ତିଙ୍କ ସମ୍ବନ୍ଧରେ ରାଜାଙ୍କ ସମୀପରେ ଚୁଗୁଲି କରି ଜୀବିକା ନିର୍ବାହ କରୁଥିଲେ । କଥାରେ ଅଛି 'ରାଜାନୁଗତୋ ଧର୍ମଃ' ଅର୍ଥାତ୍ ରାଜାଙ୍କର ବ୍ୟବହାର ଯେପରି ପ୍ରଜାମାନଙ୍କର ବ୍ୟବହାର ମଧ୍ୟ ସେହିପରି ହୋଇଥାଏ । ରାଜା କର୍ଣ୍ଣମନ୍ତ୍ର ଶୁଣୁ ଥିବାର ଜାଣିଲେ ପ୍ରଜାମାନଙ୍କ ମଧ୍ୟରୁ କେହି କେହି କର୍ଣ୍ଣେଜପ ହୁଅନ୍ତି । ସାମନ୍ତ ମହୋଦୟ ସର୍ବଦା ସ୍ପଷ୍ଟବାଦୀ ଥିବାରୁ ଅନେକ ସମୟରେ ରାଜାଙ୍କୁ ସ୍ପଷ୍ଟ କଥା କହି ସତ୍ୟ ପ୍ରକାଶ କରୁଥିଲେ । ରାଜାଙ୍କ ମତର ପ୍ରତିକୂଳ ହେଲେ ମଧ୍ୟ ସେ ପ୍ରକୃତ କଥା କହିବାକୁ କୁଣ୍ଠିତ ହେଉ ନ ଥିଲେ । ତାହାଙ୍କ ଅନୁପସ୍ଥିତିରେ ରାଜାଙ୍କ ସମୀପରେ ସାମନ୍ତଙ୍କର ସେହି ଗୁଣକୁ କେହି କେହି ଦୋଷ ରୂପେ ବର୍ଣ୍ଣନ କରି ରାଜାଙ୍କ ଚିତ୍ତର ବିକାର ଜନ୍ମାଉଥିଲେ । ଏହିପରି ଘଟନାରେ ରାଜାଙ୍କର ବିଦ୍ୱେଷ-ବହ୍ନି କ୍ରମଶଃ ଭୂଦ୍ଧିଭୂତ ଥିଲା । ସାମନ୍ତଙ୍କର ଉପାଧି ଲାଭ ସମୟରେ ତାହା ପ୍ରଜ୍ୱଳିତ ହୋଇ ଉଠିଲା । ଯେତେବେଳେ ଉପାଧି ଗ୍ରହଣ ନିମନ୍ତେ ସାମନ୍ତଙ୍କ ଆଗମନରେ ବିଳମ୍ବ ହେଲା ଏବଂ ନଟବର ସିଂହ ସାମନ୍ତଙ୍କୁ ଛାଡ଼ି ନ ଦେବା ବିଷୟ କମିଶନର ସାହେବଙ୍କର କର୍ଣ୍ଣଗୋଚର ହେଲା ସେତେବେଳେ ରାଜାଙ୍କୁ ଧରି ଆଣିବା ସକାଶ ଓ୍ୱାରେଣ୍ଟ ବାହାରିବାର ହୁକୁମ ହେଲା । ସାମନ୍ତଙ୍କ ଯତ୍ନରେ ସେହି ଓ୍ୱାରେଣ୍ଟ ଆଦେଶ ସ୍ଥଗିତ ହୋଇଥିଲା । ମାତ୍ର ସେହି ଓ୍ୱାରେଣ୍ଟ ବିଷୟ କୌଣସି ଖଳଲୋକ ରାଜାଙ୍କୁ ପ୍ରକାରାନ୍ତରରେ ବୁଝାଇ ସାମନ୍ତଙ୍କ ପ୍ରତି ତାହାଙ୍କର କ୍ରୋଧ ଦ୍ୱିଗୁଣିତ କରାଇଥିଲା । ସୁତରାଂ ଶେଷ କେତେକ ବର୍ଷରେ ସାମନ୍ତଙ୍କ ପ୍ରତି ରାଜାଙ୍କର ଅତ୍ୟାଚାର ବଢ଼ିଥିଲା ।

ଚନ୍ଦ୍ରଶେଖରଙ୍କର ପୈତୃକ ଖଞ୍ଜାବୃତ୍ତି ଅଳ୍ପ ଥିଲା । ତାହା ପରିବାର-ବର୍ଗର ଭରଣ ପୋଷଣ ନିମିତ୍ତ ଅଣ୍ଟୁ ନ ଥିଲା । ବୃତ୍ତି ମଧ୍ୟରେ ଶାଳପଡ଼ା

ଓ ଦୁବପଲ୍ଲୀ ନାମରେ ସ୍ୱତନ୍ତ୍ର ଦୁଇଖଣ୍ଡି ଗ୍ରାମ ଅଛି ଏବଂ ଅନ୍ୟାନ୍ୟ ଗ୍ରାମରେ ସାମାନ୍ୟ କିଛି ଭୂମି ଅଛି । ବାର୍ଷିକ ଆୟ ପ୍ରାୟ ଟ ୫୦୦୯ ଏବଂ ୪ ସେରିଆ ଗଉଣୀରେ ଧାନ ପ୍ରାୟ ୬୦।୭୦ ଭରଣ ମିଳେ । ଏଥିରେ ବୃହତ୍ ପରିବାରର ବ୍ୟୟ ନିର୍ବାହ କ୍ଳେଶକର ହୁଏ । ମଞ୍ଜୁଷାରାଜ ଜଗନ୍ନାଥ ରାଜମଣି ଦେଓ ସ୍ୱେଚ୍ଛାପ୍ରବୃତ୍ତ ହୋଇ ବାର୍ଷିକ ଟ ୫୦୯ ମାତ୍ର ବୃତ୍ତି ଖଞ୍ଜିଥିଲେ । ପରବର୍ତ୍ତୀ ରାଜା ଶ୍ରୀନିବାସ ପୁଣି ସେଥିରୁ ଟ ୨୦୯ କର୍ତ୍ତନ କରି ଦେଇ ଅଛନ୍ତି ।

କେ. ଜି. ଗୁପ୍ତ କମିଶନରଙ୍କ ଅନୁରୋଧ କ୍ରମେ ସାମନ୍ତଙ୍କ ଦେହ-ତ୍ୟାଗର ଛମାସ ପୂର୍ବରୁ ଗଭର୍ଣ୍ଣମେଣ୍ଟରୁ ମାସିକ ଟ ୫୦୯ ବୃତ୍ତି ମଞ୍ଜୁର ହୋଇଥିଲା । ତାହା ପୁରୀ ଟ୍ରେଜେରୀରୁ ମିଳିବାର ମଞ୍ଜୁର ଥିବାରୁ ସାମନ୍ତ ଦେହତ୍ୟାଗ ପାଇଁ ପୁରୀକୁ ଯିବା ସମୟରେ ୩ ମାସର ବୃତ୍ତି ପାଇଥିଲେ । ତାହା ତଦୀୟ ଅନ୍ତ୍ୟେଷ୍ଟିକ୍ରିୟାରେ ବ୍ୟୟିତ ହୋଇଥିଲା । ସାମନ୍ତ ସର୍ବଦା ଈଶ୍ୱରପରାୟଣ ଥିବାରୁ ବିଷୟପ୍ରତି ଉଦାସୀନ ଥିଲେ । ତେଣୁ ଦାରିଦ୍ର୍ୟ ତାହାଙ୍କର ଚିର ସହଚର ଥିଲା ।

୧୯୦୧ କିମ୍ବା ୧୯୦୨ ସାଲରେ କେ. ଜି. ଗୁପ୍ତ ସାହେବ ଖଣ୍ଡପଡ଼ା ଗସ୍ତ ସମୟରେ ଦିନେ ସକାଳେ ଆସି ସାମନ୍ତଙ୍କ ଗୃହରେ ଆଳାପ କରିଥିଲେ । ମାଟିର ଅଠୁଘର ଦେଖି କୋଠା କରିବାକୁ ସାମନ୍ତଙ୍କୁ କହିଲେ । ସାମନ୍ତ ନିଜର ଦୁରବସ୍ଥା ଓ ରାଜାଙ୍କର ଶୁଭଦୃଷ୍ଟି ନ ଥିବା ବ୍ୟକ୍ତ କରିବାରୁ ସାହେବ କହିଲେ, "ମୁଁ ରାଜାଙ୍କ ସହିତ ଆପଣଙ୍କୁ ମିଳାଇ ଦେବି ।" ମାତ୍ର ସାମନ୍ତ ଉତ୍ତର ଦେଲେ, "ଆପଣଙ୍କର ସେପରି କରିବା ଉଚିତ ନୁହେ । ଆପଣ ହାକିମ ଥିବାରୁ ଆପଣଙ୍କ କଥା ରାଜା ଲଙ୍ଘି ପାରିବେ ନାହିଁ; ବାହାରେ ମିଳିଯିବେ । ମାତ୍ର ରାଜା ବୁଝି ପାରିବେ ଯେ ମୁଁ ଆପଣ ସମୀପରେ ଅଭିଯୋଗ କରିଅଛି । ତେଣୁ ଅନ୍ତଃକୋପ ବଢ଼ିବ । ବରଂ

ହୁତେ ଉପସ୍ଥିତ ହେବ ।" ଉଡ୍‌ହଁ ସାହେବ କହିଲେ, ଅଚ୍ଛା ମୁଁ ତାହା କୌଶଳରେ କରାଇ ଦେବ ।" କିନ୍ତୁ ସେପରି କରିବାକୁ ଗୁପ୍ତ ସାହେବ ଅଧିକ ଦିନ ଓଡ଼ିଶାରେ ରହି ପାରିଲେ ନାହିଁ । ପ୍ରଜାବନ୍ଧୁର ଆନ୍ଦୋଳନରେ ଏବଂ ସୁଦାମଚନ୍ଦ୍ର ନାୟକ ପ୍ରଭୃତି ବିଶିଷ୍ଟ ବ୍ୟକ୍ତିଙ୍କ ଅନୁରୋଧରେ କେ ଜି. ଗୁପ୍ତ ସରକାରଙ୍କୁ ସାମନ୍ତଙ୍କ ବୃତ୍ତି ସକାଶ ଲେଖିଥିଲେ । ତଦନୁସାରେ ମାସିକ ଟ ୫୦୲ ବୃତ୍ତି ମଞ୍ଜୁର ହୋଇଥିଲା । ଏ ସମ୍ବନ୍ଧରେ ଯେଉଁ ଇଂରାଜୀ ପତ୍ରଗୁଡ଼ିକ ସରକାରରୁ ଆସିଥିଲା ପାଠକମାନଙ୍କର ଅବଗତି ନିମନ୍ତେ ସେ ସବୁର ପ୍ରତିଲିପି ଏଠାରେ ଉଦ୍ଧୃତ ହେଲା । ତାହା ଏହି :—

No. 289 of 1903.
Government of India.
Finance and Commerce Department.
Pensions & gratuities.

To

*The Right Hon'ble Lord George Francis*
Hamilton, G. C. S. I.
His Majesty's Secretary of States for India.
Simla, the 17th September 1903.

My Lord,

We have the honour to forward, for yor Lordship's consideration, a letter from the Government of Bengal, No. 1257 T. G., Miscellaneous, dated the 13th July 1903. enclosing a copy of a letter from the Superintendent of the Tributary Mahals, Orissa,

in which he recommends the grant of a literary pension to Mahamahopadhyaya Chandra Sekhara Sinha Hari-Chandana Mahapatra Samanta, a resident of Khondpara a Tributary State of Orissa

2. Mahamahopadhyaya Chandra Sekhara is the author of a work entitled Sidhanta Darpan, a treatise on Hindu Astronomy which was published in 1899 This work contains a system of positional Astronomy founded upon observations made by the naked eye, or with primitive instruments designed by the author himself, and it has entailed incessant and systematic application for many years. His labour in the field of Hindu Astronomy have received generous recognition from many persons of distinction, and the Indian Press generally has honoured him with appreciative notices.

3. The Pandit is an old man of 68 years of age, in poor circumstances and extremely feeble health, whose whole life has been consistently devoted to the study of science. The Bengal Government consider that the circumstances are exceptional, the case being a curious and interesting one of devotion to learning for its own sake, and the Lieutenant-Governor belives that Government in honouring such a student would honour itself. That Government is also of opinion that, in view of

the high social position of the Mahamahopadhyaya, the grant to him of a pension of Rs. 50/- per mensem would be suitable.

4. We consider that the grant of a pension to such a student would be entirely in consonance with native feeling, and would find a precedent in the policy under which we support many indigenous Sanskrit schools where instruction is given in subjects hardly more profitable than the pursuit of astronomical methods without the aid of modern instruments. Moreover, we regard the Pandit's work as by no means devoid of interest, and even value, since it throws light upon the beginninqs of Astronomy,by showing what can be done by primitive instruments. We therefore strongly support the proposal made by the Bengal Government and beg that your Lordship's sanction may be accorded to it.

We have etc.
Sd/-Curzon.
Sd/-T. Raleigh.
Sd/-E. F. G. Law.
Sd/-E. R. Elles.
Sd/-A. T. Arundel.
Sd/-Denzil Ibbetson.

Financial. India Office, London
No. 197. 20th November 1903.

To His Excellency The Right Honourable
The Governor-General of India in Council

My Lord,

I have considered in council your letter No.289 ( Financial ), dated the 17th September last, in which you recommend the grant of a literary pension of Rs. 50/- per mensem to Mahamahopadhyaya Chandra Sekhara Sinha Hari Chandana Mahapatra Samanta of Khondpara, in recognition of his labours in the field of Hindu astronomy.

2. In view of the exceptional character of this case and of the recommendation of your Government. I sanction the grant of the pension proposed.

I have, etc.,
Sd/-St. John Brodrick.

ଏହି ବୃତ୍ତିକୁ ସ୍ଥାୟୀ କରିବା ନିମିତ୍ତ ସାମନ୍ତଙ୍କର ପୁତ୍ରମାନେ ଗୁପ୍ତ ସାହେବଙ୍କ ନିକଟରେ ଆପତ୍ତି କରିଥିଲେ । ସାହେବ ଉତ୍ତର ଦେଲେ, "ଆପଣମାନଙ୍କ ପିତା ଏକବର୍ଷ ଭୋଗକଲେ ତାହା ଦଖଲରେ ଆସିବ । ତତ୍ପରେ ମୁଁ ସରକାରଙ୍କୁ ଲେଖି ସ୍ଥାୟିତ୍ୱ ସମ୍ବନ୍ଧରେ ମଞ୍ଜୁର କରାଇପାରେଁ ।" ମାତ୍ର କାଳ ଆଉ ସହି ନ ପାରିବାରୁ ଅଧୁନା ସାମନ୍ତଙ୍କ ପୁତ୍ରମାନେ ଘୋର ଅର୍ଥାଭାବରେ କାଳାତିପାତ କରୁଅଛନ୍ତି ।

**ଉପାଧି ଲାଭ**—୧୮୯୩ ର ସେପ୍ଟେମ୍ବର ୨୮ ତାରିଖରେ କଟକରେ ଦରବାର ହେବା ଏବଂ ସେଥିରେ ସାମନ୍ତଙ୍କୁ ଉପାଧି ଓ ସନନ୍ଦ ମିଳିବାର ପ୍ରସ୍ତାବ ହୋଇ ସାମନ୍ତ ଉପସ୍ଥିତ ହେବା ନିମନ୍ତେ ପତ୍ର ପ୍ରେରିତ ହୋଇଥିଲା । ସାମନ୍ତ ସେ ବିଷୟ ନଟବର ସିଂହଙ୍କୁ କହିବାରୁ ସେ ଅଧିକ ଈର୍ଷାନ୍ୱିତ ହୋଇ କହିଲେ, "ଉପାଧିପ୍ରାପ୍ତି ଯାହା ହେବାର ତ ହେଲାଣି, ଆଜି ଗୋଟାଏ କଟକ ଯିବେ କିଣ !" ରାଜା ଏପରି ଅନିଚ୍ଛା ପ୍ରକାଶ କରନ୍ତେ ସାମନ୍ତ କଟକ ନ ଯିବାର ସ୍ଥିର ହେଲା । ଏ ସମ୍ବାଦ ହଠାତ୍ ପଣ୍ଡିତ ରାଜବଲ୍ଲଭ ମିଶ୍ର ପତ୍ରଦ୍ୱାରା ଗଡ଼ଜାତର ସୁପରିଣ୍ଟେଣ୍ଡେଣ୍ଟ ସାହେବଙ୍କୁ ଜଣାଇଦେଲେ । ସେହି ପତ୍ର ପାଇ ତଦାନୀନ୍ତନ କମିସନର ପ୍ରତାପୀ କୁକ୍ ସାହେବ କ୍ରୁଦ୍ଧ ହୋଇ ଖଣ୍ଡପଡ଼ା ରାଜାଙ୍କ ନାମରେ ୱାରେଣ୍ଟ ଜାରି କରିବାକୁ ହୁକୁମ ଦେଇଦେଲେ । ଏଣେ ରାଜା ସ୍ୱୀୟ ଦେୱାନ ବାବୁ ରାଜମଣି ଦାସ ଓ ସିରସ୍ତାଦାର ସାଧୁଚରଣ ମହାନ୍ତିଙ୍କର ପରାମର୍ଶରେ ସାମନ୍ତଙ୍କୁ ନ ପଠାଇଲେ ସରକାର ବିରକ୍ତ ହେବାର ବୁଝିପାରି ଦରବାରର ଦୁଇଦିନ ପୂର୍ବରୁ ହଠାତ୍ ସାମନ୍ତଙ୍କୁ କଟକ ଯିବାକୁ ଅନୁରୋଧ କଲେ । କଥିତ ଅଛି ମିଷ୍ଟର ଦାସ (କଟକର ମଧୁସୂଦନ ଦାସ)ଙ୍କ ପତ୍ରଦ୍ୱାରା ମଧ୍ୟ ରାଜା ଭୀତ ହୋଇ ସାମନ୍ତଙ୍କୁ ପଠାଇଦେଇଥିଲେ । ସାମନ୍ତ ନୌକାରେ ଯାତ୍ରା କରିବାର ସମସ୍ତ ବନ୍ଦୋବସ୍ତ କରାଗଲା । ସାମନ୍ତ ପଦ୍ମାବତୀ ଗ୍ରାମ-ଠାରୁ ନୌକାରେ ଯାତ୍ରାକରି ଦରବାର ଦିନ ପ୍ରାତଃ କାଳରେ ମହାନଦୀର ଫାସିଦିଆ ବରଠାରେ ଉପସ୍ଥିତ ହୋଇ ନୌକାରେହିଁ ଅବସ୍ଥାନ କଲେ । ତତ୍ପୂର୍ବ ପଞ୍ଜିକାରେ ଭୁଲରେ ସେଦିନ ସେପ୍ଟେମ୍ବର ତା ୨୮ ରିଖ ପରିବର୍ତ୍ତେ ତା ୨୭ ରିଖ ହୋଇଥିଲା । ତେଣୁ ସେ ନୌକାରେ ରହି ପରଦିନ ନଗରକୁ ଯିବାର ସ୍ଥିର କରୁଥିଲେ । ମଧ୍ୟାହ୍ନ ସମୟରେ ଧନ ଧନ ତୋପଧ୍ୱନି ଶ୍ରବଣକରି ସନ୍ଦେହରେ ପଡ଼ି ଭାବିଲେ, "ଆଜି କଣ ଦରବାର ହେଲା କି !" ଏହାପରେ ବ୍ୟଗ୍ରଚିତ୍ତ ହୋଇ ଅପରାହ୍ଣରେ ଦେଖିଲେ ଯେ

ଅଠଗଡ଼ ରାଜାଙ୍କର ଛନ୍ଦ ଓ କାହାଳୀ ସେହିବାଟେ ଯାଉଅଛି । ସେହିଲୋକ ମାନଙ୍କଠାରୁ ବୁଝିଲେ ଯେ "ଆଜି ଦରବାର ହୋଇଗଲା ଏବଂ ଖଣ୍ଡପଡ଼ାର ସାମନ୍ତ ଉପସ୍ଥିତ ନ ହେବାରୁ ସେଠା ରାଜାଙ୍କ ନାମରେ ଉଆରଣ୍ଟ ହୁକୁମ ହୋଇଗଲା ।" ଏ ସମ୍ବାଦରେ ସାମନ୍ତ ଅସ୍ଥିର ହୋଇ ଘୋଡ଼ା-ଗାଡ଼ିରେ ସତ୍ୱର କମିସନର ସାହେବଙ୍କ କୋଠି ଅଭିମୁଖରେ ଧାବମାନ ହେଲେ । ସାହେବ ବାରବାଟୀ କିଲ୍ଲା ମଧ୍ୟରେ ଥିବାର ଶୁଣିପାରି ହଠାତ୍ କିଲ୍ଲା ମଧ୍ୟରେ ପ୍ରବେଶ କଲେ । ଦରବାର ଭଙ୍ଗପରେ ସାହେବ ମେମ୍‌ଙ୍କ ସହିତ କ୍ଲବରେ ଥିଲେ । ଗାଡ଼ିର ବେଗ ଦେଖି ଚପରାଶି ନିଷେଧ କଲା ଏବଂ ବର୍ତ୍ତମାନ ସାକ୍ଷାତ ହେବାର ଅସମ୍ଭବ ବୋଲି କହିଲା । ମାତ୍ର ସାମନ୍ତ ତାହା ନ ମାନି ଉଚ୍ଚସ୍ୱରରେ କହିଲେ, "ଆମେ ଏତେ ଦୂରରୁ ଦେଖା କରିବାକୁ ଆସିଛୁ, ତେମେ ମନା କରୁଛ ।" ଏହା କହି ଦୂରରୁ ସାହେବଙ୍କୁ ଦେଖିବା ମାତ୍ରେ ଯାନରୁ ଅବତରଣ କରି ତାହାଙ୍କ ସମୀପକୁ ସରଳ ଭାବରେ ଧାବିତ ହେଲେ । ତାହାଙ୍କୁ ଦେଖି ସାହେବ କହିଲେ, "ଆପ୍ ଚନ୍ଦ୍ରଶେଖର ସିଂହ ।" "ହଁ ହଜୁର୍"। ଆଜି କାହିଁକି ଆସିଲ ନାହିଁ ବୋଲି ପଚାରିବାରୁ ସାମନ୍ତ ଉତ୍ତର ଦେଲେ, "ମୋ ପାଞ୍ଜିରେ ଅଙ୍ଗ ଲ୍ଲିଲରେ ତା ୨୭ ହୋଇଅଛି ।" ସାହେବ କିଛି ବୁଝି ନ ପାରି ଉର୍ଦ୍ଧ୍ୱକୁ ଗୃହିଁ ରହିଲେ । ତତ୍ପରେ ସାମନ୍ତ କହିଲେ, "ସାହେବ, ମୁଁ ଶୁଣୁଛି ଆମ ପ୍ରଭୁଙ୍କ ରାଜାଙ୍କ ନାମରେ ଉଆରଣ୍ଟ ବାହାରିଛି; ତେବେ ମୋତେ ଯେ ଉପାଧି ମିଳିବ, ପୋଷାକ ମିଳିବ; ସେ ମୋର ନଣ ହେବ; ଆପଣ ଆମ ରାଜାଙ୍କୁ କ୍ଷମା ଦିଅନ୍ତୁ ।" ଏହା ସବୁ ଶୁଣି ସାହେବ ତରତର ହୋଇ କହିଲେ, "ବର୍ତ୍ତମାନ ମୋହର ସମୟ ନାହିଁ, ଏହା ଖେଳ ସମୟ; କାଲି ସକାଳ ୮ଟା ବେଳେ ଆମ୍ଭ କୋଠିରେ ଦେଖା କରିବ ।" ଏହା କହି ସଲାମ ଦେଇ ଚାଲିଗଲେ । ସାମନ୍ତ ସେହି ସନ୍ଧ୍ୟାରେ ସୁଦାମଚରଣ ନାୟକଙ୍କ ଗୃହକୁ ଯାଇ ଦେଖିଲେ ଯେ ସେ ବଡ଼ ଚିନ୍ତିତ ହୋଇ ବସିଅଛନ୍ତି । ସୁଦାମ ବାବୁ ହଠାତ୍

ସାମନ୍ତଙ୍କୁ ଦେଖି ଦଣ୍ଡାୟମାନ ହୋଇ ପ୍ରଣାମପୂର୍ବକ କହିଲେ, "ଆପଣ ଆଜି କାହିଁକି ଆସିଲେ ? ରାଜାଙ୍କ ପ୍ରତି ଯେପରି ଭାବ ଜାତ ହୋଇଅଛି, ସେଥିରେ ଖଣ୍ଡପଡ଼ାର ସର୍ବନାଶ ହେବ ।" ତହୁଁ ସାମନ୍ତ କହିଲେ, "ମୁଁ ସେ ସବୁ ଶୁଣିଲିଣ, ସାହେବଙ୍କୁ ସବୁ କହି ଆସିଛି, କାଲି କୋଠିକି ଯିବାକୁ ସେ ମୋତେ କହିଅଛନ୍ତି ।" ଏ ସମ୍ବାଦ ପାଇ ସୁଦାମବାବୁ ଆଶ୍ୱସ୍ତ ହୋଇ କହିଲେ, "ସାଆନ୍ତ, ଏ କଥା ଆଜି କେହି କରିପାରି ନ ଥାନ୍ତେ, ମୁଁ ମଧ୍ୟ ପାରି ନ ଥାନ୍ତି । ଯଦି ସମୟ ହେଲେଣି ତେବେ ରକ୍ଷା ହେବାର ଆଶା ହେଉଅଛି ।" ତତ୍ପର ଦିନ ଯଥା ସମୟରେ ସାମନ୍ତଙ୍କୁ ନଦାକୂଳରୁ ଘେନି ସୁଦାମ ବାବୁ ସାହେବଙ୍କ କୋଠିରେ ଉପସ୍ଥିତ ହେଲେ । ସାହେବ ହିନ୍ଦିରେ ଏବଂ ସାମନ୍ତ ଓଡ଼ିଆରେ କହୁଥାନ୍ତି । କଥା ଶେଷରେ ସାମନ୍ତ କହିଲେ, "ମୋର ଉପାଧି ପ୍ରଭୃତି କିଛି ଦରକାର ନାହିଁ; ବୋଝିଆ ଉପରେ ଗଣ୍ଡିବ୍ର, ସେ ସବୁ ଫେରାଇ ନିଅନ୍ତୁ, ଆମ ରାଜାଙ୍କୁ କ୍ଷମା ଦିଅନ୍ତୁ ।" ଏହିପରି ବାରମ୍ବାର ଅନୁରୋଧ କରିବାକୁ ଲାଗିଲେ । ସାହେବ ନୀରବ ରହି କିଛି ଉତ୍ତର ଦେଉ ନ ଥାନ୍ତି । ଶେଷକୁ ଦାନ୍ତରେ କଲମ କାମୁଡ଼ି ଗୃହିଁଲେ ଏବଂ କହିଲେ, "ଅଚ୍ଛା କାଲି ଉଆରଣ୍ଟ ଯିବ, ଅଭି ବନ୍ଦ ହେଲା । ଆପଣଙ୍କ ସହିତ କାଲି ଦେଖାହେବ ।" ତହୁଁ ସାମନ୍ତ କହିଲେ, "ସାହେବ, କାଲି ଏତିକିବେଳେ ଆସିବି ତ ?" ସାହେବ ବୁଝି ନ ପାରି ସୁଦାମବାବୁଙ୍କ ଆଡ଼କୁ ଗୃହିଁବାରୁ ସେ ବୁଝାଇ ଦେଲେ । ସାହେବ ସଲାମ କରି "ହିଁ, ଏହି ସମୟ" ବୋଲି ପୁନଃ ପୁନଃ ଶିରଶ୍ଚାଳନ ପୂର୍ବକ ସମ୍ମତି ଦର୍ଶାଇଲେ । ତତ୍ପର ଦିନ ସୋମବାର ପ୍ରାତଃକାଳରେ ସାମନ୍ତ କନିଷ୍ଠପୁତ୍ରଙ୍କ ସହିତ ସାହେବଙ୍କ କୋଠିରେ ଉପସ୍ଥିତ ହେଲେ । ସାହେବ ବାହାରକୁ ଆସି ପଶ୍ଚିମ ଦିଗର ପର୍ବତଶ୍ରେଣୀ ଦେଖାଇ ସପ୍ତଶଯ୍ୟାପର୍ବତକୁ ଲକ୍ଷ୍ୟକରି କହିଲେ, "ଏ ପାହାଡ଼ର ଉଚ୍ଚତା କେତେ କହି ପାରିବେ ?" ତହୁଁ ସାମନ୍ତ ମାନଯନ୍ତ୍ର, ପାଞ୍ଜି ଓ

ଚଷମା ନିକଟରେ ନ ଥିବାରୁ ଇତସ୍ତତଃ ହେଲେ ଏବଂ ପୁତ୍ରଙ୍କଦ୍ୱାରା ବସାରୁ ଉପକରଣ ଅଣାଇ ଶଙ୍କୁ ପୋତି, ମାନଯନ୍ତ୍ର ସାହାଯ୍ୟରେ ଅବଲୋକନପୂର୍ବକ ଖଡ଼ୀରେ ଗଣନା କରି କହିଲେ, "ଏହା ୧୧୨୮ ହାତ, ୧୬ ଅଙ୍ଗୁଳ ହେଲା।" ସାହେବ ତାହା ଶୁଣି କୋଠି ଭିତରେ ପ୍ରବେଶ ପୂର୍ବକ ମାନଚିତ୍ର ଦେଖି ପ୍ରକୃତ ଉଚ୍ଚତା ଥିବାରୁ ସଲାମ, ସଲାମ କହିଲେ ଏବଂ ସେହି ମାନଯନ୍ତ୍ରକୁ ମୁଣ୍ଡରେ ଲଗାଇ ବାରମ୍ବାର ତାହାକୁ ଦେଖିବାକୁ ଲାଗିଲେ। ଉପରେ ଅତ୍ୟନ୍ତ ଆନନ୍ଦିତ ହୋଇ କହିଲେ, "ଯାଅ, ଉଆରଣ୍ଟ ବନ୍ଦ ହେଲା। ଆଗାମୀ ସୋମବାରଦିନ ଏହି କୋଠିରେ ଦରବାର ହୋଇ ସନନ୍ଦ ଦିଆଯିବ।" ତଦନୁସାରେ ସାମନ୍ତ ଅଜ ସାତଦିନ କଟକରେ ଅବସ୍ଥାନ କଲେ। ଦରବାର ଦିବସରେ ସୁଦାମ ବାବୁ ସାମନ୍ତଙ୍କୁ ସଙ୍ଗରେ ନେଇଗଲେ। ସେତେବେଳେ ସେଠାରେ କେତେକ ରାଜା ଓ ରାଜପୁତ୍ର ଉପସ୍ଥିତ ଥିଲେ। ସାମନ୍ତ ପୋଷାକ ପିନ୍ଧି ଆସି ନ ଥିବାରୁ ସୁଦାମ ବାବୁ ଗୋଟିଏ କୋଠରୀରେ ସ୍ୱୟଂ ପୋଷାକ ପିନ୍ଧାଇ ଦେଇଥିଲେ। ତଦନନ୍ତର ସାହେବ ଆସନ ନିକଟକୁ ଆସି ହସ୍ତ ଧରି ସାମନ୍ତଙ୍କୁ ସେଥିରେ ବସାଇ ଦେଲେ ଏବଂ ଅତର, ଚନ୍ଦନ, ଲଗାଇଦେଇ ଗୋଟିଏ ପୁଷ୍ପମାଳା ତାହାଙ୍କ ଗଳାରେ ଲମ୍ବାଇଦେଲେ ଏବଂ ପୁଷ୍ପବ୍ୟଞ୍ଜନରେ ଟିକିଏ ବାୟୁଦେଇ ତାହା ସାମନ୍ତଙ୍କ ହସ୍ତରେ ଧରାଇଦେଲେ। ଉପରେ ସନନ୍ଦ ପାଠପୂର୍ବକ ସାମନ୍ତଙ୍କୁ ତାହା ଅର୍ପଣ କଲେ। ଅନନ୍ତର ତୋପଧ୍ୱନିସହ ଦରବାର ଭଙ୍ଗହେଲା।

ଉଲ୍ଲିଖିତ ଘଟନାରୁ ସାମନ୍ତଙ୍କର ଉପାଧିଲବ୍ଧ ପ୍ରକୃତି ବୈଷୟିକ ସମ୍ମାନପ୍ରତି ଅନାସ୍ଥା ଏବଂ ଶତ୍ରୁନିଷ୍ଠବର୍ଗ ଟିହିକଙ୍କ ପ୍ରତି କ୍ଷମାଚରଣ ସ୍ପଷ୍ଟରୂପେ ପ୍ରମାଣିତ ହେଉଅଛି।

ସ ମନ୍ତଙ୍କୁ ଯେଉଁ ସନନ୍ଦ ମିଳିଥିଲା ତାହାର ପ୍ରତିଲିପି ଏହି:—

## SANANDA.

To

Pandit Chandrasekhar Singh Harichandan
Mahapatra of the Tributary State of
Khandparah in Orissa.

I hereby confer upon you the Title of Mahamahopadhyaya as a personal distinction

Sd/-Lansdowne,

Simla — Viceroy and Governor
The 3rd June 1893 — General of India.

ଆଜି କାଲି ଲୋକେ ଉପାଧି ଗ୍ରହଣ ସକାଶେ ବହୁ ବ୍ୟୟ ସ୍ୱୀକାରପୂର୍ବକ ନାନାପ୍ରକାର ଯୋଗାଡ଼ଯନ୍ତ୍ର କରୁଅଛନ୍ତି ଏବଂ ଶତ୍ରୁର ଅନିଷ୍ଟାଚରଣଲାଗି ନାନାବିଧ ଆୟୋଜନରେ ପ୍ରବୃତ୍ତ ହେଉଅଛନ୍ତି । ମାତ୍ର ସାମନ୍ତ ମହାତ୍ମା ଥିବାରୁ ବାହ୍ୟିକ ସମ୍ମାନପ୍ରତି ଏବଂ ଶତ୍ରୁର ଅସଦ୍ ବ୍ୟବହାରପ୍ରତି ଭ୍ରୂକ୍ଷେପ କରୁ ନ ଥିଲେ । ସେ କବିଙ୍କର ଉକ୍ତି ଯଥାର୍ଥ ରୂପେ ବୁଝିଥିଲେ—

ତୃଷ୍ଣାଂ ଛିନ୍ଧିଭଜକ୍ଷମାଂ ଜହିମଦଂ ପାପେ ରତିଂ ମା କୃଥାଃ
ସତ୍ୟଂ ବ୍ରୂହ୍ୟନୁଯାହି ସାଧୁପଦବୀଂ ସେବସ୍ୱ ବିଦ୍ୱଜ୍ଜନାନ୍
ମାନ୍ୟାନ୍ ମାନୟ ବିଦ୍ୱିଷୋଽପ୍ୟନୁନୟ ପ୍ରଖ୍ୟାପୟ ସ୍ୱାନ୍ ଗୁଣାନ୍ ।
କୀର୍ତ୍ତିଂ ପାଲୟ ଦୁଃଖିତେ କୁରୁଦୟା ମେତତ୍ ସତାଂ ଚେଷ୍ଟିତମ୍ ॥

ଅର୍ଥାତ୍ ଲୋଭ ତ୍ୟାଗ କର, କ୍ଷମା ଆଚରଣ କର, ଗର୍ବ ପରିତ୍ୟାଗ କର, ପାପରେ ମନ ଦିଅ ନାହିଁ, ସତ୍ୟ କହ, ସାଧୁମାର୍ଗର ଅନୁସରଣ କର, ବିଦ୍ୱାନ୍ ବ୍ୟକ୍ତିମାନଙ୍କୁ ସେବାକର,ମାନ୍ୟଲୋକମାନଙ୍କପ୍ରତି ସମ୍ମାନ ପ୍ରଦର୍ଶନ

କର, ଶତ୍ରୁମାନଙ୍କପ୍ରତି ମଧ୍ଯ ବିନୟ ପ୍ରକାଶ କର, ସ୍ତ୍ରୀୟ ଗୁଣ ବିଖ୍ୟାତ କରାଅ, କୀର୍ତ୍ତି ସ୍ଥାପନ କର, ଏବଂ ଦୀନ ପ୍ରତି ଦୟା କର ଏହାହିଁ ସାଧୁ-ଗଣର କାର୍ଯ୍ୟ ।

ଉପାଧି ଗ୍ରହଣର ପରବର୍ତ୍ତୀ ଦିନ ଚନ୍ଦ୍ରଶେଖରଙ୍କର ଅଭ୍ୟର୍ଥନା କମିଟି କଟକ ପ୍ରିଣ୍ଟିଂ କୋମ୍ପାନୀ ଗୃହରେ ଗୋଟିଏ ସଭା କରାଯାଇଥିଲା । ସେଠାରେ ତାଳଚେର, ଢେଙ୍କାନାଳ, ଆଠଗଡ଼, ବଡ଼ାମ୍ବା, ନରସିଂହପୁର ଏବଂ କନିକା ପ୍ରଭୃତି ରାଜ୍ୟର ବାଳକ ଓ ବୟସ୍ଥ ରାଜାମାନେ ଉପସ୍ଥିତ ଥିଲେ । ସୁଦାମ, ଯୋଗେଶ, ରାଧାନାଥ, ମଧୁସୂଦନ ରାଓ ଏବଂ ଗୌରୀଶଙ୍କର ପ୍ରଭୃତି ବାବୁମାନେ ଏବଂ ମାର୍କଣ୍ଡେୟ ତର୍କପଞ୍ଚାନନ ପ୍ରଭୃତି ପଣ୍ଡିତମାନେ ମଧ୍ଯ ଉପସ୍ଥିତ ଥିଲେ । ସମସ୍ତ ରାଜନ୍ୟ ସାମନ୍ତଙ୍କୁ ସମ୍ମାନ ପ୍ରଦର୍ଶନ କରି ପୁଷ୍ପମାଳାରେ ଭୂଷିତ କରିଥିଲେ ଏବଂ ଅଭିନନ୍ଦନ ପତ୍ରମାନ ପାଠପୂର୍ବକ ତାହାଙ୍କୁ ଅର୍ପଣ କରିଥିଲେ । ପଣ୍ଡିତ ମାର୍କଣ୍ଡେୟ ତର୍କପଞ୍ଚାନନ ଅନର୍ଗଳ ସଂସ୍କୃତ ଭାଷାରେ ସାମନ୍ତଙ୍କର ଭୂୟସୀ ପ୍ରଶଂସା କରିଥିଲେ ଏବଂ ତତ୍‌ସଙ୍ଗେ ଶ୍ରୀମତୀ ମହାରାଣୀ ଭିକ୍ଟୋରିଆଙ୍କର ଗୁଣଗ୍ରାହିତା ପ୍ରଭୃତି ଗୁଣର ମଧ୍ୟ ପ୍ରଶଂସା କରି ବକ୍ତୃତା କରିଥିଲେ ।

**ରାଧାନାଥ**—ଶିକ୍ଷିତ ସମାଜ ମଧ୍ୟରେ ସର୍ବପ୍ରଥମେ କବିବର ରାଧାନାଥ ସାମନ୍ତଙ୍କର ପରିଚୟ ପାଇଥିଲେ । ସେ ଯେତେବେଳେ ଶିକ୍ଷା ବିଭାଗର ଜଏଣ୍ଟ ଇନ୍‌ସ୍ପେକ୍ଟର ଥାଇ ଗସ୍ତରେ ଖଣ୍ଡପଡ଼ା ଯାଉଥିଲେ, ସେତେବେଳେ ପ୍ରତ୍ୟେକ ଦିନ ସାମନ୍ତଙ୍କ ଗୃହରେ ଉପସ୍ଥିତ ହୋଇ ଏବଂ ନାନା ବିଷୟରେ ଶାସ୍ତ୍ରାଳାପ କରି ସୁଖାନୁଭବ କରୁଥିଲେ । ସାମନ୍ତଙ୍କର ପାଣ୍ଡିତ୍ୟ ଦର୍ଶନରେ ରାଧାନାଥ ମୁଗ୍ଧ ହୋଇ ତାହାଙ୍କପ୍ରତି ଅତ୍ୟନ୍ତ ଭକ୍ତି କରୁଥିଲେ । ସାମନ୍ତ ଓ ରାଧାନାଥ ଉଭୟେ ଗୁଣଗ୍ରାହକ ଥିବାରୁ ପରସ୍ପର ମଧ୍ୟରେ ଘନିଷ୍ଠ ସୌହାର୍ଦ୍ଦ ସ୍ଥାପିତ ହୋଇଥିଲା । ସାମନ୍ତ ମଧ୍ଯ ରାଧାନାଥଙ୍କର

ବିନୟ ସୌଜନ୍ୟାଦି ସନ୍ଦର୍ଶନରେ ଅତ୍ୟନ୍ତ ପ୍ରୀତ ହୋଇଥିଲେ । ରାଧାନାଥ ଜଣେ ଅସାଧାରଣ ଗୁଣଗ୍ରାହକ ଥିଲେ । ତାଦୃଶ ଗୁଣଗ୍ରାହୀ ବ୍ୟକ୍ତି ଓଡ଼ିଶାରେ ଆଉ ନାହାନ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ । ରାଧାନାଥ ସାମନ୍ତଙ୍କର ଯେପରି ଭାବରେ ପରିଚୟ କରିଥିଲେ ଯୋଗେଶ ବାବୁଙ୍କ ଭିନ୍ନ ବୋଧହୁଏ ଅନ୍ୟ କେହି ତାହାଙ୍କୁ ସେପରି ଚିହ୍ନିପାରି ନ ଥିଲେ । ଦେଶରେ ସାମନ୍ତଙ୍କର ଆଦର ହେଉ ନ ଥିବା ଦେଖି ରାଧାନାଥ ଚିଠିପତ୍ରରେ ଓଡ଼ିଶା ଓ ବଙ୍ଗପ୍ରଦେଶର ଅନେକଙ୍କୁ ଜଣାଇ ଦେଇଥିଲେ । ସେହି ରାଧାନାଥହିଁ ମହେଶଚନ୍ଦ୍ର ନ୍ୟାୟରତ୍ନଙ୍କୁ ସାମନ୍ତଙ୍କ ସମ୍ବନ୍ଧରେ ଲେଖିଥିଲେ ଏବଂ ମହାମହୋପାଧ୍ୟାୟ ଉପାଧି ସକାଶ ପୂର୍ବରୁ ପ୍ରସ୍ତାବ କରାଇଥିଲେ । ସାମନ୍ତଙ୍କୁ କୌଣସି ସ୍ଥାନରେ ଦେଖିବା ମାତ୍ରେ ରାଧାନାଥ ରଙ୍କ ନିଧିପ୍ରାପ୍ତ ହେଲାପରି ବୋଧ କରୁଥିଲେ । ସେ ସାମନ୍ତଙ୍କଠାରୁ ଗ୍ରହନକ୍ଷତ୍ରାଦି ସମ୍ବନ୍ଧରେ ଅନେକ ବିଶିଷ୍ଟ କଥା ଶିକ୍ଷା କରିଥିଲେ । ସିଦ୍ଧାନ୍ତ ଦର୍ପଣର ମୁଦ୍ରଣବିଷୟରେ ସେ ବହୁ ଯତ୍ନ କରିଥିଲେ ।

ରାଧାନାଥ ସ୍ୱୟଂ ସୌଜନ୍ୟପ୍ରିୟ ଥିବାରୁ ବାମଣ୍ଡାରାଜ ସୁଢ଼ଳଦେବଙ୍କ ସୌଜନ୍ୟ ଶ୍ରବଣରେ ମୁଗ୍ଧ ହୋଇଥିଲେ । ଏକଦା ନିମନ୍ତ୍ରିତ ହୋଇ ରାଧାନାଥ ବାମଣ୍ଡାକୁ ଯାତ୍ରା କରିଥିଲେ । ତତ୍ରାସ୍ଥ ସଭାରେ ଉପସ୍ଥିତ ହୋଇ ତତ୍ରତ୍ୟ ତୋଷାମୋଦୀମାନଙ୍କର ବ୍ୟବହାର ଦେଖି ଏହି କବିତାଟି ଲେଖି ଦେଇଥିଲେ—

ଧିକ ତୋଷାମୋଦୀ ଧିକ ଧିକ ତୋର
ଘୃଣିତ ହୀନ ଜୀବନ,
ଧିକ ତୋ ଜୀବିକା ଧିକ ଧିକ ସେତୁ
ଜୀବିକା-ଜନିତ ଧନ । ୧ ।

ସତ୍ୟବାଦୀ ହୋଇ ଯଶେ ବଞ୍ଚିଥିଲେ
ଯୁଗେ ବଞ୍ଚିଥିଲ ପର,
ଖୋସାମୋଦୀ ହୋଇ ଅମର ହେଲେହେଁ
ମରଯିବା ସଙ୍ଗେ ସର । ୨ ।
ଲାଗୁଅଛୁ ସ୍ୱାଦୁ ଖୋସାମୋଦୀ ବାଣୀ
ସଢ଼ ସରପୁଲୀ ପରି,
ସାବଧାନ, ସେହୁ ପୁଲୀରେ ହୋଇଛୁ
କପଟ ଜହର ଭରି । ୩ ।
କହୁଅଛୁ ସ୍ତବେ ତୁମ୍ଭ କାର୍ଯ୍ୟ ଲାଗି
ସମର୍ପି ପାରିବି ପ୍ରାଣ,
ନିଜ କାର୍ଯ୍ୟ ହେତୁ ସମୟ ଆସିଲେ
ନାଶିପାରେ ତୁମ୍ଭ ପ୍ରାଣ । ୪ ।
ତୁମ୍ଭ ବିପକ୍ଷଙ୍କ ନିନ୍ଦା କଥା କହି
ମୋଦ ଜନ୍ମାଏ ଯେ ମନେ,
ଜାଣିଥାଅ ସେହୁ ନିଷ୍ଟୟ ଟି ସେହୁ
ନିନ୍ଦୁକ ବୃନ୍ଦରୁ ଜଣେ । ୫ ।

ରାଜା ଏହି କବିତା ଶ୍ରବଣରେ ଆନନ୍ଦିତ ହୋଇ ପୁରସ୍କାର ସ୍ୱରୂପ ରାଧାନାଥଙ୍କୁ ୫୦୦ ଟଙ୍କା ପ୍ରଦାନ କରିଥିଲେ । କବିବର ରାଧାନାଥ କିପରି ଗୁଣଗ୍ରାହକ ଥିଲେ ଓ କିପରିଭାବେ ଚନ୍ଦ୍ରଶେଖରଙ୍କୁ ଚିହ୍ନି ପାରିଥିଲେ, ତାହା ତଦୀୟ ଦରବାର କବିତାରୁ ସାମନ୍ତ ସମ୍ବନ୍ଧୀୟ ପଦ୍ୟଗୁଡ଼ିକ ପାଠକଲେ ସ୍ପଷ୍ଟ ଉପଲବ୍ଧ ହେବ । ସେହି ପଦ୍ୟଗୁଡ଼ିକ ପରିଶିଷ୍ଟ ଅଧ୍ୟାୟରେ ସନ୍ନିବିଷ୍ଟ ହେବ ।

ରାଧାନାଥଙ୍କର ଜ୍ୟେଷ୍ଠପୁତ୍ର ଶ୍ରୀଯୁକ୍ତ ଶଶିଭୂଷଣ ରାୟ ଉପଯୁକ୍ତ ପିତାଙ୍କର ଉପଯୁକ୍ତ ପୁତ୍ର ଅଟନ୍ତି । ସେ ମଧ୍ୟ ପିତୃବତ୍ ଗୁଣଜ୍ଞ ହୋଇ

ଅଚଳ । ଗୁଣଗ୍ରାହିତା ଶଶିଭୂଷଣଙ୍କର ସ୍ୱଭାବଗତ ଧର୍ମ ବୋଲି ବୋଧହୁଏ । ତାଦୃଶ ହୃଦୟବାନ୍ ବ୍ୟକ୍ତି ଅଧୁନାତନ ଯୁଗରେ ଅତ୍ୟନ୍ତ ବିରଳ ଲକ୍ଷିତ ହୁଅନ୍ତି । ଅରେ ଚନ୍ଦ୍ରଶେଖର ସପୁତ୍ର କଟକକୁ ଆଗମନ କରିଥିଲେ । ପୂର୍ବରୁ ବସା ନିର୍ଦ୍ଦିଷ୍ଟ ହୋଇ ନ ଥିବାରୁ କମିଶନର କୋଠି ସମ୍ମୁଖସ୍ଥ ବୃକ୍ଷ ମୂଳରେ ପିତାଙ୍କୁ ବସାଇ ଦେଇ ସାମନ୍ତଙ୍କ ପୁତ୍ର ବସା ଅନୁସନ୍ଧାନରେ ଯାଇଥିଲେ । ଏହି ସମୟରେ ଶଶିଭୂଷଣ ନଦୀରୁ ସ୍ନାନ ଶେଷକରି ଫେରୁଥିଲେ । ସେ ସାମନ୍ତଙ୍କୁ ଏପରି ଭାବରେ ବସିବାର ଦେଖି ସେହିପରି ଅର୍ଦ୍ଧବସ୍ତ୍ର ଦେହରେ ଦର୍ପଣୀ ରାଜଭବନର ପଶ୍ଚିମପାର୍ଶ୍ୱସ୍ଥ ଗୃହରେ ତାଙ୍କର ବାସସ୍ଥାନ ନିର୍ଦ୍ଦେଶ କରିଦେଲେ ଏବଂ ସାମନ୍ତଙ୍କପାଇଁ ପାକଦ୍ରବ୍ୟାଦିର ବନ୍ଦୋବସ୍ତ କରିସାରି ନିଜ ଗୃହକୁ ପ୍ରତ୍ୟାଗମନ କଲେ । ସାମନ୍ତ ମହୋଦୟ ଶଶିଭୂଷଣଙ୍କର ସୌଜନ୍ୟ ଦର୍ଶନରେ ଅତ୍ୟନ୍ତ ଆନନ୍ଦିତ ହୋଇ ସେ ବିଷୟ ପରେ ତତ୍ପିତା ରାଧାନାଥଙ୍କୁ ଜଣାଇଥିଲେ ।

**ଯୋଗେଶ ବାବୁ**—ଅଧ୍ୟାପକ ଯୋଗେଶ ବାବୁଙ୍କ ସହି ସାମନ୍ତଙ୍କର ପୂର୍ବରୁ ପରିଚୟ ହୋଇଥିଲା । ୧୮୯୪ ମସିହାରେ ସିଦ୍ଧାନ୍ତ ଦର୍ପଣ ଗ୍ରନ୍ଥର ମୁଦ୍ରଣ ପ୍ରସ୍ତାବ ହୁଅନ୍ତେ ଯୋଗେଶବାବୁ ସାମନ୍ତଙ୍କୁ ଖଣ୍ଡପଡ଼ାରୁ ଡକାଇ ଆଣିଲେ । ଗୃନ୍ଦାଚୌକ ଡାକଘର ସମ୍ମୁଖସ୍ଥ କୋଠାରେ ସାମନ୍ତ ଅବସ୍ଥାନ କରିଥିଲେ । ଯୋଗେଶବାବୁ ପ୍ରତ୍ୟହ ପୂର୍ବାହ୍ଣ ଓ ଅପରାହ୍ଣରେ ସେଠାକୁ ଆସୁଥିଲେ ଏବଂ ବହୁ ସମୟ ବସି ସିଦ୍ଧାନ୍ତ ଦର୍ପଣର ତତ୍ତ୍ୱମାନ ବୁଝୁଥିଲେ ଏବଂ ଉତ୍ତରୋତ୍ତର ପ୍ରଶ୍ନଦ୍ୱାରା ଅନୁଶୀଳନ କରୁଥିଲେ । ଯୋଗେଶ ବାବୁ ଏତଦୃଶ ଜ୍ଞାନପିପାସୁ ଥିଲେ ଯେ ଯେତିକି ପରିଶ୍ରମ କରି ନୂତନ ତଥ୍ୟ ଅବଗତ ହେଉଥିଲେ ସେତିକି ପ୍ରଫୁଲ୍ଲ ହୋଇ କ୍ଷୁଧା ତୃଷାଦି ସମୟ ପରିହାର ପୂର୍ବକ ଅଧ୍ୟବସାୟ କରୁଥିଲେ । ସାମନ୍ତ ସେ ସମୟକୁ ରୁଗ୍ଣ ଓ ଦୁର୍ବଳ ଥିଲେ ସୁଦ୍ଧା ତାହାଙ୍କ ସହିତ ପ୍ରଶ୍ନୋତ୍ତର ମୀମାଂସାରେ

ଲାଗିଥିଲେ । ଏହାପରେ ପ୍ରାୟ ଏକମାସ କାଳ ଆଲୋଚନା ହୋଇଥିଲା । ସେହି ସମୟରେ ଯୋଗେଶ ବାବୁ ନିଜ କାର୍ଯ୍ୟରୁ ଅବସର ନେଇ ଏହି ସବୁ କାର୍ଯ୍ୟ କରୁଥିଲେ ଏବଂ ସିଦ୍ଧାନ୍ତ ଦର୍ପଣର ମୁଖବନ୍ଧ ଇଂରାଜୀରେ ଲେଖିଥିଲେ । ସେ ସାମନ୍ତଙ୍କ ଯନ୍ତ୍ରାଦିରେ ସ୍ୱୟଂ ନିରୀକ୍ଷଣପୂର୍ବକ ସମସ୍ତ ଦେଖିଥିଲେ ଏବଂ ଦୂରବୀକ୍ଷଣ ଯନ୍ତ୍ର ଆଣି ସାମନ୍ତଙ୍କୁ ଦେଖାଇ ଥିଲେ । ସାମନ୍ତ ତାହା ଦେଖି କହିଲେ, "ଆପଣମାନେ ଏପରି ସୁନ୍ଦର ଯନ୍ତ୍ର ପାଇଛନ୍ତି, କାହିଁକି ସହଜ ନ ହେବ ? ତାହା ଥିଲେ ମଧ୍ୟ ଆପଣ ସ୍ୱୀୟ ଚକ୍ଷୁରେ ଦେଖି ଅନୁଭବ କରନ୍ତୁ ।"

ଘନଶ୍ୟାମ ମିଶ୍ର ନାମକ ଜନୈକ ପଣ୍ଡିତ ତାଳପତ୍ର ପୁସ୍ତକରୁ ଓଡ଼ିଆ ଅକ୍ଷରରେ କାଗଜରେ ଲେଖିଥିଲେ । ତତ୍ପରେ ବଙ୍ଗାକ୍ଷରରେ ଲିଖିତ ହୋଇ ଗ୍ରନ୍ଥ ମୁଦ୍ରିତ ହୋଇଥିଲା । ପ୍ରୁଫ୍ ଗୁଡ଼ିକ ଖଣ୍ଡପଡ଼ାକୁ ଆସୁଥିଲା ଏବଂ ପୁଣିଷ୍ଟ ବାଞ୍ଛାବଲ୍ଲଭ ମିଶ୍ର ପଢି ସାମନ୍ତଙ୍କୁ ଶୁଣାଇ ଦେଉଥିଲେ ଓ, ସାମନ୍ତ ସ୍ୱୟଂ ଦୋଷଗୁଡ଼ିକର ସଂଶୋଧନ କରି ଦେଉଥିଲେ । ଏପରି ଭାବରେ କଲିକତାରେ ୧୮୯୯ରେ ପୁସ୍ତକର ମୁଦ୍ରଣ କାର୍ଯ୍ୟ ସମାପ୍ତ ହେଲା । ସିଦ୍ଧାନ୍ତ ଦର୍ପଣ ମୁଦ୍ରିତ ହୋଇ ପ୍ରଚାରିତ ହେଲାରୁ ଚତୁର୍ଦ୍ଦିଗରେ ସାମନ୍ତଙ୍କର ଭୂୟସୀ ପ୍ରଶଂସା ହେଲା ଏବଂ ସ୍ୱଦେଶରୁ ଓ ବିଦେଶରୁ ଉଦ୍ଭାବିତ ନୂତନ ତତ୍ତ୍ୱ ସମ୍ବନ୍ଧରେ ବହୁ ପ୍ରଶ୍ନ ଆଗତ ହେଲା । ସାମନ୍ତ ଅନାୟାସରେ ସେହି ସବୁ ପ୍ରଶ୍ନର ସମାଧାନ କରି ଉତ୍ତର ପଠାଇ ଦେଉଥିଲେ । ପୁସ୍ତକର ଦୁର୍ବୋଧତା ଅନେକଙ୍କ ମନରେ ସନ୍ଦେହ ଜାତ କରାଇଥିଲା । ବାସ୍ତବରେ ସିଦ୍ଧାନ୍ତ ଦର୍ପଣର ଅନେକ ସ୍ଥଳ ବଡ଼ ଦୁର୍ବୋଧ ହୋଇଅଛି । ବିଷୟର ଜଟିଳତା ସେହି ଦୁର୍ବୋଧତାର କାରଣ ଭିନ୍ନ ଅନ୍ୟ କିଛି ନୁହେ । ଦୁଃଖର ବିଷୟ ଅଦ୍ୟାବଧି ସିଦ୍ଧାନ୍ତ ଦର୍ପଣର ଟୀକା କିମ୍ବା ଅନୁବାଦ ହୋଇପାରି ନାହିଁ । ସାମନ୍ତଙ୍କର ମଧ୍ୟମ

ପୁନ ଗଦାଧରଙ୍କଠାରୁ ଶେଷ ଥର ପୁରୀ ଅବସ୍ଥାନ ସମୟରେ ପିତାଙ୍କଠାରୁ ବୁଝି ବ୍ୟାଖ୍ୟା କରିବାକୁ ଆରମ୍ଭ କରିଥିଲେ । ମାତ୍ର ସାମନ୍ତ ୧୩ଦିନ ମାତ୍ର ପୁରୀରେ ଅବସ୍ଥାନ କରି ଦେହ ତ୍ୟାଗ କରିବାରୁ ଗଦାଧରଙ୍କର ଉକ୍ତ ମନୋରଥ ବ୍ୟର୍ଥ ହୋଇଗଲା ।

ସିଦ୍ଧାନ୍ତ ଦର୍ପଣ ଗ୍ରନ୍ଥର ମୁଦ୍ରଣରେ ପ୍ରାୟ ଟ ୧୨୫୦୯ ବ୍ୟୟିତ ହୋଇଥିଲା । ସୁଦାମ ବାବୁଙ୍କ ଯତ୍ନରେ ଆଠମଲ୍ଲିକର ବଦାନ୍ୟ ରାଜା ସ୍ୱର୍ଗୀୟ ମହେନ୍ଦ୍ର ଦେଓ ଟ ୧୦୦୦୯ ମନିଅର୍ଡର ଦ୍ୱାରା କଟକକୁ ପଠାଇ ଦେଇଥିଲେ । ଅବଶିଷ୍ଟ ଟଙ୍କା ସଙ୍କାଶ ଭାବନା ପଡ଼ିଥିଲା । ଏ ବିଷୟ ମୟୂରଭଞ୍ଜାଧୀଶ ରାମଚନ୍ଦ୍ର ଶୁଣିପାରି ପ୍ରଥମେ ତାହାଙ୍କୁ ଜଣାଇ ନ ଥିବାରୁ ଯୋଗେଶ ବାବୁଙ୍କ ଠାରେ ଦୁଃଖ ପ୍ରକାଶ କଲେ ଏବଂ ଅନ୍ତର ଟ ୩୦୦୯ ଅବଶ୍ୟକ ଥିବାର ଯୋଗେଶଙ୍କଠାରୁ ଅବଗତ ହୋଇ ଟ ୪୦୦୯ ପ୍ରଦାନ କଲେ । ସେଥିମଧ୍ୟରୁ ଟ ୨୫୦୯ ବ୍ୟୟିତ ହେବାରୁ ଅବଶିଷ୍ଟ ଟ ୧୫୦୯ ଯୋଗେଶ ବାବୁ ସାମନ୍ତଙ୍କ ନିକଟକୁ ପଠାଇ ଦେଇଥିଲେ । ଯୋଗେଶ ବାବୁ ସିଦ୍ଧାନ୍ତ ଦର୍ପଣର ଭୂମିକାରେ ଲେଖିଅଛନ୍ତି ଯେ ସୁଦାମ ବାବୁଙ୍କର ବିନା ଯତ୍ନରେ ଗ୍ରନ୍ଥ ମୁଦ୍ରିତ ହୋଇପାରି ନ ଥାନ୍ତା । ସେହି ଭୂମିକାରେ ମଧ୍ୟ ସାମନ୍ତଙ୍କର ଋଣମୁକ୍ତି ନିମିତ୍ତ ଯୋଗେଶ ବାବୁ ସାଧାରଣଙ୍କ ନିକଟରେ ନିବେଦନ କରିଅଛନ୍ତି ।

ରାଜା ରାମଚନ୍ଦ୍ର ସାମନ୍ତଙ୍କୁ ଥରେ ଦେଖିପାରି ନ ଥିବାରୁ ଦୁଃଖିତ ହୋଇଥିଲେ । ଉତ୍କଳ ସମ୍ମିଳନୀର ଦ୍ୱିତୀୟ ଅଧିବେଶନ ସମୟରେ ସାମନ୍ତଙ୍କର ଶୋକ ପ୍ରସ୍ତାବ ହେବାରୁ ରାମଚନ୍ଦ୍ର ତଦୀୟ କନିଷ୍ଠ ପୁତ୍ର ଚକ୍ରଧରଙ୍କୁ କହିଲେ—"ମୁଁ ବଡ଼ ହତଭାଗା; ଆପଣଙ୍କ ପିତାଙ୍କୁ ଥରେ ବାରିପଦାକୁ ନେଇ ପୂଜା କରିବାର ମାନସ ଥିଲା, ତାହା ଅପୂର୍ଣ୍ଣ ରହିଗଲା ।" ସାମନ୍ତଙ୍କର ଅନ୍ତ୍ୟେଷ୍ଟି କ୍ରିୟାରେ କେତେକ ଋଣ ଥିବାର ଚକ୍ରଧରଙ୍କଠାରୁ

ଶୁଣିପାରି ରାଜା ରାମଚନ୍ଦ୍ର ସ୍ୱତଃପ୍ରବୃତ୍ତ ହୋଇ କିଛି ସାଁ[redacted]ଥିଲେ ଏବଂ ଧରାକୋଟର ରାଜା ଓ ଅନ୍ୟାନ୍ୟ କେହି କେହି ମଧ୍ୟ କିଛି କିଛି ସାହାଯ୍ୟ ଦେଇଥିଲେ ।

ଯୋଗେଶ ବାବୁ ସାମନ୍ତଙ୍କର ପରମଭକ୍ତ ଥିଲେ । ସେ କଟକରୁ ନାନା ବିଷୟକ ପ୍ରଶ୍ନମାନ ଖଣ୍ଡପଡ଼ାକୁ ପଠାଇ ତହିଁର ଉତ୍ତର ଅଣାଉଥିଲେ । ଗ୍ରନ୍ଥମୁଦ୍ରଣାନନ୍ତର ସାମନ୍ତ ବର୍ଷେ ରାସ୍ତ ପ୍ରେସରେ ପଞ୍ଜିକା ଛପାଇବାକୁ କଟକ ଆସିବାରୁ ଚାରି ପାଞ୍ଚଦିନ ପରେ ଶୁଣିପାରି ଯୋଗେଶ ବାବୁ ଉପସ୍ଥିତ ହୋଇଥିଲେ ଏବଂ ସାମନ୍ତଙ୍କ ଆଗମନ ସମ୍ବାଦ ଯଥା-ସମୟରେ ପାଇ ନ ଥିବାରୁ ଦୁଃଖ ପ୍ରକାଶ କରିଥିଲେ । ସେ ନିଜର କେତେକ ସନ୍ଦେହ ମୋଚନ ନିମନ୍ତେ ଅଉ ଦୁଇ ସପ୍ତାହ କଟକରେ ଅବସ୍ଥାନ କରିବାକୁ ସାମନ୍ତଙ୍କୁ ପ୍ରାର୍ଥନା କଲେ । ସାମନ୍ତଙ୍କର ସ୍ୱୀକୃତ ହେବାରୁ ଯୋଗେଶ ବାବୁ ଧ ୧୫ ନର ଅବକାଶ ଗ୍ରହଣ କରି ସମସ୍ତ ବିଷୟ ବୁଝିନେଲେ । ପ୍ରତ୍ୟାଗମନ ସମୟରେ ଯୋଗେଶ ବାବୁ ଚନ୍ଦ୍ରଧରଙ୍କୁ ଟ ୩୦୯ ଦେଲେ । ମାତ୍ର ଚନ୍ଦ୍ରଧର ପିତାଙ୍କର ବିନାନୁମତିରେ ତାହା ଗ୍ରହଣ ନ କରି ପିତାଙ୍କୁ ଜଣାଇବାରୁ ସାମନ୍ତ ସେ ଟଙ୍କା ନେବାକୁ ଅସ୍ୱୀକୃତ ହେଲେ । ଯୋଗେଶ ବାବୁ କହିଲେ—"ଶିଷ୍ୟଙ୍କର ଗୁରୁଙ୍କୁ ସମ୍ମାନ ପ୍ରଦର୍ଶନ କରିବା ଉଚିତ ଓ ଏହା ଅତି ସାମାନ୍ୟ ହେଲେହେଁ ଆପଣ ଗ୍ରହଣ କରନ୍ତୁ ।" ଏହିପରି କହି ସେହି ଟଙ୍କାତକ ସାମନ୍ତଙ୍କର ପାଦ-ତଳେ ଦକ୍ଷିଣା ସ୍ୱରୂପ ରଖି ଦେବାରୁ ଅଗତ୍ୟା ତାହା ଗୃହୀତ ହେଲା ।

ଏକଦା ଥିବୋଟ୍ ସାହେବ ( ଜଣେ ପାଶ୍ଚାତ୍ୟ ପଣ୍ଡିତ ) ସାମନ୍ତଙ୍କୁ କେତେକ ପ୍ରଶ୍ନ କରିବା ଉଦ୍ଦେଶ୍ୟରେ କଟକ ଆସି ଯୋଗେଶ ବାବୁଙ୍କୁ ଜଣାଇବାରୁ ସେ ସାମନ୍ତଙ୍କୁ ଖଣ୍ଡପଡ଼ାରୁ ଡକାଇ ଆଣିଲେ । କଟକ ନର୍ମାଲ ସ୍କୁଲରେ ସାମନ୍ତ, ଥିବୋଟ୍ ସାହେବ, ଆଉ ଦୁଇଜଣ ସାହେବ,

ଯୋଗେଶ ବାବୁ ଓ ମଧୁସୂଦନଙ୍କୁ ଘେନି ଗୋଟିଏ କ୍ଷୁଦ୍ର ସଭା ହେଲା । ଥିବୋଟ୍ ସାହେବ ଇଂରାଜୀରେ ପ୍ରଶ୍ନ କରିବାରୁ ଯୋଗେଶ ବାବୁ ତାହା ସାମନ୍ତଙ୍କୁ ବୁଝାଇ ଦେଉଥାନ୍ତି ଏବଂ ସାମନ୍ତ ଯାହା ଉତ୍କଳଭାଷାରେ ଉତ୍ତର ଦିଅନ୍ତି, ତାହା ସାହେବଙ୍କୁ ଇଂରାଜୀରେ ବୁଝାଇ ଦେଉଥାନ୍ତି । ଏହିପରି ସାହେବଙ୍କର ଚତୁର୍ଦ୍ଦଶ ପ୍ରଶ୍ନର ଉତ୍ତର ସାମନ୍ତ ତତ୍କ୍ଷଣାତ୍ ଦେଇ ସାରି ସ୍ୱୟଂ ସାମନ୍ତ ସାହେବଙ୍କୁ ୪ ଗୋଟି ପ୍ରଶ୍ନ କଲେ । କିନ୍ତୁ ଗ୍ଲୋବ୍ ନ ଦେଖିଲେ ଉତ୍ତର ଦାନରେ ଅସମର୍ଥ ଥିବାର ସାହେବ ପ୍ରକାଶ କରିବାରୁ ସାମନ୍ତ କହିଲେ, "ଏହିଠାରେ ଗ୍ଲୋବ୍ ଦେଖି କାଲିକି କହନ୍ତୁ ।" ସାହେବ କହିଲେ, "ଗ୍ଲୋବ୍ ବିଲାତରେ ଅଛି ।" ତହିଁ ସାମନ୍ତ ଉତ୍ତର ଦେଲେ, "ମାନ୍ଦ୍ରାଜ କଲିକତାରେ ତ ଅଛି, ସାହେବ ମିଛ କହୁଛନ୍ତି କାହିଁକି ? ନ କହିବେ ତ ନାହିଁ ।" ଏହା ଶୁଣି ସାହେବ ଖୁସି ହୋଇ "ମହାମହୋପାଧ୍ୟାୟ, ସଲାମ ସଲାମ," କହି ଏପରି ଜୋରରେ କରମର୍ଦ୍ଦନ କରିଥିଲେ ଯେ ସାମନ୍ତଙ୍କର କୋମଳ ହସ୍ତରେ ପୀଡ଼ା ହୋଇଥିଲା ଏବଂ ସେ ଚାରିଦିନ ପର୍ଯ୍ୟନ୍ତ ସେଥିରେ ଅନ୍ନ-ଭୋଜନ କରିବା ସମୟରେ କଷ୍ଟ ଅନୁଭବ କରିଥିଲେ ।

ପ୍ରୋକ୍ତ ସମସ୍ତ ପ୍ରଶ୍ନ ପୃଥିବୀର ଭ୍ରମଣ ଓ ସ୍ଥିରତାସମ୍ବନ୍ଧରେ ଜିଜ୍ଞାସିତ ହୋଇଥିଲା । ସାହେବଙ୍କର ଚେଷ୍ଟା ଥିଲା ଯେ, ସାମନ୍ତ ପୃଥିବୀର ଗତି ସ୍ୱୀକାର କରନ୍ତୁ । ଥିବୋଟଙ୍କର ଜଣେ ସଙ୍ଗୀ ସାହେବ ସାମନ୍ତଙ୍କର କନିଷ୍ଠ ପୁତ୍ରଙ୍କୁ କହିଲେ, "ଆପଣ ପିତାଙ୍କୁ ବୁଝାଇ ଦିଅନ୍ତୁ, ସେ ପୃଥିବୀର ଭ୍ରମଣ ସମ୍ବନ୍ଧରେ ସରକାରଙ୍କ ସଙ୍ଗରେ ଏକମତ ହୁଅନ୍ତୁ; ସରକାରଙ୍କର ବିଶେଷ ପ୍ରିୟପାତ୍ର ହେବେ । ଅତଏବ ତାହାଙ୍କ ମତ ମିଳାଇ ଦିଅନ୍ତୁ ।" ସାମନ୍ତ ପୁତ୍ରମୁଖରୁ ଏହା ଶୁଣିବାମାତ୍ରେ କହିଲେ, "ମୁଁ ମିଳାଇ ଦେବି କଣ ? ମୁଁ ଯାହା ଲେଖିଛି ତାହା କେହି ଖଣ୍ଡନ କରିଦେଲେ ବଳେ

ମିଳିପିବ ।" ମତର ଐକ୍ୟ ହେଲେ ଗଭର୍ଣ୍ଣମେଣ୍ଟ ବିଶେଷ ସନ୍ତୁଷ୍ଟ ହେବାର ଅଶା ଦେବାରୁ ସାମନ୍ତ କହିଲେ, "ମୋହର ମତ ମୁଁ ପରିବର୍ତ୍ତନ କରି ପାରିବି ନାହିଁ, ଏଥିପାଇଁ ସରକାର ମୋତେ ହାଜତରେ ରଖନ୍ତୁ ବା ଜେହଲ ଦିଅନ୍ତୁ ।" ଯୋଗେଶ ବାବୁ ଏଥିରେ ଉତ୍ତରୋତ୍ତର ଯୁକ୍ତି କରିବାକୁ ବାରଣ କରିବାରୁ ସେ ପ୍ରସଙ୍ଗ ସେହିଠାରେ ସ୍ଥଗିତ ରହିଲା । ଏହିପରି ନାନାଭାବରେ ଯୋଗେଶ ବାବୁ ସାମନ୍ତଙ୍କୁ ଉତ୍ତମରୂପେ ଚିହ୍ନିପାରିଥିଲେ । ସେ ଯାହା ଯାହା ସାମନ୍ତଙ୍କଠାରୁ ଶିକ୍ଷା କରିଅଛନ୍ତି ଅନ୍ୟ କେହି ସେପରି ଶିକ୍ଷା କରିପାରି ନାହାନ୍ତି । ଯୋଗେଶ ବାବୁ ଯେଉଁ ସମସ୍ତ ବିଷୟ ସାମନ୍ତଙ୍କଠାରୁ ଅବଗତ ହୋଇଥିଲେ, ସେଥିର କେତେକାଂଶ ସିଦ୍ଧାନ୍ତଦର୍ପଣର ସ୍ୱୀୟ ମୁଖବନ୍ଧରେ ଉଲ୍ଲେଖ କରିଅଛନ୍ତି ।

**ସୂକ୍ଷ୍ମପଞ୍ଜିକାର ଆବଶ୍ୟକତା ଓ ପ୍ରଚାର**

ପ୍ରାଚୀନ ସିଦ୍ଧାନ୍ତରେ ଚନ୍ଦ୍ରବିଷୟକ ସ୍ଥୂଳ ଗଣନାରେ ତିଥ୍ୟାଦିର ଦ ୧୪ ଣ୍ଡର ପାର୍ଥକ୍ୟ ଘଟୁଥିବାରୁ ତଦନୁଯାୟୀ ଗଣିତ ପଞ୍ଜିକାରେ ଯଥାର୍ଥ ସମୟର ଉପଲବ୍ଧି ହୋଇପାରୁ ନାହିଁ । ଏଣୁ ଚନ୍ଦ୍ରଶେଖର ସୂକ୍ଷ୍ମପଞ୍ଜିକାର ପ୍ରଚାର ନିମିତ୍ତ ପ୍ରୟାସୀ ହେଲେ ସୂକ୍ଷ୍ମପଞ୍ଜିକାର ଆବଶ୍ୟକତା ସିଦ୍ଧାନ୍ତ ଦର୍ପଣର ନିମ୍ନୋଦ୍ଧୃତ ଶ୍ଳୋକମାନଙ୍କରୁ ସ୍ପଷ୍ଟ ଉପଲବ୍ଧ ହେବ ।

ବୃଦ୍ଧୌ ପଞ୍ଚତିଥେଃ କ୍ଷୟେ ରସମିତା ନାଡ୍ୟଃ ପୁରାଣୈର୍ମତା
ନିତ୍ୟଂ ଯତ୍ପରମାସ୍ତତୋ ବ୍ୟବହୃତୌ ସ୍ଥୂଳେଷ୍ୟତେ ପଞ୍ଜିକା ।
ପ୍ରତ୍ୟକ୍ଷାନୁଭବଂ ନ ଲମ୍ଭତ ବଚ୍ଚେ ଯୁକ୍ତ ର୍ଯତସ୍ତନ୍ମୟା
ତତ୍ସାକ୍ଷାତ୍କରଣାୟ କାମ୍ୟବଧସ୍ୱେ ସୂକ୍ଷ୍ମାପରାତନ୍ୟତେ ॥

ଷଷ୍ଠପ୍ରକାଶର ଦ୍ୱିତୀୟ ଶ୍ଳୋକ ।

ଅର୍ଥାତ୍ ପୂର୍ବାଚାର୍ଯ୍ୟମାନଙ୍କର ସର୍ବଦା ତିଥିର ୫ଦଣ୍ଡ ବୃଦ୍ଧି ବିଷୟରେ ଏବଂ ୬ଦଣ୍ଡ କ୍ଷୟ ବିଷୟରେ ସମ୍ମତି ଥିବାରୁ ବ୍ୟବହାର ନିମିତ୍ତ ସ୍ଥୂଳପଞ୍ଜିକା ଗ୍ରହଣ କରାଯାଏ । ମାତ୍ର ମୁଁ ପ୍ରତ୍ୟକ୍ଷରେ ତହିଁର ଭ୍ରମ ଅନୁଭବ କରିଥିବାରୁ ଏବଂ ବାକ୍ୟମାତ୍ର ପ୍ରମାଣ ଅପେକ୍ଷା ପ୍ରତ୍ୟକ୍ଷାନୁଭବରେ ବଳବତ୍ତା ଥିବାରୁ ଶ୍ରାଦ୍ଧାଦି କାମ୍ୟକର୍ମମାନଙ୍କର ଅନୁଷ୍ଠାନ ସକାଶେ ଅନ୍ୟ ଏକ ସୂକ୍ଷ୍ମପଞ୍ଜିକା ପ୍ରକାଶ କରୁଅଛି । କାରଣ ତାଦୃଶ କ୍ଷୟବୃଦ୍ଧି ଅନୁସାରେ କାମ୍ୟକର୍ମ କରିବା ଉଚିତ ନୁହେ ।

ଉଦ୍‌ବାହୋପନୟ ପ୍ରୟାଣନିଲୟ ପ୍ରବେଶାଦିଷୁ ଦ୍ୱାଙ୍‌ମତ —
ରମ୍ଭେଷ୍ୱିଷ୍ଟଫଳାପ୍ତୟେ ବିଲମୟା ସୂକ୍ଷ୍ମୋଚ୍ୟତେ ପଞ୍ଜିକା ।
ଦୃକ୍‌ସିଦ୍ଧାପମମ ଗର୍ଣ ଗ୍ରହଣଯୁଗ୍‌ଯୋଗୋଦୟ ସ୍ତଂ ମନ୍ତ୍ରା—
ପାତାଦ୍ୟଂ ତିଥିଭାଦି କାର୍ଯ୍ୟମଖିଳ୍ୟା ସୂକ୍ଷ୍ମାର୍କଚନ୍ଦ୍ରୋଦ୍ଭବମ୍ ॥

ଷଷ୍ଠ ପ୍ରକାଶ, ପ୍ରଥମ ଶ୍ଳୋକ ।

ଅର୍ଥାତ୍ ବିବାହ, ଉପନୟନ, ଶୁଭଯାତ୍ରା, ଗୃହପ୍ରତିଷ୍ଠା ଓ ଯଜ୍ଞାଦି ମହତ୍‌କାର୍ଯ୍ୟରେ ଶୀଘ୍ର ବାଞ୍ଛିତଫଳ ପ୍ରାପ୍ତି ନିମନ୍ତେ ମୁଁ ସୂକ୍ଷ୍ମପଞ୍ଜିକାର ବିଷୟ କହୁଅଛି । ଏହାଦ୍ୱାରା ଦୃକ୍‌ସିଦ୍ଧ କ୍ରାନ୍ତି, ଶର, ଗ୍ରହଣଦ୍ୱୟ, ଗ୍ରହଯୁଦ୍ଧ ଓ ଗ୍ରହଯୋଗ, ଉଦୟ ଓ ଅସ୍ତ, ବ୍ୟତିପାତାଦି କାର୍ଯ୍ୟ ଏବଂ ତିଥି ଓ ନକ୍ଷତ୍ରାଦି ସୂକ୍ଷ୍ମ ରବିସ୍ଫୁଟ ଓ ସୂକ୍ଷ୍ମ ଚନ୍ଦ୍ରସ୍ଫୁଟ ଜନିତ ସମସ୍ତ କାର୍ଯ୍ୟ କରାଯିବ ।

ଏକତ୍ର ନିତ୍ୟାନ୍ୟପରତ୍ର କାମାନ୍ୟବେକ୍ଷ୍ୟ କର୍ତ୍ତୁଂ ଯଦି ପଞ୍ଜିକାଦ୍ୱୟଂ ।
ଅସମ୍ମତିଃ ସ୍ୟାତ୍କଗତିଃ ପ୍ରୟାସାତ୍ କାର୍ଯ୍ୟଂ ତଦା ସୂକ୍ଷ୍ମମତେନ ସର୍ବଂ ॥

ଷଷ୍ଠ ପ୍ରକାଶ ୨୭ ଶ୍ଳୋକ ।

ଅର୍ଥାତ୍ ସ୍ଥୂଳପଞ୍ଜିକାନୁସାରେ ନିତ୍ୟକର୍ମଗୁଡ଼ିକ ଏବଂ ସୂକ୍ଷ୍ମପଞ୍ଜିକାନୁଯାୟୀ ବିବାହାଦି କାମ୍ୟକର୍ମଗୁଡ଼ିକ କରିବାକୁ ଦ୍ୱିବିଧ ପଞ୍ଜିକା ଆବଶ୍ୟକ । ମାତ୍ର

ଦୁଇଗୋଟି ପଞ୍ଜିକା ରଙ୍ଗିତ,ବନ୍ଧୁରପୂର୍ବକ କାର୍ଯ୍ୟ କରିବା ନିମନ୍ତେ ଅଶେଷ ପରିଶ୍ରମ ହେତୁରୁ ଯଦି ଲୋକମାନଙ୍କର ଅସ୍ୱୀକାର ହୁଏ ତେବେ ନିତ୍ୟ ଓ କାମ୍ୟାଦି ସମସ୍ତ ଅନୁଷ୍ଠାନ କେବଳ ସୂକ୍ଷ୍ମପଞ୍ଜିକାନୁସାରେ କର୍ତ୍ତବ୍ୟ । କାରଣ ସ୍ଥୂଳପଞ୍ଜିକା ଅପେକ୍ଷା ସୂକ୍ଷ୍ମପଞ୍ଜିକା ଶ୍ରେଷ୍ଠ ଅଟେ ।

ଯଥାସମୟରେ ହିନ୍ଦୁର ପର୍ବାଦି ଅନୁଷ୍ଠିତ ନ ହେଲେ ଶାସ୍ତ୍ରାନୁସାରେ ଦୋଷାବହ ହୁଏ । ସୁତରାଂ ସ୍ଥୂଳମତଗ୍ରାହିଣୀ ପଞ୍ଜିକାର ଅନୁସରଣରେ ଶୁଭାନୁଷ୍ଠାନ କର୍ତ୍ତବ୍ୟ ନୁହେ । ବୃହତ୍ ସଂହିତାରେ ଉକ୍ତ ଅଛି ଯେ—

ବେଳାହୀନେ ପର୍ବଣି ଗର୍ଭବିପତ୍ତିଶ୍ଚ ଶସ୍ତ୍ରକୋପଶ୍ଚ ।
ଅତିବେଳେ କୁସୁମଫଳକ୍ଷୟୋଭୟଂ ଶସ୍ୟନାଶଶ୍ଚ । ଷଷ୍ଠ । ପ୍ର । ଶ୍ଳୋ ୩୪

ଅର୍ଥାତ୍ ଯଥାର୍ଥ ସମୟ ପୂର୍ବରୁ ପର୍ବାଦି ଅନୁଷ୍ଠିତ ହେଲେ ଗୃହିଣୀଙ୍କର ଗର୍ଭରେ ବ୍ୟାଘାତ ଘଟେ ଓ କର୍ତ୍ତାଙ୍କର ଶସ୍ତ୍ରାଘାତ ହୁଏ ଏବଂ ନିର୍ଦ୍ଦିଷ୍ଟ ସମୟର ପରେ ମଧ ତାହା ସମ୍ପାଦିତ ହେଲେ ସ୍ୱୀୟ ଉଦ୍ୟାନସ୍ଥ ପୁଷ୍ପଫଳମାନଙ୍କର କ୍ଷୟ ହୁଏ, ଭୟ ଜାତ ହୁଏ ଓ ଶସ୍ୟ ନାଶ ହୁଏ । ପୁନଶ୍ଚ ଗର୍ଗସଂହିତାରେ ଉକ୍ତ ଅଛି ଯେ—

ଦୃକ୍‌ସମେ ପର୍ବଣି ନୃପା ନିର୍ବୈରା ବିଗତଜ୍ୱରାଃ ।
ପ୍ରଜାଶ୍ଚ ସୁଖିନଃ ସର୍ବେ ଭୟରୋଗବିବର୍ଜିତାଃ ॥ ଷଷ୍ଠ । ପ୍ର । ଶ୍ଳୋ ୩୬

ଅର୍ଥାତ୍ ଦୃକ୍‌ସିଦ୍ଧକାଳାନୁସାରେ ( ସୂକ୍ଷ୍ମପଞ୍ଜିକାମତରେ ) ପର୍ବାଦି ସମ୍ପନ୍ନ ହେଲେ ରାଜାମାନେ ଶତ୍ରୁଶୂନ୍ୟ ଓ ସନ୍ତାପଶୂନ୍ୟ ହୁଅନ୍ତି ଏବଂ ସମସ୍ତ ପ୍ରଜା ଭୟ ଓ ରୋଗବିହୀନ ହୋଇ ସୁଖରେ ବାସ କରନ୍ତି ।

ଏହିସବୁ କାରଣରୁ ଚନ୍ଦ୍ରଶେଖର ସୂକ୍ଷ୍ମ ପଞ୍ଜିକାର ନିୟମଗୁଡ଼ିକ ପ୍ରଣୟନ କରି ସ୍ୱୀୟ ଗ୍ରନ୍ଥରେ ପ୍ରକାଶ କଲେ । ସୁତରାଂ ତଦନୁସାରେ

ଓଡ଼ିଶାରେ ମୁଦ୍ରିତ ପଞ୍ଜିକା ପ୍ରଚଳିତ ହେଲା । ସେହିଦିନଠୁ ସମାଜ ଉପରେ ସାମନ୍ତଙ୍କର ପଞ୍ଜିକା ସ୍ୱୀୟ ପ୍ରଭାବ ବିସ୍ତାର କରି ଆସୁଅଛି ଓ କରିବ ।

୧୮୭୬ ମସିହାରେ ପୁରୀ ଜଗନ୍ନାଥ ମନ୍ଦିରରେ ନିତ୍ୟ ନୈମିତ୍ତିକ କାର୍ଯ୍ୟର ପରିଚାଳନା ନିମନ୍ତେ ବିଶୁଦ୍ଧ ପଞ୍ଜିକା ଆବଶ୍ୟକ ହେବାରୁ ସେଠାରେ ଗୋଟିଏ ସଭା ହୋଇଥିଲା । ସେହି ସଭାରେ ସାମନ୍ତ ପଞ୍ଜିକାର ବିଶୁଦ୍ଧତା ପ୍ରମାଣିତ ହେବାରୁ ସେହି ଦିନଠାରୁ ତାହାଙ୍କ ପଞ୍ଜିକାନୁସାରେ ମନ୍ଦିରର ସମସ୍ତ କାର୍ଯ୍ୟ ପରିଚାଳିତ ହୋଇ ଆସୁଅଛି । ସାମନ୍ତ ସେ ସମୟରେ ସ୍ୱୀୟ ଶିଷ୍ୟ ସଦାଶିବ ଖଡ଼ିରତ୍ନଙ୍କ ସହାୟତାରେ କିଛିଦିନ ନୂତନ ପଞ୍ଜିକା ମୁଦ୍ରିତ କରାଇଥିଲେ । ତାହାଙ୍କର ଆଉ ଜଣେ ଶିଷ୍ୟ ବଙ୍ଗଳା ପାଞ୍ଜି ପ୍ରକାଶ କରିଥିଲେ ଏବଂ ତାହା ବଙ୍ଗଦେଶରେ ପ୍ରଚଳିତ ହେଉଥିଲା । ଏହିପରି ହିନ୍ଦୁ ସମାଜରେ ଚନ୍ଦ୍ରଶେଖରଙ୍କର ଅଧିଷ୍ଠାନ ଦୃଢ଼ ହୋଇଥିଲା । ସେହି ସମୟରେ ସେ ତାହାଙ୍କର ପ୍ରତିବାଦକାରୀମାନଙ୍କୁ ଯୁକ୍ତି ବଳରେ ନୀରବ କରିଥିଲେ । ସାମନ୍ତ ପଞ୍ଜିକା ପ୍ରଥମେ ପ୍ରିଣ୍ଟିଂ କୋମ୍ପାନୀରେ ଓ ପରେ ବିଜୟ ପ୍ରେସରେ ମୁଦ୍ରିତ ହୋଇଥିଲା । ପଞ୍ଜିକା ମୁଦ୍ରିତ ହୋଇଥିଲେହେଁ ସାମନ୍ତ ଛପା ପାଞ୍ଜି ବ୍ୟବହାର କରୁ ନ ଥିଲେ । ସ୍ୱୟଂ ତାଳପତ୍ର ପଞ୍ଜିକା ନିର୍ମାଣ କରି ତଦ୍ଦ୍ୱାରା ସମସ୍ତ କାର୍ଯ୍ୟ ଚଳାଉଥିଲେ । କାଗଜ ସବୁ ଅପବିତ୍ର ପଦାର୍ଥରେ ପ୍ରସ୍ତୁତ ହେଉଥିବାର ଶୁଣି ତାହାକୁ ଅଶୁଚି ମନେ କରୁଥିଲେ ଏବଂ ଦେବାଳୟକୁ ତାହା ନେଉ ନଥିଲେ କିମ୍ବା ଭଲ ଲୁଗା ପିନ୍ଧିଥିବା ସମୟରେ ସ୍ପର୍ଶ କରୁ ନ ଥିଲେ । ତେଣୁ ସର୍ବଦା ତାଳପତ୍ର ପଞ୍ଜିକା ବ୍ୟବହୃତ ହେଉଥିଲା । ବିଶେଷତଃ ତାଳପତ୍ର ପଞ୍ଜିକାରେ ଗୋଟିଏ ପୃଷ୍ଠାରେ ଏକ ପକ୍ଷର ବିଷୟ ଲିଖିତ ହୋଇ ପାରୁଥାଏ । ସେହିହେତୁ ତତ୍ପୁତ୍ର ଗଦାଧର ସିଂହ ମଧ୍ୟ ସମ୍ପ୍ରତି ସେହିପରି ତାଳପତ୍ର ପଞ୍ଜିକାର ବ୍ୟବହାର କରୁଅଛନ୍ତି ।

ବର୍ତ୍ତମାନ ଗଦାଧର ସିଂହ ସାମନ୍ତ ସ୍ୱୀୟ ପୁରୋହିତ ଜ୍ୟୋତିର୍ବିତ୍ ପଣ୍ଡିତ ବଳରାମ ଦାଶଙ୍କ ସହ ଏକତ୍ର ପଞ୍ଜିକା ପ୍ରକାଶ କରୁଅଛନ୍ତି । ବଳରାମ ପଞ୍ଜିକା ଗଣନାରେ ଯେପରି ଦକ୍ଷ ସେହିପରି ଫଳିତ ଜ୍ୟୋତିଷରେ ମଧ୍ୟ ନିପୁଣ ଅଟନ୍ତି । ସମ୍ପ୍ରତି ସେ ଗଡ଼ଜାତରେ ବହୁଲୋକର କୋଷ୍ଠୀ ନିର୍ମାଣ କରୁଅଛନ୍ତି ଏବଂ ଫଳ କଥନରେ ଖ୍ୟାତି ଲଭିଅଛନ୍ତି । ଖଣ୍ଡପଡ଼ାର ରଘୁନାଥ ଭାରତୀଭୂଷଣ ଓ ଶତ୍ରୁଘ୍ନ ନନ୍ଦ ନାମକ ଭ୍ରାତୃଦ୍ୱୟ ମଧ୍ୟ ସାମନ୍ତଙ୍କ ସିଦ୍ଧାନ୍ତାନୁସାରେ ସ୍ୱତନ୍ତ୍ର ଭାବେ ଗୋଟିଏ ପଞ୍ଜିକା ପ୍ରକାଶ କରୁଅଛନ୍ତି ।

**ଅନ୍ତିମକାଳ**—ଚନ୍ଦ୍ରଶେଖରଙ୍କର ଅନ୍ତିମକାଳ କ୍ଳେଶଦାୟକ ଥିଲା । ମାତ୍ର ସାମନ୍ତ ଅଦୃଷ୍ଟବାଦୀ ଥିବାରୁ ସେ ସବୁ କ୍ଳେଶ ସ୍ୱକର୍ମାର୍ଜିତ ଓ ଅବଶ୍ୟ-ସହ୍ୟ ମନେକରି ସ୍ୱୀୟ ଅସାଧାରଣ କଷ୍ଟସହିଷ୍ଣୁତା ଗୁଣରେ କଦାପି ସେଥିରେ ଅଧୀର ହୋଇ ନ ଥିଲେ । ଜ୍ୟୋତିଷ ତତ୍ତ୍ୱର ଆବିଷ୍କରଣରେ ଦିବାରାତ୍ର କଠୋର ଅଧ୍ୟବସାୟ କରିବାରୁ ଚନ୍ଦ୍ରଶେଖର ଅର୍ଶ, ଅଗ୍ନିମାନ୍ଦ୍ୟ ଓ ଅନ୍ତ୍ରବୃଦ୍ଧି ରୋଗରେ ପୀଡ଼ିତ ହୋଇଥିଲେ । ସେହି ରୋଗର ଯାତନାରୁ ରକ୍ଷା ପାଇବା ନିମନ୍ତେ ଆୟୁର୍ବେଦବିତ୍ ନାନାବିଧ ଔଷଧର ଆଶ୍ରୟ ଗ୍ରହଣ କରିଥିଲେ । ସେ ସ୍ୱୟଂ ଆୟୁର୍ବେଦବିତ୍ ଥିବାରୁ ପୁତ୍ରମାନଙ୍କ ସାହାଯ୍ୟରେ ବିବିଧ ଔଷଧ ପ୍ରସ୍ତୁତ କରାଇ ସେବନ କରୁଥିଲେ ଏବଂ ଅନ୍ୟ ପ୍ରାମାଣିକ ବୈଦ୍ୟମାନଙ୍କଠାରୁ ମଧ୍ୟ ଔଷଧ ସେବନ କରୁଥିଲେ । ସେ ମୂର୍ଖ ବୈଦ୍ୟ ବା ନୂତନ ବୈଦ୍ୟଠାରୁ କଦାପି ଔଷଧ ବ୍ୟବହାର କରୁ ନ ଥିଲେ । ଖଣ୍ଡପଡ଼ାର ତତ୍କାଳୀନ ରାଜକର୍ମଚାରୀ ଓ ପ୍ରସିଦ୍ଧ ବୈଦ୍ୟ ହକିମ୍ ମହମ୍ମଦ ଇଉସୁଫ୍ ଔଷଧାଦି ବିଷୟରେ ସାମନ୍ତଙ୍କର ବିଶେଷ ଉପଦେଷ୍ଟା ଥିଲେ । ସାମନ୍ତ ଆୟୁର୍ବେଦୀୟ ଓ ହକିମୀ ଔଷଧ ଭିନ୍ନ ଡାକ୍ତରୀ ଔଷଧର ପକ୍ଷପାତୀ ନ ଥିଲେ । ନାନାରୋଗ ତାହାଙ୍କର ସହଚର ହେଲେ ମଧ୍ୟ ନିତ୍ୟକର୍ମ-କରଣରେ ସେ କଦାପି ତ୍ରୁଟି କରୁ ନ ଥିଲେ । ଏହି ସବୁ ରୋଗର

ପ୍ରାଦୁର୍ଭାବ ହେତୁରୁ ସେ ଚରମ ବୟସରେ ବିଶେଷ ପଥ୍ୟାଶୀ ଥିଲେ । କୌଣସିପ୍ରକାର ଗରିଷ୍ଠ ବା ଦୁଷ୍ପାଚ୍ୟ ପଦାର୍ଥ ଭକ୍ଷଣ କରିବାକୁ ସେ ବଡ଼ ଭୟ କରୁଥିଲେ । ତେଣୁ ତାହାଙ୍କ ଆହାର ନିମିତ୍ତ ପଥ୍ୟ ଦ୍ରବ୍ୟମାନ ନାନାସ୍ଥାନରୁ ସଂଗୃହୀତ ହେଉଥିଲା । ଅର୍ଥାଭାବସମ୍ପନ୍ନ ହେଲେହେଁ ସ୍ୱୀୟ ପୁତ୍ରମାନଙ୍କର ପିତୃଭକ୍ତି ବଶତଃ ପ୍ରୋକ୍ତ ଦ୍ରବ୍ୟାଦିର ସଂଗ୍ରହ କଷ୍ଟକର ହେଉ ନ ଥିଲା ।

ସାମନ୍ତଙ୍କର ପୈତୃକ ଭୂମି ବୃତ୍ତିଦ୍ୱାରା ପରିବାରବର୍ଗଙ୍କର ଭରଣପୋଷଣ ତ କଷ୍ଟକର ହୁଏ, ସେଥିରେ ପୁଣି ପୁତ୍ର, କନ୍ୟାମାନଙ୍କର ବ୍ରତୋପନୟନ ଓ ବିବାହାଦିରେ ଋଣ ହୋଇଯିବାରୁ ଅନ୍ତିମକାଳକୁ ତାହାଙ୍କର ଅର୍ଥାଭାବ ପ୍ରବଳାକାର ଧାରଣ କରିଥିଲା । ସମୟେ ସମୟେ କୌଣସି କୌଣସି ରାଜା ସ୍ୱତଃପ୍ରବୃତ୍ତ ହୋଇ କିଛି କିଛି ସାହାଯ୍ୟ କଲେ ମଧ୍ୟ ତଦ୍ୱାରା ସମ୍ପୂର୍ଣ୍ଣରୂପେ ଅଭାବ ମୋଚନ ହେଉ ନ ଥିଲା । ଏତେ ଅଭାବ ସତ୍ତ୍ୱେ ସେ ସ୍ୱୟଂ କାହାରି ନିକଟରେ ଯାଚକ ସ୍ୱରୂପ ଉପସ୍ଥିତ ହେବାକୁ ଇଚ୍ଛା କରୁ ନ ଥିଲେ । କେବଳ ସ୍ୱୀୟ ଅଦୃଷ୍ଟ ଉପରେ ଓ ଭଗବାନଙ୍କ ସର୍ବନିର୍ବାହକତ୍ୱ ଉପରେ ନିର୍ଭର କରି ସ୍ଥିର ରହୁଥିଲେ । "ସର୍ବନିର୍ବାହକୋ ହରିଃ" ଏହି ମହାବାକ୍ୟକୁ ସର୍ବଦା ଉଚ୍ଚାରଣ କରୁଥିଲେ । ଅର୍ଥାଭାବର ଦୂରୀକରଣ ବିଷୟରେ କେହି ତାହାଙ୍କୁ କହିଲେ ସେ ଉତ୍ତର ଦେଉଥିଲେ—"ବୃତ୍ତ୍ୟର୍ଥଂ ନାତି ଚେଷ୍ଟେତ, ସାପି ଧାତ୍ରୈବ ନିର୍ମିତା ।" ଅର୍ଥାତ ଜୀବିକା ନିର୍ବାହପାଇଁ ଅତି ଚେଷ୍ଟା କରିବା ଉଚିତ ନୁହେଁ । ସେଥିପାଇଁ ବିଧାତା ପୂର୍ବରୁ ନିର୍ଦ୍ଦେଶ କରି ଦେଇଥାନ୍ତି । ସୁତରାଂ ଏତାଦୃଶ ଅଭାବ ହେଲେହେଁ ତାହାଙ୍କର କୌଣସି ସାଂସାରିକ କାର୍ଯ୍ୟ ବାକି ରହୁ ନ ଥିଲା; ବରଂ ସ୍ୱୀୟ କୁଳ ମର୍ଯ୍ୟାଦାନୁଯାୟୀ ସମସ୍ତ କାର୍ଯ୍ୟ ସମ୍ପାଦିତ ହେଉଥିଲା । ଏହି ଘୋର କଳିଯୁଗରେ ମଧ୍ୟ ସେହିପରି ଈଶ୍ୱର-

କର୍ତ୍ତବ୍ୟଶୀଳ ଅନେକ ଲୋକ ପ୍ରୋକ୍ତ ବାକ୍ୟର [redacted]ନରେ କାଳାତିପାତ କରିଯାଉ ଅଛନ୍ତି, ଅଥଚ ସେମାନଙ୍କର କୌଣସି କାର୍ଯ୍ୟ ନଷ୍ଟ ହେବାର ଦେଖାଯାଏ ନାହିଁ । ଚରମାବସ୍ଥାରେ ସୁଦ୍ଧା ଆଳସ୍ୟ ତାହାଙ୍କୁ ସ୍ପର୍ଶ କରିପାରି ନ ଥିଲା । ପ୍ରଭାତରେ ଯଥାସମୟରେ ଗାତ୍ରୋତ୍ଥାନ, ସ୍ନାନାଦି ନିତ୍ୟକର୍ମ, ଭୋଜନ, ସଜ୍ଜନସଙ୍ଗ ଓ ଶାସ୍ତ୍ରାଳାପ; ସନ୍ଧ୍ୟା ଓ ରାତ୍ରିରେ ଯଥାବିଧି ନିତ୍ୟକର୍ମ ପ୍ରଭୃତିରେ ଲବମାତ୍ର ବ୍ୟତ୍ୟୟ ଦେଖାଯାଉ ନ ଥିଲା । ଅନ୍ତିମକାଳରେ ଚନ୍ଦ୍ରଶେଖରଙ୍କର ଅନ୍ୟ ଶାସ୍ତ୍ର ଅପେକ୍ଷା ଭକ୍ତି ଗ୍ରନ୍ଥର ଚର୍ଚ୍ଚା ଅଧିକ ପରିମାଣରେ ହେଉଥିଲା । ଶ୍ରୀମଦ୍‌ଭାଗବତର ପାଠ ଓ ଶ୍ରବଣରେ ତାହାଙ୍କର ପ୍ରଗାଢ଼ ଅନୁରାଗ ଥିଲା । ଯେଉଁ ପଣ୍ଡିତ ସଂସ୍କୃତ ଭାଗବତର ଅର୍ଥ ଜାଣୁଥିଲେ ତାହାଙ୍କପ୍ରତି ସାମନ୍ତଙ୍କର ଗଭୀର ଭକ୍ତି ପ୍ରକାଶିତ ହେଉଥିଲା । କାରଣ ସେ ଜାଣନ୍ତି ଯେ "ବିଦ୍ୟା ଭାଗବତାବଧି" ଏବଂ "ବିଦ୍ୟାବତାଂ ଭାଗବତେ ପରୀକ୍ଷା" ଅର୍ଥାତ୍ ପ୍ରକୃତ ବିଦ୍ୱାନ୍ ନ ହେଲେ କେହି ଭାଗବତ ଅର୍ଥ କରିବାରେ ସମର୍ଥ ହୋଇପାରନ୍ତି ନାହିଁ । ଖଣ୍ଡପଡ଼ାବାସୀ ରାମ ପରମଗୁରୁ ଜଣେ ଭାଗବତୀ ପଣ୍ଡିତ ଥିଲେ । ସାମନ୍ତ ପ୍ରତ୍ୟହ ତାହାଙ୍କଠାରୁ ସଂସ୍କୃତ ଭାଗବତର ଅର୍ଥ ଶ୍ରବଣ କରୁଥିଲେ । ପୁରାଣ ଶ୍ରବଣ ସମୟରେ ତଦୀୟ କଳେବର ରୋମାଞ୍ଚିତ ଓ ଲୋଚନଦ୍ୱୟ ଆନନ୍ଦାଶ୍ରୁପୂର୍ଣ୍ଣ ହୋଇଯାଉଥିଲା । ମୁଁ ପୂର୍ବରେ କହିଅଛି ଯେ ଖଣ୍ଡପଡ଼ାରେ ଖଡ଼୍‌ଗରାୟୋପାଧିକ ପଣ୍ଡିତ ଦୀନବନ୍ଧୁ ମିଶ୍ର ପରମ ବୈଷ୍ଣବ ଥିଲେ ଓ ଅଦ୍ୱିତୀୟ ଭାଗବତୀ ପଣ୍ଡିତ ଥିଲେ । ତଦୀୟ ବଂଶଧରମାନେ ପୁତ୍ରପୌତ୍ରାଦିକ୍ରମେ ନ୍ୟୂନାଧିକ ପରିମାଣରେ ଭାଗବତରେ ପରିଶ୍ରମ କରିଥିଲେ । ସାମନ୍ତଙ୍କର ସଂସ୍କୃତାଧ୍ୟାପକ ଅନନ୍ତ ଖଡ଼୍‌ଗରାୟଙ୍କର ଭାଗବତରେ ବିଶେଷ ବ୍ୟୁତ୍ପତ୍ତି ଥିଲା ଏବଂ ତତ୍ପୁତ୍ର ବାଇଧର ପୁରୋହିତ ପିତାଙ୍କଠାରୁ ଶ୍ରୀମଦ୍‌ଭାଗବତର ଅର୍ଥ ଶିକ୍ଷା କରିଥିଲେ । ତଦୀୟ ପୁତ୍ର ଓ ସାମନ୍ତଙ୍କର ଶିଷ୍ୟ ପଣ୍ଡିତ ରାଜବଲ୍ଲଭ ମିଶ୍ରଙ୍କର ମଧ୍ୟ ସଂସ୍କୃତ ଭାଗବତରେ

ଜ୍ଞାନ ଥିଲ ସେମାନଙ୍କଠାରୁ ସେହି ବଂଶ ପଣ୍ଡିତଶୂନ୍ୟ ହୋଇଅଛି । ରଣପୁର କିଲ୍ଲାନ୍ତର୍ଗତ ରାମଚନ୍ଦ୍ରପୁର ଶାସନନିବାସୀ ବଳଭଦ୍ର ବଡ଼ପଣ୍ଡାଙ୍କର ସଂସ୍କୃତ ଭାଗବତରେ ସମ୍ୟକ୍ ବ୍ୟୁତ୍ପତ୍ତି ନ ଥିଲେହେଁ ତହିଁର ଅଷ୍ଟାଦଶ ସହସ୍ର ଶ୍ଳୋକ ଏକ ପ୍ରକାର ଅଥସନ୍ଧି କଣ୍ଠସ୍ଥ ଥିଲା ଏବଂ ଯେ କୌଣସି ଚରିତ ଜିଜ୍ଞାସା କରିବା ମାତ୍ରେ ସେ ତତ୍କ୍ଷଣାତ୍ ସେହି ଶ୍ଳୋକଗୁଡ଼ିକ ପାଠ କରି ତହିଁର ସାଧାରଣ ଅର୍ଥ ପ୍ରକାଶ କରିଦେଉଥିଲେ । ଉକ୍ତ ବଡ଼ପଣ୍ଡା ବେଦାନ୍ତଜ୍ଞ ନ ଥିବାରୁ ଭାଗବତର ଗୂଢ଼ ତତ୍ତ୍ୱ ମଧ୍ୟରେ ପ୍ରବେଶ କରିପାରୁ ନ ଥିଲେ । ତଥାପି ଅଷ୍ଟାଦଶ ସହସ୍ର ଶ୍ଳୋକ ଅଭ୍ୟସ୍ତ କରିବା ବିସ୍ମୟଜନକ ବ୍ୟାପାର ନୁହେ କି ? ନୟାଗଡ଼ର ଯୋଗନାଥ ରଥ ସଂସ୍କୃତ ଭାଗବତରେ ବିଶେଷ ଜ୍ଞାନ ଲାଭ କରିଥିଲେ । ଉକ୍ତ ପଣ୍ଡିତଦ୍ୱୟ ସାମନ୍ତଙ୍କ ସମୀପକୁ ବହୁବାର ଆଗମନ କରି ସମ୍ମାନିତ ହୋଇ ଯାଉଥିଲେ ।

ଚରମ କାଳ ପର୍ଯ୍ୟନ୍ତ ସାମନ୍ତଙ୍କର ଦନ୍ତଗୁଡ଼ିକ ସ୍ଖଳିତ ବା ଶିଥିଳ ହୋଇ ନ ଥିବାରୁ ସଂସ୍କୃତ ଶ୍ଳୋକର ଉଚ୍ଚାରଣରେ ବ୍ୟାଘାତ ହେଉ ନ ଥିଲା । ତାହାଙ୍କର ପ୍ରବଳ ଉଚ୍ଚାରଣ ଶକ୍ତି ଥିଲା । ତନ୍ମୁଖରୁ ଶ୍ଳୋକୋଚ୍ଚାରଣ ଶୁଣିଲାବେଳେ ବୋଧ ହେଉଥିଲା ସତେ କି ପର୍ବତରୁ ପ୍ରସ୍ତରପାତ ହେଉଅଛି । ସେହିପରି ଉଚ୍ଚାରଣ କରିବାକୁ ପ୍ରବୃତ୍ତ ହେଲେ ଅମ୍ଭମାନଙ୍କର ବୋଧହୁଏ ଦନ୍ତଗୁଡ଼ିକ ଭଗ୍ନ ହୋଇଯାନ୍ତା । ସାମନ୍ତ କହନ୍ତି ଯେ ତଦୀୟ ଗୁରୁ ଅନନ୍ତ ଖାଡ଼ଙ୍ଗାଙ୍କର ଉଚ୍ଚାରଣ କ୍ଷମତା ତାହାଙ୍କଠାରୁ ଅଧିକ । ଦନ୍ତପଂକ୍ତି ଅବିକୃତ ଅବସ୍ଥାରେ ଥିବାରୁ ଖାଦ୍ୟ ପଦାର୍ଥର ଚର୍ବଣାଦିରେ ତାହାଙ୍କୁ କୌଣସି ଅସୁବିଧା ଭୋଗ କରିବାକୁ ହେଉ ନ ଥିଲା ।

ବିଦଗ୍ଧମାଧବ, କୃଷ୍ଣକର୍ଣ୍ଣାମୃତ ପ୍ରଭୃତି ସ୍ୱାମିଗ୍ରନ୍ଥରେ ତାହାଙ୍କର ଅନୁରାଗ ବଳବତ୍ତର ଥିଲା । ସେହି ସବୁ ଗ୍ରନ୍ଥର ପାଠ ଓ ଶ୍ରବଣ ସମୟରେ

ତାହାଙ୍କର ନେତ୍ର ଅଶ୍ରୁଦ୍ୱାରା ଏବଂ କଳେବର ପୁଲକରେ ପୂର୍ଣ୍ଣ ହୋଇଯାଉଥିଲା । ନାରାୟଣ ଶତକ ଓ ଗୁଣ୍ଡିଚା ସ୍ତୋତ୍ର ଅର୍ଥ କରିବା ସମୟରେ ସାମନ୍ତଙ୍କର କଣ୍ଠ ଆନନ୍ଦରେ ଗଦ୍‌ଗଦ ହୋଇଯାଉଥାଏ । ସଂସ୍କୃତ ସାହିତ୍ୟରେ ବିଶେଷତଃ ଭକ୍ତିଗ୍ରନ୍ଥରେ ତାଦୃଶ ଅର୍ଥିକ ଶକ୍ତିସମ୍ପନ୍ନ ବ୍ୟକ୍ତି ଏ ଅଧମ ଲେଖକର ଦୃଷ୍ଟି ପଥରେ କଦାପି ପଡ଼ି ନାହାନ୍ତି ।

ଅନ୍ତିମ ସମୟ ବେଳକୁ ସାମନ୍ତଙ୍କର ନାମ ଚତୁର୍ଦ୍ଦିଗରେ ସମ୍ପୂର୍ଣ୍ଣ ରୂପେ ପ୍ରଚରିତ ହୋଇ ଯାଇଥିବାରୁ ଖଣ୍ଡପଡ଼ାକୁ ବହୁ ସାଧୁ ସଜ୍ଜନଙ୍କର ସମାଗମ ହୋଇଥିଲା । ସେମାନଙ୍କର ପାଦଧୂଳି ସ୍ପର୍ଶରେ ଖଣ୍ଡପଡ଼ା ବାସ୍ତବିକ ପବିତ୍ରତା ଲାଭ କରିଅଛି । ସେ ସମୟରେ ଚନ୍ଦ୍ରଶେଖର ନାନାକଥା ମଧ୍ୟରେ ପୁଣ୍ୟକ୍ଷେତ୍ର ପ୍ରସଙ୍ଗ ଉତ୍ଥାପିତ କରୁଥାନ୍ତି । ପୁରୀରେ ଦେହତ୍ୟାଗ କରିବାକୁ ତାହାଙ୍କର ଚିରପୋଷିତ କାମନା ଥିବାରୁ ତାହା କିପରି ଫଳବତୀ ହେବ ସେ ବିଷୟରେ ସତତ ଭାବନା କରୁଥାନ୍ତି । ସେ ନିଜର ଆୟୁର୍ଗଣନା କରି ମୃତ୍ୟୁର ସମୟ ଅବଧାରଣା କରିଥିଲେ ହେଁ ଫଳିତ ଜ୍ୟୋତିଷରେ ସମ୍ପୂର୍ଣ୍ଣ ବିଶ୍ୱାସ ନ ଥିବାରୁ ସ୍ୱୀୟ ଗଣନା ଉପରେ ନିର୍ଭର କରି ରହିପାରୁ ନ ଥାନ୍ତି । ମୃତ୍ୟୁଦିବସ ଯେତିକି ନିକଟବର୍ତ୍ତୀ ହେଉଥାଏ ପୁରୀ ପ୍ରୟାଣ ନିମିତ୍ତ ତାହାଙ୍କର ସେତିକି ଉତ୍କଣ୍ଠା ବଢ଼ୁଥାଏ । ପରିବାରବର୍ଗ ମଧ୍ୟ ଏପରି ବୃଦ୍ଧ ବୟସରେ ତାହାଙ୍କୁ ବିଦେଶ ଛାଡ଼ି ଦେବାକୁ ସମ୍ପୂର୍ଣ୍ଣ ଅନିଚ୍ଛୁକ ହେଉଥାନ୍ତି । ମାତ୍ର "ଯାଦୃଶୀ ଭାବନା ଯସ୍ୟ ସିଦ୍ଧିର୍ଭବତି ତାଦୃଶୀ" ଏହି ବାକ୍ୟାନୁସାରେ ଜଗନ୍ନାଥ ସାମନ୍ତଙ୍କର ପୁରୀପ୍ରୟାଣ ବିଷୟରେ ସୁବନ୍ଦୋବସ୍ତ କରିଦେଲେ । ପୁରୀଠାରେ ଚନ୍ଦ୍ରଶେଖର ସ୍ୱୟଂ ପ୍ରଥମେ ଗଭର୍ଣ୍ଣମେଣ୍ଟ ପ୍ରଦତ୍ତ ପେନ୍‌ସନ ଗ୍ରହଣ ନ କଲେ ଅନ୍ୟକୁ ଦିଆ ନ ଯିବାର ପ୍ରସ୍ତାବ ହେବାରୁ ଏବଂ ସେ ସମ୍ବନ୍ଧରେ ପୁରୀ ଟ୍ରେଜେରୀ ଅଫିସରଙ୍କଠାରୁ ପତ୍ର ଆସିବାରୁ ତାହାଙ୍କର ପୁରୀଗମନ ନିମିତ୍ତ ପୁନ-ର୍ବିବାଦ ସ୍ୱୀକୃତ ହେଲେ । ସେହି ପତ୍ର ଏହି—

ଶ୍ରୀ ଶ୍ରୀ ଯୁକ୍ତ ମହୋପାଧ୍ୟାୟ ଚନ୍ଦ୍ରଶେଖର ହିନ୍ଦୁ
ହରିଚନ୍ଦନ ମହାପାତ୍ର ସାମନ୍ତ—ଜାଣିବେ ।

ଯେ ହେତୁ ଆପଣଙ୍କ ସକାସେ ଗତ ଡିସେମ୍ବର ମାସ ତା ୭ ରିକ ଠାରୁ ସରକାର ବାହାଦୁର ମାସିକ ଟ ୫୦୯ ହିସାବରେ ପେନ୍‌ସନ୍ ମଂଜୁର କରଅଛନ୍ତି ଅତଏବ ଆପଣ ଉପସ୍ଥିତ ହୋଇ ଉକ୍ତ ପେନ୍‌ସନ୍ ୪୨।। ଟଙ୍କା ନେଇଯିବେ ଓ ଭବିଷ୍ୟତରେ ପ୍ରତି ମାସରେ ଉପସ୍ଥିତ ହୋଇ ସେହି ଟଙ୍କା ନେଇ ଯାଉଥିବେ । ଇତି । ୫ । ୪ । ୦୪

Sd/ J. N. Ghose
Try.-Officer.

ସୁତରାଂ ସାମନ୍ତ ସବ ଶୁଭରେ ଯାଇ ଜଗନ୍ନାଥ ଦେବଙ୍କର ଦର୍ଶନାନ୍ତେ ସନ ୧୯୦୪ ମସିହା ଜ୍ୟେଷ୍ଠମାସ କୃଷ୍ଣପକ୍ଷ ଦ୍ୱାଦଶୀ ପୂର୍ବାହ୍ଣ ଚତୁର୍ଦ୍ଦଶ ଦଣ୍ଡ ସମୟରେ କାଳଚକ୍ରକୁ ଅବଲମ୍ବନ ପୂର୍ବକ ତୁଳସୀ ମୂଳରେ ଜଗନ୍ନାଥ ନାମ କ୍ଷୀଣ ସ୍ୱରରେ ଉଚ୍ଚାରଣ କରୁ କରୁ ତାହାଙ୍କର ଅମର ଆତ୍ମା ଭୌତିକ ଦେହରୁ ଅପସୃତ ହୋଇ ପରମାତ୍ମାଙ୍କ ଠାରେ ଲୀନ ହୋଇଗଲା ଏବଂ ଭକ୍ତ-ବାଞ୍ଛା-କଳ୍ପତରୁଙ୍କ ଅସୀମ ଦୟାରେ ଭକ୍ତଙ୍କର ମନୋରଥ ସଫଳ ହେଲା । ଏହି ଦୁଃସମ୍ବାଦ ଦେଖୁ ଦେଖୁ ଓଡ଼ିଶାର ସର୍ବତ୍ର ବ୍ୟାପ୍ତ ହୋଇଯିବାରୁ ସମସ୍ତେ ହାହାକାର କରିବାକୁ ଲାଗିଲେ । ନାନା ସ୍ଥାନରେ ଶୋକସଭା ଅନୁଷ୍ଠିତ ହୋଇ ତଦୀୟ ଆତ୍ମାର ସଦ୍ଗତି କାମନା କରାଗଲା ଏବଂ ପରିବାରବର୍ଗଙ୍କ ସାନ୍ତ୍ୱନା ନିମନ୍ତେ ପ୍ରସ୍ତାବମାନ ଗୃହୀତ ହୋଇ ସେ ବିଷୟ ତାହାଙ୍କର ଆତ୍ମୀୟ ସ୍ୱଜନମାନଙ୍କ ନିକଟକୁ ଜ୍ଞାପିତ ହେଲା ।

ଚନ୍ଦ୍ରଶେଖରଙ୍କର ଲୋକାନ୍ତର ସମୟରେ ତାହାଙ୍କ ସଙ୍ଗରେ କେବଳ ତଦୀୟ ମଧ୍ୟମ ପୁତ୍ର ଥିଲେ । ସେହି ଘୋର ଦୁଃସମ୍ବାଦ ସ୍ୱଗୃହରେ ପ୍ରବେଶ

କରିବା ମାତ୍ରେ ପରିବାରବର୍ଗ ଶୋକ ସନ୍ତାପରେ ଅଧୀର ହୋଇ ପଡ଼ିଲେ । ତାହାଙ୍କର ସହଧର୍ମିଣୀ ସୀତା ଦେବୀ ସେହି ଦିନଠାରୁ ପବିତ୍ର ବୈଧବ୍ୟବ୍ରତ ପାଳନପୂର୍ବକ ଅତି କଷ୍ଟରେ କାଳଯାପନ କରିବାକୁ ଲାଗିଲେ । ସାମନ୍ତଙ୍କର କନଷ୍ଠ ପୁତ୍ର ଶୀଘ୍ର ପୁରୀକୁ ଯିବାରୁ ଉଭୟଭ୍ରାତା ତାହାଙ୍କର ଅନ୍ତ୍ୟେଷ୍ଟିକ୍ରିୟା ସମାଧାନ କଲେ । ସ୍ୱର୍ଗୀୟ ସାମନ୍ତଙ୍କର ସ୍ମୃତିରକ୍ଷାର୍ଥ ପୁରୀରେ 'ଚନ୍ଦ୍ରଶେଖର ହଲ୍' ନାମକ ଗୋଟିଏ ହର୍ମ୍ୟ ନିର୍ମିତ ହେଲା । ସେହି ହର୍ମ୍ୟ ସଲଗ୍ନରେ ବ୍ରାହ୍ମଣ ସମିତିର ଛତ୍ରାଳୟ ସ୍ଥାପିତ ହୋଇ ପ୍ରତିବର୍ଷ ସେହି ହଲ୍‌ରେ ଉକ୍ତ ସମିତିର ବାର୍ଷିକ ଅଧିବେଶନ ସମାହିତ ହେଉଅଛି ଏବଂ ଅନ୍ୟାନ୍ୟ ସଭାସମିତିମାନଙ୍କର କାର୍ଯ୍ୟ ମଧ୍ୟ ପରିଚାଳିତ ହେଉଅଛି ।

**ଖଣ୍ଡପଡ଼ା ପରିତ୍ୟାଗ, ଶ୍ରୀ କ୍ଷେତ୍ରରେ ଦେହ ବିସର୍ଜନ ଓ ଭବିଷ୍ୟଦ୍‌ବାଣୀର ସାର୍ଥକତା—**

ଚନ୍ଦ୍ରଶେଖର ପୁରୁଷୋତ୍ତମ କ୍ଷେତ୍ରରେ ଅବସ୍ଥାନ କରିବାକୁ ଓ ସର୍ବଦା ଜଗନ୍ନାଥଙ୍କ ଦର୍ଶନ ଲାଭ କରିବାକୁ ଲାଳାୟିତ ଥିଲେ । ସିଦ୍ଧାନ୍ତ-ଦର୍ପଣର ତ୍ରୟୋଦଶ ପ୍ରକାଶରେ ସେ ପୁରୁଷୋତ୍ତମ କ୍ଷେତ୍ରର ବର୍ଣ୍ଣନ କରିଅଛନ୍ତି । ସେ ପ୍ରତିବର୍ଷ ଥରେ ହେଲେ ପୁରୀକୁ ଯାଇ ଭଗବଦ୍ଦର୍ଶନରେ ନେତ୍ର ଓ ମନର ପବିତ୍ରତା ସମ୍ପାଦନ କରୁଥିଲେ । ଆର୍ଥିକ ସ୍ୱଚ୍ଛଳତା ନ ଥିବାରୁ ସେ ସର୍ବଦା ଶିବିକାରେ ପୁରୀ ଯିବାର ସୁବିଧା ପାଉନଥିଲେହେଁ କଦାପି ବଳଦ ଗାଡ଼ିରେ ଯାଉ ନ ଥିଲେ । ଯେତେବେଳେ ତାହାଙ୍କର ବଳବୟସ ଥିଲା ସେତେବେଳେ ସେ ପାଦଚାରୀ ହୋଇ ସଙ୍ଗରେ ପୁରୋହିତ ସୁପକାର, ଭାରବାହକ ଓ ଭୃତ୍ୟ ଭିନ୍ନ ଦୁଇ ଏକ ଜଣ ବ୍ରାହ୍ମଣ ପଣ୍ଡିତ ନେଉଥିଲେ । କିନ୍ତୁ ଯେତେଦିନ ସେ ପୁରୀରେ ରହୁଥିଲେ ବସାରେ ତାହାଙ୍କର ଭୋଜନ ନିମନ୍ତେ ସ୍ୱତନ୍ତ୍ର ପାକ ହେଉ ନ ଥିଲା । କେବଳ

ଦୁଇଓ୍ତ ମହାପ୍ରସାଦ ସେବା କରି ମନ୍ଦିରରେ କପାଟ୍‌ କିତ୍ୟକର୍ମର ଅନ୍ତ୍ରସ୍ଥାନଦ୍ୱାରା ବନ୍ଧ ସମସ୍ତ ଯାପନ କରୁଥିଲେ । ସାମନ୍ତ ମହାପ୍ରସାଦର ଅତ୍ୟନ୍ତ ଭକ୍ତ କରୁଥିଲେ । ସେ ସମ୍ବନ୍ଧରେ ସିଦ୍ଧାନ୍ତ ଦର୍ପଣର ବଂଶ ପ୍ରକାଶରେ ୧୧୨ ଶ୍ଳୋକରେ ଲେଖିଅଛନ୍ତି—

କୃଚ୍ଛ୍ରପ୍ରଛନବୃତ୍ତୟୋ ମନ୍ତୁଜବୀଥୟୋ ଯନ୍ମହା—.
ପ୍ରସାଦପରିପୂରିତୋଦରକରା ଜନାଃ ପାବନାଃ ।
ପୁନନ୍ତି ପତିତାନ୍ ପଥି ସ୍ବତନୁମାରୁତୈ ର୍ମୀବୃଣୋ
କୃଶୋବହରୁ ମେଽନ୍ୱହଂ ମହମହୋ ମହାନ୍ତଂ ମହଃ ॥

ଅର୍ଥାତ୍ ବିଶୁଦ୍ଧ ବ୍ୟକ୍ତିମାନେ ଯହାଙ୍କ ମହାପ୍ରସାଦ ଉଦରରେ ଓ ମୁଖରେ ପୂର୍ଣ୍ଣ କରି ଏବଂ ହସ୍ତରେ ଗ୍ରହଣ ପୂର୍ବକ ମନ୍ଦିରରୁ ପ୍ରତ୍ୟାବର୍ତ୍ତିନ ସମୟରେ ମାର୍ଗରେ ସ୍ୱୀୟ କଳେବର ସଂସ୍ପୃଷ୍ଟ ପବନଦ୍ୱାରା ମାର୍ଗସ୍ଥ ପତିତ ଜନମାନଙ୍କୁ ପବିତ୍ର କରନ୍ତି ସେହି ଜଗନ୍ନାଥ ଦେବଙ୍କର ତେଜ ସର୍ବଦା ମହାସ୍ତ ନେତ୍ର ଦ୍ୱୟର ମହୋତ୍ସବ ସମ୍ପାଦନ କରୁ ଅର୍ଥାତ୍ ମୁଁ ସର୍ବଦା ଜଗନ୍ନାଥ ଦେବଙ୍କର ରୂପ ଦର୍ଶନ କରୁଥାଏଁ ।

ପୁରୀ ନଗରୀରେ ପ୍ରବେଶ ମାତ୍ରେ ତାହାଙ୍କର ଶରୀର ରୋମାଞ୍ଚିତ ହେଉଥିଲା ଏବଂ ସେ ଆନନ୍ଦରେ ଗଦ୍‌ଗଦ ହେଉଥିଲେ । ମନ୍ଦିରର ସିଂହଦ୍ୱାରରେ ପ୍ରବେଶ କରି ବାଇଶପାହାଚଠାରୁ ପ୍ରଣାମ ଆରମ୍ଭ କରୁଥିଲେ । ମନ୍ଦିର ମଧ୍ୟରେ ଉପସ୍ଥିତ ହୋଇ ଅଷ୍ଟୋତ୍ତରଶତ ଦଣ୍ଡପ୍ରଣାମ କରୁଥିଲେ । ଦଣ୍ଡପ୍ରଣାମ ସମୟରେ ସ୍ୱକବିବକୃତ ଯେଉଁ ପଦାରବିନ୍ଦାଷ୍ଟକ ସେ ପାଠ କରୁଥିଲେ ତାହା ଏହି—

ଧ୍ୟେୟଂ ସଦା ପରିଭବଘ୍ନ ମଭୀଷ୍ଟ ଦୋହଂ
ତୀର୍ଥାସ୍ପଦଂ ଶିବବିରଞ୍ଚିନୁତଂ ଶରଣ୍ୟମ୍ ।

ଭୃତ୍ୟାର୍ତ୍ତିହଂ ପ୍ରଣତପାଳ ଭବାବ୍ଧିପୋତଂ
ବନ୍ଦେ ମହାପୁରୁଷ ତେ ଚରଣାରବିନ୍ଦମ୍ । ୧ ।
ତ୍ୟକ୍ତ୍ୱା ସୁଦୁସ୍ତ୍ୟଜସୁରେପ୍ସିତରାଜ୍ୟଲକ୍ଷ୍ମୀଂ
ଧର୍ମିଷ୍ଠ ଆର୍ଯ୍ୟବଚସା ଯଦଗା ଦରଣ୍ୟମ୍ ।
ମାୟାମୃଗଂ ଦୟିତୟେପ୍ସିତ ମନ୍ୱଧାବଦ୍
ବନ୍ଦେ ମହାପୁରୁଷ ତେ ଚରଣାରବିନ୍ଦମ୍ । ୨ ।
ରେଖାରବିନ୍ଦକଲଶଧ୍ୱଜକାର୍ମୁକାଦି—
ମୀନାତପତ୍ରମକରାଙ୍କୁଶବଜ୍ରଶଙ୍ଖୈଃ ।
ଯଚ୍ଚିହ୍ନିତଂ ପରମ ଯୋଗିଭି ରର୍ଚ୍ଚନୀୟଂ
ବନ୍ଦେ ମହାପୁରୁଷ ତେ ଚରଣାବିନ୍ଦମ୍ । ୩ ।
ଯତ୍ କାଳୀୟୋରଗଫଣାମଣିରତ୍ନଶୋଭି
ଗୋପାଙ୍ଗନାକରସରୋରୁହଯୋଗଯୋଗ୍ୟମ୍
କ୍ରୀଡାକରଂ ବ୍ରଜତ ଗୋକୁଳ ଗୋପରକ୍ଷଂ
ବନ୍ଦେ ମହାପୁରୁଷ ତେ ଚରଣାରବିନ୍ଦମ୍ । ୪ ।
ଗମ୍ଭୀରଭୀମଯମୁନାହ୍ରଦଙ୍ଗ୍ନିତୋୟ—
କାଳୀୟମୂର୍ଦ୍ଧମଣିରତ୍ନବିଶେଷନୃତ୍ୟମ୍ ।
ନାନାବିଧଶ୍ରୁତିଲତୋଦ୍ଭବମୂଲକନ୍ଦଂ
ବନ୍ଦେ ମହାପୁରୁଷ ତେ ଚରଣାରବିନ୍ଦମ୍ । ୫ ।
ଯତ୍ଶୌଚନିଃସୃତସରିତ୍ପ୍ରବରୋଦକେନ
ତୀର୍ଥେନ ମୂର୍ଦ୍ଧ୍ନ୍ୟଧିକୃତେନ ଶିବଃ ଶିବୋଽଭୂତ୍ ।
ଧ୍ୟାତୃର୍ମନଃ କଲୁଷଶୈଳନିସୃଷ୍ଟବଜ୍ରଂ
ବନ୍ଦେ ମହାପୁରୁଷ ତେ ଚରଣାରବିନ୍ଦମ୍ । ୬ ।
ଯତ୍ ପାଦପଦ୍ମରଜସା ସହସାପ୍ୟହଲ୍ୟା
ଶୈଳୀଂ ବିହାୟ ତନୁମାପସ୍ୱଭାବ୍ୟରୂପମ୍ ।

[illegible]ପଦାଶ୍ରୟ ମୁପେତ୍ୟ ବିମୁକ୍ତବନ୍ଧା
ବନ୍ଦେ ମହାପୁରୁଷ ତେ ଚରଣାରବିନ୍ଦମ୍ । ୭ ।

ଉତ୍ତୁଙ୍ଗରଙ୍ଗବଲସଙ୍କଖଚକ୍ରବାଲଂ
ଜ୍ୟୋତ୍ସ୍ନାଭରହତମହଦ୍ଧୃଦୟାନ୍ଧକାରଂ ।
ବଜ୍ରାଙ୍କୁଶଧ୍ୱଜସରୋରୁହଲାଞ୍ଛନାଢ୍ୟଂ
ବନ୍ଦେ ମହାପୁରୁଷ ତେ ଚରଣାରବିନ୍ଦମ୍ । ୮ ।

ସେ ପ୍ରତିହାରୀମାନଙ୍କର ବେତ୍ରାଘାତକୁ ଅତ୍ୟନ୍ତ ପବିତ୍ର ଓ ପାପହାରୀ ମନେ କରୁଥିଲେ । କୌଣସି ଦିନ ତାହାଙ୍କ ପୃଷ୍ଠରେ ବେତ୍ରାଘାତ ହୋଇ ନ ଥିବାରୁ ଦିନେ ସେ ଜଗନ୍ନାଥ ଦେବଙ୍କ ସମ୍ମୁଖରେ କର ଯୋଡ଼ି ପ୍ରାର୍ଥନା କଲେ—"ହେ ପ୍ରଭୋ, ମୁଁ ମହାପାପ କରିଥିବାରୁ ମୋହର ଦେହରେ ପବିତ୍ର ବେତ୍ରାଘାତ ହୋଇ ନାହିଁ । ଏଣୁ ମୋହର ସେହି ସମସ୍ତ ପାପ କିପରି ଦୂର ହେବ ସେଥିପ୍ରତି କୃପା କରିଯାଉ ।" ଏତିକି ଜଣାଇ ଦର୍ଶନଶେଷରେ ଜଗନ୍ନାଥଙ୍କ ସମ୍ମୁଖରୁ ଫେରିବା ସମୟରେ ଜଣେ ପ୍ରତିହାରୀ ସାମନ୍ତଙ୍କ ପୃଷ୍ଠରେ ବେତ୍ରାଘାତ କଲା । ତହୁଁ ସାମନ୍ତ ବୁଲିପଡ଼ି ଆନନ୍ଦରେ ଗଦ୍ଗଦ ହୋଇ ଶିରରେ ହସ୍ତସ୍ଥାପନପୂର୍ବକ "କୃତାର୍ଥୋଽସ୍ମି, ଧନ୍ୟୋଽସ୍ମି" ବୋଲି ଉଚ୍ଚାରଣ କଲେ । ତାହା ଦେଖି ପ୍ରତିହାରୀଗଣଙ୍କର ଓ ଦର୍ଶକ-ବୃନ୍ଦଙ୍କର ବିସ୍ମୟ ଜାତ ହେଲା । ଏଥିରୁ ଚନ୍ଦ୍ରଶେଖରଙ୍କର ଜଗନ୍ନାଥଙ୍କ ପ୍ରତି କିପରି ଭକ୍ତି ଓ ଭଗବାନଙ୍କର ତାହାଙ୍କ ପ୍ରତି କିପରି ଦୟା ଥିଲା ତାହା ସ୍ପଷ୍ଟ ପ୍ରମାଣିତ ହେଉଅଛି ।

ପୁରୀରେ ସ୍ୱକୀୟ ଅବସ୍ଥାନ ଉଦ୍ଦେଶ୍ୟରେ ସିଦ୍ଧାନ୍ତ ଦର୍ପଣରେ ସେ ଯେଉଁ ଶ୍ଳୋକ ରଚନା କରିଅଛନ୍ତି ତାହା ପାଠକମାନଙ୍କ ସମ୍ମୁଖରେ ଉପସ୍ଥାପିତ କରୁଅଛୁ—

ଦାସୀ ପାଦରଜାଂସି ନିର୍ଜର ଶିରୋଧାର୍ଯାଣି ସୂର୍ଯାତ୍ମଜ-
ସ୍ଫୂର୍ଜଦ୍ଦୁର୍ଜୟ ଦୂତଦର୍ପଦମନଂ ଯତ୍ରସ୍ଥିତିଃ ପାପିନାଂ ।
ତତ୍ରସ୍ଥା ଦସମୋର୍ଦ୍ଧ୍ୱ ବୈଭବବତି କ୍ଷେତ୍ରୋତ୍ତମେ ଜାତୁମେ
ନୈବଶ୍ରୀ ପୁରୁଷୋତ୍ତମେ ଶିବତମେ ସ୍ଥାତୁଂ ବିରାଗୋଦୟଃ ।

ଶ୍ଳୋକଟିର ଭାଷା କଠିନ ଥିବାରୁ ତାହାର ଅର୍ଥ ପ୍ରକାଶ କରିବା ଉଚିତ ମନେ କରେଁ । ଯେଉଁଠାରେ ଦାସୀମାନଙ୍କର ପାଦଧୂଳି ଦେବତାମାନଙ୍କର ଶିରୋଧାର୍ଯ ହେଉଅଛି, ଯେଉଁ ପବିତ୍ରକ୍ଷେତ୍ରରେ ପାପିମାନଙ୍କର ଅବସ୍ଥାନ ସୂର୍ଯପୁତ୍ର ଯମଙ୍କ ଦୂତମାନଙ୍କର ଗର୍ବ ଖର୍ବ କରୁଅଛି ଅର୍ଥାତ୍ ଯେଉଁସ୍ଥାନରୁ ଯମଦୂତମାନେ ପାପିମାନଙ୍କୁ ନେଇପାରୁ ନାହାନ୍ତି ଏବଂ ଯେଉଁଠାରେ ଜଗତର ସର୍ବଶ୍ରେଷ୍ଠ ଐଶ୍ୱର୍ଯ (ମୁକ୍ତି) ଅବସ୍ଥାନ କରୁଅଛି; ସେହି କ୍ଷେତ୍ରୋତ୍ତମ ମଙ୍ଗଳମୟ ପୁରୁଷୋତ୍ତମ କ୍ଷେତ୍ରରେ ବାସ କରିବାକୁ କଦାପି ମୋହର ବିରାଗୋଦୟ ନ ହେଉ ଅର୍ଥାତ୍ ସର୍ବଦା ଅନୁରାଗର ଉଦୟ ହେଉ ।

ସାମନ୍ତ ପ୍ରତିବର୍ଷ ପୁରୀରେ ମକରବେଢ଼ା ଦର୍ଶନ କରିବାକୁ ବାହାର ତତ୍ପୂର୍ବଦିନ ସେଠାରେ ଉପସ୍ଥିତ ହେଉଥିଲେ । ଶାସ୍ତ୍ରରେ ଅଛି— 'ଯେଉଁମାନେ ମକରବେଢ଼ାରେ ଉପସ୍ଥିତ ହୋଇ ଦର୍ଶନ କରନ୍ତି ସେମାନଙ୍କ ପିତୃଲୋକବୃନ୍ଦଙ୍କର ସଦ୍ଗତି ହୁଏ ।' ବର୍ଷେ ସାମନ୍ତ ନିଜର ଅସ୍ୱାସ୍ଥ୍ୟ ବଶତଃ ଯାଇ ନ ପାରି ଜ୍ୟେଷ୍ଠ ପୁତ୍ରଙ୍କୁ ପୁରୀ ଯିବାକୁ ଆଦେଶ ଦେଲେ । ମାତ୍ର ପୁତ୍ର ବିଦେଶଗମନରେ ଭୀତ ହେଉଥିବାରୁ କିଛି ବିବେଚ୍ଚ ନ କରି ଆପଣାର ଅସ୍ୱୀକାର ଗୃହମଧ୍ୟରୁ ପିତାଙ୍କ ନିକଟକୁ କହି ପଠାଇଲେ । ତହୁଁ ସାମନ୍ତ ଯଷ୍ଟି ଅବଲମ୍ବନପୂର୍ବକ ଗୃହମଧ୍ୟରୁ ବାହାରିପଡ଼ି କହିଲେ "ପୀତବାସ, ତେମେ ପଦ୍ୟକାବ୍ୟ ପଢ଼ିଛ ଏବଂ ଜାଣିଛ ଯେ—

ଅନାଜ୍ଞପ୍ତୋଽପି କୁରୁତେ ପିତୃବାକ୍ୟଂ ସ ଉତ୍ତମଃ,
ଉକ୍ତୋଽପି କୁରୁତେ ଯସ୍ତୁ ସ ମଧ୍ୟମ ଉଦାହୃତଃ,
ଉକ୍ତୋଽପି କୁରୁତେ ନୈବ ସ ପୁତ୍ର ମଳ ଉଚ୍ୟତେ ।

ମୁଁ କହୁଛି ଯାଅ, ଜଗନ୍ନାଥଙ୍କୁ ଦର୍ଶନ କରିବ ଏବଂ ପିତୃଲୋକଙ୍କ କାର୍ଯ୍ୟ କରିବ । ତୁମର କି ଗୁରୁତର କାର୍ଯ୍ୟ ଅଛି ଯେ ଅସ୍ୱୀକୃତ ହେଲ ? ତୁମର ଅସ୍ୱାସ୍ଥ୍ୟ ଥିବାର ମୁଁ ତ କିଛି ଦେଖୁନାହିଁ । ହଉ, ମୁଁ ଯାଉଛି ।" ଏହା କହି ଶିବିକାରୋହଣରେ ପୁରୀ ଯାତ୍ରା କଲେ ।

ପରେ ସାମନ୍ତ ପୁରୀ ଯିବା ସମୟରେ ନିଜ ଗୃହରୁ ବହିର୍ଗତ ହୋଇ ସମାନ ଦୂରରେ ପାଦନିକ୍ଷେପପୂର୍ବକ ଗମନ କରିବାକୁ ଲାଗିଲେ । ମାର୍ଗରେ ସ୍ନାନ ଭୋଜନାଦି କାର୍ଯ୍ୟ ଉଦ୍ଦେଶ୍ୟରେ ଯେତେବେଳେ ସେ ଗ୍ରାମ ମଧ୍ୟକୁ ଯାଉଥାନ୍ତି ସେତେବେଳେ ଗମନମାର୍ଗର ସେହି ସ୍ଥାନରେ ଗୋଟିଏ ଚିହ୍ନ ଦେଇଥାନ୍ତି । ଭୋଜନାଦି କାର୍ଯ୍ୟ ଶେଷରେ ପୁନଶ୍ଚ ଯେତେବେଳେ ଚାଲିବାକୁ ଆରମ୍ଭ କରନ୍ତି ସେତେବେଳେ ସେ ସେହି ଚିହ୍ନଠାରୁ ପାଦ ନିକ୍ଷେପ କରନ୍ତି । ଏହିପରି କ୍ରମରେ ରାସ୍ତାରେ ତିନିଦିନ ଅତୀତ ହେଲା । ଚତୁର୍ଥ ଦିନ ସାମନ୍ତ ପୁରୀରେ ଉପସ୍ଥିତ ହୋଇ ଏକବାରେ ମନ୍ଦିରର ସିଂହଦ୍ୱାର ପର୍ଯ୍ୟନ୍ତ ଗମନ କରି ପତିତପାବନଙ୍କ ଦର୍ଶନ ଶେଷରେ ସଙ୍ଗରେ ଥିବା ବନମାଳୀ ନନ୍ଦଙ୍କୁ କହିଲେ—"ନନ୍ଦେ, ଆମଘରଠାରୁ ସିଂହଦ୍ୱାର ପର୍ଯ୍ୟନ୍ତ ମୋ ପାହୁଣ୍ଡରେ ୧୫୧୨୦୦ ପାହୁଣ୍ଡ ହେଲା । ତାଳଭଙ୍ଗା କୋଶରେ ଏହା ସତାଇଶ କୋଶ ହେଲା ।" ନନ୍ଦେ କହିଲେ—"ଦୋଉ ତ ଆମ୍ଭମାନଙ୍କ ସଙ୍ଗରେ କଥାବାର୍ତ୍ତା କରି ଆସୁଥିଲ ଏବଂ ବାଟରେ ରୋଷେଇବାସ ଆଦି ବହୁତ କାର୍ଯ୍ୟ ହେଉଥିଲା; ଏ ହିସାବ ରଖିଲ କିପରି ?" ସାମନ୍ତ କହିଲେ, "ମୁଁ ପଦ ମନେ ମନେ ହିସାବ କରି ଗଣି ଗଣି ଆସୁଥିଲି । ଯେତେବେଳେ ବାଟରେ ଚିହ୍ନ ଦେଇ ମୁଁ ଗ୍ରାମ ମଧ୍ୟକୁ ଯାଏଁ ତେମେ କିଣ ଦେଖି ନାହିଁ ? ଆଜି ମଧ୍ୟ ଏଥର ମୁଁ ଆମ

ଘରଠାରୁ ସମାନ ଦୂରରେ ପାଦ ପକାଇ ଆସୁଥିଲି ।" ଏହାଶୁଣି ନନ୍ଦେ ବିସ୍ମିତ ହୋଇଗଲେ । ଏଥିରୁ ସାମନ୍ତଙ୍କର ଗଣନାଶକ୍ତି ଓ ପ୍ରତିଭା ପାଠକମାନେ ସହଜରେ ଉପଲବ୍ଧି କରି ପାରିବେ ।

ସାମନ୍ତ ଫଳିତ ଜ୍ୟୋତିଃଶାସ୍ତ୍ରରେ ଅଗାଧ ପାଣ୍ଡିତ୍ୟ ଲାଭ କରିଥିଲେହେଁ ସ୍ୱୀୟ ବିଦ୍ୟାର ଉପରେ ତାହାଙ୍କର ସମ୍ପୂର୍ଣ୍ଣ ବିଶ୍ୱାସ ନ ଥାଏ । ସେ ଯଦୁନାଥ ଓ ବାସୁଦେବ ନାମକ ନିଜ ପୁତ୍ରଦ୍ୱୟଙ୍କର ଆୟୁର୍ଦାୟ ସାଧନ କରି ରଖିଥିଲେ । ମାତ୍ର ତାହାଙ୍କ ଗଣନାର ନିର୍ଦ୍ଦିଷ୍ଟ ଦିବସର ଅନେକ ଦିନ ପୂର୍ବରୁ ଉକ୍ତ ପୁତ୍ରଦ୍ୱୟ ଏକ ଦିନ ମାତ୍ର ବ୍ୟବଧାନରେ ପରଲୋକ ପ୍ରାପ୍ତ ହେବାରୁ ଫଳିତ ଜ୍ୟୋତିଷ ଉପରେ ସାମନ୍ତଙ୍କର ଏକପ୍ରକାର ଅବିଶ୍ୱାସ ହୋଇଗଲା । ତେଣୁ ସେ ବହୁ ଯତ୍ନରେ ନିଜର ଆୟୁଷ ଗଣନା କରିଥିଲେହେଁ ଗଭୀର ସନ୍ଦେହରେ ପଡ଼ିଥିଲେ । ମୁଁ ପୂର୍ବରୁ ଲେଖିଅଛି ଯେ ପୁରୀରେ ଦେହତ୍ୟାଗ କରିବାକୁ ସେ ଚିରକାଳରୁ ବାଞ୍ଛାକରି ସ୍ୱରଚିତ ସିଦ୍ଧାନ୍ତଦର୍ପଣର ସର୍ବଶେଷ ଶ୍ଳୋକରେ ଭଗବାନଙ୍କୁ ପ୍ରାର୍ଥନା କରି ନିଜର ଅଭିଳାଷ ପ୍ରକାଶ କରିଅଛନ୍ତି । ତାହା ଏହି—

ବେଲୋଦ୍ୟଦ ସିତଗୋତ୍ରେ ସୁତ୍ରାମାଦସ୍ତ୍ରବାବଲୀପାତ୍ରେ,
ଗାତ୍ରଂ ମମ ସୁପବିତ୍ରେ ନିପତତୁ ପୁରୁଷୋତ୍ତମ କ୍ଷେତ୍ରେ ।

ଅର୍ଥାତ୍ ସମୁଦ୍ରତୀରସ୍ଥ ଯେଉଁ କ୍ଷେତ୍ରରେ ନୀଳାଚଳ ବିଦ୍ୟମାନ ଏବଂ ଯେ ଇନ୍ଦ୍ରାଦି ଦେବତାମାନଙ୍କର ସ୍ତୁତିଭାଜନ ଅଟେ, ସେହି ସୁପବିତ୍ର ପୁରୁଷୋତ୍ତମ କ୍ଷେତ୍ରରେ ମୋହର ଶରୀର ପତିତ ହେଉ ।

ସାମନ୍ତଙ୍କର ଗଣନାନୁସାରେ ଯେତେବେଳେ ସ୍ୱୀୟ ଦେହ-ତ୍ୟାଗର ସମୟ ନିକଟବର୍ତ୍ତୀ ହୋଇଗଲା ସେତେବେଳେ ସେ ପୁରୀ ଯିବାକୁ ବ୍ୟାକୁଳ ହୋଇପଡ଼ିଲେ । ଗଭର୍ଣ୍ଣମେଣ୍ଟରୁ ଯେଉଁ ଟ ୫୦୯ ମାସିକ ବୃତ୍ତି ମଞ୍ଜୁର ହୋଇଥିଲା ତାହା କେଉଁ ଟ୍ରେଜେରୀରୁ ନେଲେ

ସାମନ୍ତଙ୍କୁ ସୁବିଧା ହେବ ବୋ'ଲି ପ୍ରଥମେ ସରକାରରୁ ପ୍ରଶ୍ନ କରା ଯାଇଥିଲା । ସାମନ୍ତ ଭବିଷ୍ୟତରେ ପୁରୀରେ ଅବସ୍ଥାନ କରିବାର ସଂକଳ୍ପ କରିଥିବାରୁ ପୁରୀ ଟ୍ରେଜେରୀରୁ ଟଙ୍କା ଗ୍ରହଣ କରିବାକୁ ସେତେବେଳେ ଉତ୍ତର ଦେଇଥିଲେ । ସରକାରରୁ ଆସିଥିବା ପତ୍ରର ପ୍ରତିଲିପି ଏହି,—

Office of the Accountant General,
Bengal, The Treasury Calcutta,
the 11th January /04 No. P/734

From
The Accountant General, Bengal

To
The Collector of Cuttack.

Sir,

His Majesty's Secretary of State for India in Despatch No. 197Finl: dated 20th November 1903, having sanctioned the grant of a literary pension of Rs. 50/- a month to Mahamahopadhyaya Chandra Shekhar Singh Hari Chandan Mahapatra Samant of Khandpara, I have the honour to request that you will be so good as to furnish me with the mariginally noted particulars of him to enable me to issue a permanent Pay order for the payment of his pension.

1. Personal mark
2. Height
3. Date of birth
4. Residence
5. Sect
6. Place of payment

I have &c.,
Sd/- Chuni Lal,
Assistant Accountant Genl,
Bengal.

ସାମନ୍ତଙ୍କର ପୁରୀ ପ୍ରୟାଣର କିଛି ଦିନ ପୂର୍ବରୁ [illegible] ଖଣ୍ଡେ ପତ୍ର ଆସିଥିଲା ଯେ ଯଦି ଏକମାସ ମଧ୍ୟରେ ସାମନ୍ତ ନିଜେ [illegible] ଟଙ୍କା ଗ୍ରହଣ ନ କରିବେ ତେବେ ତାହା 'ଲୋପ' ହୋଇଯିବ । ଏହି ପତ୍ର ପାଇବାମାତ୍ରେ ସାମନ୍ତ ଜଗନ୍ନାଥଙ୍କର ପ୍ରସାଦଲବ୍ଧ ସଦୃଶ ମନେକଲେ । କାରଣ ତାହାଙ୍କର ଅଭିଳାଷ ପୂରଣରେ ପରିବାରବର୍ଗ ଘୋର ଅନ୍ତରାୟ ହୋଇଥିଲେ । ପତ୍ର ପାଇ ସମସ୍ତଙ୍କୁ କହିଲେ, "ମୁଁ ନ ଗଲେ ଟଙ୍କାଗୁଡ଼ାକ ନଷ୍ଟ ହୋଇଯିବ; ମୋର ତ ଯିବାର ନିଶ୍ଚୟ ହୋଇଅଛି; ତେବେ ପୂର୍ବରୁ ନ ଯିବି କାହିଁକି ?" ଟଙ୍କା ପାଇବା କଥା ଶୁଣି ପରିବାରର ସମସ୍ତେ ସ୍ୱୀକୃତ ହେବାରୁ ସାମନ୍ତଙ୍କ ଶୁଭପ୍ରୟାଣର ଉଦ୍‌ଯୋଗ ହେଲା । ସେ ରାଜା ନଟବର ସିଂହଙ୍କଠାରୁ ବିଦାୟ ଗ୍ରହଣ କରିବାକୁ ଯାଇ କହିଲେ—"ମୁଁ ଚଉଦ କୋଶ ଛାଡ଼ୁଛି, ଅଳ୍ପଦିନପରେ ଚଉଦପା ଛାଡ଼ିବି" । ଏହା କହି ବିଦାୟ ଗ୍ରହଣ କରି ଆସିଲେ । ନଟବର ଉକ୍ତ ବାକ୍ୟର ଅର୍ଥ ବୁଝି ନ ପାରିବାରୁ ଜଣେ ପଣ୍ଡିତ ତାହାଙ୍କୁ ବୁଝାଇଦେଲେ ଯେ ସାମନ୍ତ ଚଉଦ କୋଶ ରାଜ୍ୟକୁ ଛାଡ଼ି ଅଳ୍ପଦିନ ପରେ ପୁରୀରେ ଚଉଦପା ଅର୍ଥାତ୍ ଶରୀର ଛାଡ଼ିବେ ବୋଲି କହିଗଲେ । ତହୁଁ ନଟବର କହିଲେ, "ସେ କଣ ଏହା ଜାଣିଛନ୍ତି ? ଅଚ୍ଛା ଫଳରେ ତ ଜଣାଯିବ ।"

ସାମନ୍ତଙ୍କ ଯାତ୍ରାର ଆୟୋଜନ ହେବାରୁ ନାନାସ୍ଥାନରୁ ଶତ ଶତ ଲୋକ ଆସି ରୁଣ୍ଡହୋଇ ଦୁଃଖ ପ୍ରକାଶ କରିବାକୁ ଲାଗିଲେ ଏବଂ ଜଣ ଜଣଙ୍କଠାରୁ ସାମନ୍ତ ଶେଷ ବିଦାୟ ଗ୍ରହଣ କଲେ । ଜ୍ୟେଷ୍ଠ ପୁତ୍ର ଚକ୍ରଧର କାର୍ଯ୍ୟକ୍ଷମ ଥିବାରୁ ତାହାଙ୍କ ଉପରେ ଗୃହଭାର ଅର୍ପଣ କଲେ । ଯେତେବେଳେ ଚନ୍ଦ୍ରଶେଖର ଅଖଣ୍ଡତିଳକବିଭୂଷିତ ହୋଇ ତୁଳସୀମାଳା ଗ୍ରହଣପୂର୍ବକ ଯଷ୍ଟି ଅବଲମ୍ବନରେ ଯୁଧିଷ୍ଠିରଙ୍କତୁଲ୍ୟ ମହାଯାତ୍ରା ଉଦ୍ଦେଶ୍ୟରେ ଘରୁ ବାହାରି ପଡ଼ିଲେ ସେତେବେଳେ ପୁତ୍ରକଳତ୍ର ଓ ଦାସଦାସୀ

ସମନ୍ତଙ୍କର ନେତ୍ର ଅଶ୍ରୁପୂର୍ଣ୍ଣ ହୋଇଗଲା । ସେତେବେଳେ ସେ ଉପିଚରନ୍ଦ ନାମ ସ୍ୱପୁତ୍ରଙ୍କୁ କହିଲେ, "ପୀତବାସ, ମୁଁ ଯାଉଛି, ତୁମ୍ଭେମାନେ ପରେ ଯିବ, ବର୍ତ୍ତମାନ ଥାଅ । ମାତ୍ର ଗଦାଧର ଉହପରକାଳକୁ ସଙ୍ଗରେ ଯାଉଛନ୍ତି" । ଏହାର ମର୍ମ ସେ ସମୟରେ କେହିଁ ସମ୍ପୂର୍ଣ୍ଣ ବୁଝିପାରିଲେ ନାହିଁ । ସାମନ୍ତ ଯିବା ପୂର୍ବରୁ ସ୍ୱୀୟ ଶୟନକକ୍ଷର କାନ୍ଥରେ ଏହି ଶ୍ଳୋକଟି ସ୍ୱୟଂ ରଚନା କରି ଲେଖିଦେଇଥିଲେ ।

ପ୍ରାସାଦୋପରିବୃଦ୍ଧଗୃଧ୍ରପତନଂ ପାତୋ ବମାନେ ଶୟୋ—
ଷ୍ଟଣ୍ଡାଳେ ର୍ବୃଷମାରଣଂ ନରଶବ୍ଦୃତ୍ପାତୋ ନବେଦ୍ୟେଶୟୋଃ ।
ମୀନୋଲ୍ଲିଣ୍ଡ୍ର ମହା ପ୍ରପାନକ ଜଗନ୍ନାଥାର୍ପଣଂ ପତ୍ପୂରେ
ବର୍ଷାନ୍ତଃ ସମବୃନ୍ଦହାଦ୍ଭୂତଗଣଃ ତନ୍ନାସ୍ତି କିଂ ମଙ୍ଗଳମ୍ ॥

ଏହି ଶ୍ଳୋକଲିଖିତ ଘଟନ ଗୁଡ଼ିକ ବର୍ଷକ ମଧ୍ୟରେ ଖଣ୍ଡପଡ଼ାରେ ଘଟିଥିଲା । ତନ୍ମଧ୍ୟ ବଡ଼ଦେଉଳ ଉପରେ ଗୋଟାଏ ବୁଢ଼ା ଶାଗୁଣା ବସିଥିଲା ଏବଂ ଚନ୍ଦନଯାତ୍ରା ସମୟରେ ଗୋପିନାଥ ଦେବଙ୍କ ବିଜେ ପ୍ରତିମା ବିମାନ ସହିତ ତଳେ ପଡ଼ି ଯାଇଥିଲେ । ଗ୍ରାମ ପରମଗୁରୁଙ୍କ ପ୍ରଦତ୍ତ ଅଣ୍ଡିରା ବାଛୁରୀଟିଏ ସାମନ୍ତ ପାଣ୍ଡ କରୁଥିଲେ । ସେ ଥରେ ଗ୍ରାମ ପାଇକବିନାମକ ରଜାଙ୍କର ଭୃତ୍ୟକୁ ମାରି ଗୋଡ଼ାଇବାରୁ ବାଲକ ବୃଷଟି ହାଡ଼ହାତରେ ମରି ଯାଇଥିଲା । ସଇତ ପାଢ଼ୁଣୀ ପଣ୍ଡା ବ୍ରାହ୍ମଣର ନାତୁଣୀ ଗୁଣ୍ଡିଗୃହଦ୍ୱାର ମଧ୍ୟରେ ମଳତ୍ୟାଗ କରିଥିଲା ଏବଂ ରଥଉପରେ ପ୍ରସାଦ ଅଧରପଣାମଧ୍ୟରୁ କେଉଣ୍ଡିମାଛ ବାହାରିଥିଲା । ଏହି ସମସ୍ତ ଦେଖି ସାମନ୍ତ ଉକ୍ତ ଶ୍ଳୋକ ରଚନା କରିଥିଲେ । ମାତ୍ର ଶ୍ଳୋକଟି ଗୃହମଧ୍ୟସ୍ଥ କାନ୍ଥରେ ଲିଖିତ ଥିବାରୁ କେହି ଦେଖି ନ ଥିଲେ । ଯେତେବେଳେ ସାମନ୍ତଙ୍କର ଅନ୍ତ୍ୟେଷ୍ଟିକ୍ରିୟା ଉଦ୍ଦେଶ୍ୟରେ ଗୃହଟିକୁ ଲିପାହେଲା ସେତେବେଳେ ପୀତବାସ ସାମନ୍ତ ସେହି ଶ୍ଳୋକଟି ଦେଖି ଲେଖିପକାଇଲେ ଏବଂ ତାହାର ଅର୍ଥ ବୁଝିନେଲେ ।

ସାମନ୍ତ ମୃତ୍ୟୁର ଦ ୧୬ ନ ପୂର୍ବରୁ ଅପରାହ୍ନରେ ମଧ୍ୟମ ପୁତ୍ର ଗଦାଧରଙ୍କ ସହ ଶିବିକାରୋହଣପୂର୍ବକ ଯାଉ ଯାଉ ବାଟରେ ଅନେକ ଥର ଅଟକିଗଲେ ପୁତ୍ରଙ୍କୁ କହୁଥାନ୍ତି, "ଗଦାଧର, ସବାରି ରହିଲା କାହିଁକି ?" ଏପରି ପ୍ରଶ୍ନର କାରଣ ତଦୀୟ ବ୍ୟାକୁଳତା । କିଛି ବିଘ୍ନ ଉପସ୍ଥିତ ହେଲେ କାଳେ ପୁରୀରେ ପହଞ୍ଚିବା ପୂର୍ବରୁ ମାର୍ଗରେ ମୃତ୍ୟୁ ହୋଇପିବ, ଏହି ଅଶଙ୍କା ତାହାଙ୍କର ବରାବର ରହୁଥାଏ । ତେଣୁ ପୁତ୍ରଙ୍କୁ କହୁଥାନ୍ତି,"ଗଦାଧର, ବେହେରାମାନଙ୍କୁ କିଛି ପୁରସ୍କାର ଯାଚଦିଅ, ସେମାନେ ମୋତେ ଶୀଘ୍ର ପୁରୀରେ ପହଞ୍ଚାଇଦେଲେ ତାହା ପାଇବେ ।" ସେତେବେଳେ ସେ କହୁଥିଲେ,"'ଶ୍ରେୟାଂସି ବହୁବିଘ୍ନାନି' କାଳେ କୌଣସି ବିଘ୍ନ ଉପସ୍ଥିତ ହୋଇପିବ, ବେଗେ କମିତ ପୁରୀରେ ପହଞ୍ଚିପିବା ।" ଯାହାହେଉ ନିର୍ବିଘ୍ନରେ ସାମନ୍ତ ପୁରୀକ୍ଷେତ୍ରରେ ଉପସ୍ଥିତ ହୋଇଗଲେ ଏବଂ ନୀଳଚକ୍ରକୁ ଚାହିଁଦେଇ ପୁଲକପୂର୍ଣ୍ଣ ଗାତ୍ରରେ ମହାନନ୍ଦ ଉପଭୋଗ କରିବାକୁ ଲାଗିଲେ । ସେଥର ନିତାନ୍ତ ଦୁର୍ବଳ ହୋଇଯାଇ ଥିବାରୁ ସାମନ୍ତ ପୁତ୍ରଙ୍କର ହସ୍ତାବଲମ୍ବନପୂର୍ବକ ମନ୍ଦିର ମଧ୍ୟରେ ପ୍ରବେଶ କରି ଗରୁଡ଼ ସ୍ତମ୍ଭ ନିକଟରେ ଜଗନ୍ନାଥ ଦେବଙ୍କୁ ଦର୍ଶନ କଲେ ଏବଂ ଦଶଗୋଟି ଦଣ୍ଡ ପ୍ରଣାମାନନ୍ତର ଭିତରକୁ ଯାଇ ଜଗଦୀଶଙ୍କ ସମ୍ମୁଖରେ ଦଣ୍ଡାୟମାନ ହେଲେ । ସେଠାରେ ବଦ୍ଧକରପୁଟ ହୋଇ ଜଣାଇଲେ, "ପ୍ରଭୋ, ଏ ମହାପାତକୀ ସମ୍ମୁଖରେ ଉପସ୍ଥିତ ହୋଇଅଛି, ଏ ଜନ୍ମରେ ଏତିକି ମାତ୍ର ଦର୍ଶନ କରି ବିଦାୟ ନେଉଅଛି । ଏ ନାରକୀ ପ୍ରତି କୃପା କରି ଏଠାକୁ ଅଣିଥିବାରୁ କୃତାର୍ଥ ହୋଇଅଛି ।" ଏହିପରି ନାନା ପ୍ରକାର ନିବେଦନ କରି ଏବଂ ସ୍ତୁତି ସ୍ତୋତ୍ରାଦି ପାଠପୂର୍ବକ ଦର୍ଶନ ସମାପନ କଲେ ଏବଂ ଅତି କଷ୍ଟରେ ବେଢ଼ା ପରିକ୍ରମ କରି ବସାକୁ ପ୍ରତ୍ୟାବୃତ୍ତ ହେଲେ । ଯେଉଁଠାରେ ନୀଳଚକ୍ର ଦୃଷ୍ଟ ହେଉଥିବ, ସେହିଠାରେ ବସା କରିବାକୁ ପୂର୍ବରୁ ପୁତ୍ରଙ୍କୁ ଆଦେଶ ଥିବାରୁ ତଦନୁସାରେ ମାର୍କଣ୍ଡ ଶାହୀରେ ଥିବା

ପାରିକୁଦ ରାଜାଙ୍କର ବସା ନିର୍ଦ୍ଦିଷ୍ଟ ହୋଇଥିଲା । ବସାକୁ ଆସିବାପରେ ସାମନ୍ତଙ୍କର ଦେହ କିଞ୍ଚିତ୍ ଅସୁସ୍ଥ ହେଲା ଏବଂ କ୍ରମେ ମୃଦୁଜ୍ୱର ଶରୀରକୁ ଆକ୍ରମଣ କଲା । ସେଥର ଆଉ ଜ୍ୱର ଛାଡ଼ିଲା ନାହିଁ । ଔଷଧ ସେବନ କରିବାକୁ ପୁତ୍ର ପ୍ରାର୍ଥନା କରିବାରୁ ସାମନ୍ତ କହିଲେ, "ଆଉ କାହିଁକି ଔଷଧ କରିବ, ଏହା ତ ନିଦାନ ସମୟ; ତେବେ ତୁମ୍ଭର ମନ ବୋଧ ହୋଇଯାଉ, ଯାହା କରିବାର କର ।" ତେଣୁ ଗଦାଧର ବହୁ ଔଷଧର ପ୍ରୟୋଗ କଲେ, ମାତ୍ର ସମସ୍ତ ବ୍ୟର୍ଥ ହୋଇଗଲା । ମୃତ୍ୟୁର ଦୁଇଦିନ ପୂର୍ବରୁ ସାମନ୍ତଙ୍କର ହିକ୍କା ଜାତ ହେବାରୁ ସେ ପୁତ୍ରଙ୍କୁ କହିଲେ, "ଦେଖ, ଏହା ଯାମଳ ହିକ୍କା ଉଠିଲା, ବଡ଼ ଅସାଧ୍ୟ । ମାଧବ କର ନିଦାନ ଦେଖ, ଏହାର ଲକ୍ଷଣ କଅଣ ?" ତତ୍‌କ୍ଷଣାତ୍ ଗଦାଧର ଗ୍ରନ୍ଥ ଫିଟାଇ ଦେଖିଲେ, ସେହି ଲକ୍ଷଣଗୁଡ଼ିକ ଦୃଷ୍ଟ ହେଲା । ପୁନଶ୍ଚ ଗଦାଧର ଯଥାବିଧି ଚିକିତ୍ସା କରିବାକୁ ଅନୁମତି ପ୍ରାର୍ଥନା କରିବାରୁ ସାମନ୍ତ ଉତ୍ତର ଦେଲେ "ଏ ରୋଗ ତ ଅସାଧ୍ୟ, ତଥାପି ଶାସ୍ତ୍ରରେ ଅଛି—ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଚିକିତ୍ସା କର୍ତ୍ତବ୍ୟ, ତେଣୁ ମୁଁ ମନା କରୁ ନାହିଁ ।" ପୁତ୍ର ଡାକ୍ତରଙ୍କୁ ଡକାଇ ମଧ୍ୟ ଦେଖାଇଲେ, ମାତ୍ର ଫଳ କିଛି ହେଲା ନାହିଁ । ପରଦିନ ଏକାଦଶୀରେ ଘନ ଘନ ଶ୍ୱାସ ବହିବାକୁ ଲାଗିଲା ଏବଂ ସମସ୍ତ ଦିନଟି ସେହିପରି ଅତିବାହିତ ହେଲା । ତତ୍ପର ଦ୍ୱାଦଶୀ ଦିନ ସାମନ୍ତ କହିଲେ, "ଗଦାଧର, ତୁମ୍ଭେ ସ୍ନାନ କଲଣି କି ନାହିଁ ? ନ କରିଥିଲେ ଶୀଘ୍ର ସ୍ନାନ-କରି ମୋତେ ଶୁଦ୍ଧ ଜଳରେ ସ୍ନାନ କରାଇ ପରିଷ୍କୃତ କରାଇଦିଅ ।" ପୁତ୍ର କହିଲେ, "ଜ୍ୱରରେ କପରି ସ୍ନାନ କରାଇ ଦେବି; ଚିକିତ୍ସା ହେଉଅଛି, ସ୍ନାନ କରାଇ ଦେଲେ ମୋତେ ଲୋକେ କଣ କହିବେ ?" ସାମନ୍ତ କହିଲେ, "ମୃତ୍ୟୁ ସକାଶ ଲୋକେ ଜ୍ୱରକୁ ଭୟ କରନ୍ତି । ମୁଁ ତ ମୃତ୍ୟୁକୁ ବରଣ କରି ଏଠାକୁ ଆସିଅଛି, ଆଜି ତ ମୋହର ମୃତ୍ୟୁ ହେବ, ଆଉ ଜ୍ୱରକୁ ଭୟ କଣ ? ମୁଁ ଅପରିଷ୍କୃତ ଭାବରେ ଅସ୍ନାନଆ ହୋଇ ମରିବାକୁ

ତେବେ କଣ ଇଚ୍ଛା କର ?" ଏହା ଶୁଣିବା ମାତ୍ରେ ଗଦାଧର ଶୀଘ୍ର ସ୍ୱୟଂ ସ୍ନାନକରି ପିତୃଦେବଙ୍କୁ ତୁଳସୀ ଚଉରା ମୂଳକୁ ନେଇ ସ୍ନାନ କରାଇ ଦେଲେ ଏବଂ ପରିଷ୍କୃତ ବସ୍ତ୍ରରେ ଦେହ ପୋଛିଦେଇ କୌଷେୟ ବସ୍ତ୍ର ପରିହିତ କରାଇଦେଲେ । ତତ୍ପରେ ତିଳକ ଗ୍ରହଣ କରାଇ ଦେଇ ଗଳାରେ ତୁଳସୀମାଳା ପକାଇ ଦେଲେ । ସେତେବେଳେ ସାମନ୍ତ କ୍ଷୀଣ ସ୍ୱରରେ 'ଜଗନ୍ନାଥ' 'ଜଗନ୍ନାଥ' ବୋଲି ଉଚ୍ଚାରଣ କରୁଥିଲେ । ତିଳକ ଗ୍ରହଣ ପ୍ରଭୃତି କରାଉଥିବା ସମୟରେ ସାମନ୍ତ ଦୁଇହସ୍ତ ଭୂମି ଉପରେ ଅର୍ପଣ କରି ବସିଥିଲେ । ହଠାତ୍ ତାହାଙ୍କ ଦକ୍ଷିଣ ହସ୍ତ ଟିକିଏ ସଙ୍କୁଚିତ ହୋଇ ଶରୀର ସେହି ଦିଗକୁ ଟଳି ପଡ଼ିବାରୁ ପୁନି ଧରି ପକାଇ ପ୍ରଶ୍ନ କଲେ, "କଣ ହେଲା କି ?" ଆଉ ଉତ୍ତର ମିଳିଲା ନାହିଁ । ତହୁଁ ଗଦାଧର ପିତାଙ୍କୁ ଗୃହକୁ ନେଇଯାଇ ଶଯ୍ୟାରେ ଶୟନ କରାଇଦେଲେ ; ଗଦାଧର ମୂର୍ଚ୍ଛାଭଙ୍ଗର ଉପଚାରମାନ କରି ମହାପ୍ରସାଦ ଜଳ ଟିକିଏ ତୁଣ୍ଡରେ ଦେବାରୁ ତାହା ଭିତରକୁ ଚାଲିଗଲା ଏବଂ ମହାପୁରୁଷଙ୍କର ଅମର ଆତ୍ମା ବୈକୁଣ୍ଠ ଧାମକୁ ଚାଲିଗଲା । ତତ୍କ୍ଷଣାତ୍ ମନବୋଧ ହେବାପାଇଁ ଡାକ୍ତର ଡକାଇ ଦେଖାଗଲା ଯେ ଆଉ ପ୍ରାଣବାୟୁ ନାହିଁ ।

ଭକ୍ତ-ବାଞ୍ଛା-କଳ୍ପତରୁ ପରମକାରୁଣିକ ଭଗବାନଙ୍କର ଅପାର କରୁଣାରୁ ଭକ୍ତ ସାମନ୍ତଙ୍କର ବହୁକାଳର ଅଭୀଷ୍ଟ ଶ୍ରୀ କ୍ଷେତ୍ରରେ ଗାତ୍ରପତନ-ଦ୍ୱାରା ସିଦ୍ଧ ହେଲା ଏବଂ ଭବିଷ୍ୟଦ୍‌ବାଣୀ ସାର୍ଥକତା ଲାଭ କଲା । ୧୯୦୪ ମସିହା ଜ୍ୟୈଷ୍ଠମାସ ( ଅଧିମାସ ) କୃଷ୍ଣପକ୍ଷ ଦ୍ୱାଦଶୀ ପୂର୍ବାହ୍ଣ ଚତୁର୍ଦ୍ଦଶ ଦଣ୍ଡ ସମୟରେ ମହାତ୍ମାଙ୍କର ଦେହତ୍ୟାଗ ହୋଇଥିଲା । ଅକସ୍ମାତ୍ ଏ ସମ୍ବାଦ ପୁରୀରେ ଖେଳିଗଲା । ତତ୍ପୂର୍ବରୁ ସାମନ୍ତଙ୍କର ସେଠାରେ ଅବସ୍ଥାନ ହେଉଥିବାର କେହି ଜାଣି ନ ଥିଲେ, କାରଣ ମୃତ୍ୟୁର ୧୩ ଦିନ ମାତ୍ର ପୂର୍ବରୁ ସାମନ୍ତ ପୁରୀରେ ଉପସ୍ଥିତ ହୋଇଥିଲେ । ଏହି ଘୋର ଦୁଃସମ୍ବାଦରେ

ପୁରୀବାସୀ ସାମନ୍ତଙ୍କୁ ଙ୍କିଏ ଦେଖି ପାର ନ ଥିବାରୁ ଅତ୍ୟନ୍ତ ଅନୁତପ୍ତ ହୋଇଥିଲେ । ନିରାଡ଼ମ୍ବରପ୍ରିୟ ମହାତ୍ମା ନିରାଡ଼ମ୍ବର ଭାବରେ ଚାଲିଗଲେ । ସେ ତାଙ୍କ ଜୀବନରେ ଆଡ଼ମ୍ବର କଣ ଜାଣି ନ ଥିଲେ ।

ସାମନ୍ତଙ୍କର ଅନ୍ତ୍ୟେଷ୍ଟିକ୍ରିୟା ପୁରୀ ଓ ଖଣ୍ଡପଡ଼ା ଉଭୟନ ସମାରୋହର ସହିତ ହୋଇଥିଲା । ସେଥିରେ ଯେଉଁ ଅର୍ଥ ବ୍ୟୟିତ ହୋଇଥିଲା, ସେ ସମସ୍ତ କଟକରୁ ସଂଗୃହୀତ ହୋଇଥିଲା । ସୁଦାମ ବାବୁ ଓ ଗୌରୀଶଙ୍କର ବାବୁ ପ୍ରଭୃତି ସମସ୍ତ ହୃଦୟବାନ୍ ବ୍ୟକ୍ତି ଚନ୍ଦ୍ରଧରଙ୍କଠାରୁ ସାମନ୍ତଙ୍କର ମୃତ୍ୟୁ-ସମ୍ବାଦ ପାଇବା ମାତ୍ରେ ଅର୍ଥ ସାହାଯ୍ୟ କରିଥିଲେ ଏବଂ କହିଥିଲେ, "ଆମ୍ଭମାନଙ୍କର ଅବଶିଷ୍ଟ ଆୟୁଷ ଯାଇଥାନ୍ତା ପଛକେ, ସେ ଆପଣେ ହେଲେ ବଞ୍ଚିଥାନ୍ତେ । କିନ୍ତୁ ବିଧିଙ୍କର ବିଧାନ ଉପରେ ହାତ କାହାର ଅଛି ?"

ସାମନ୍ତଙ୍କର ଦେହତ୍ୟାଗର ୨୧ ବର୍ଷ ପରେ ୧୯୨୫ ସାଲ ଡିସେମ୍ବର ଦଶ ତାରିଖରେ ତାଙ୍କ ପତ୍ନୀ ସୀତାଦେବୀ ପବିତ୍ର ବୈଧବ୍ୟ-ବ୍ରତ ଯଥାବିଧି ପାଳନପୂର୍ବକ ସ୍ୱର୍ଗାରୋହଣ କରିଅଛନ୍ତି । ସୀତାଦେବୀ ପତିବିୟୋଗଠାରୁ ପ୍ରତ୍ୟହ ଏକବାର ମାତ୍ର ହବିଷ୍ୟାନ୍ନ ଭୋଜନ କରି କାଳଯାପନ କରିଥିଲେ ଏବଂ ଶାସ୍ତ୍ରୋକ୍ତ ସମସ୍ତ ବ୍ରତୋପବାସାଦି ବିଧି ପାଳନ କରିଥିଲେ । ସାମନ୍ତଙ୍କର ୩୩ ବର୍ଷଠାରେ ପିତୃବିୟୋଗ ଏବଂ ୪୭ ବର୍ଷଠାରେ ମାତୃବିୟୋଗ ହୋଇଥିଲା । ଚନ୍ଦ୍ରଶେଖରଙ୍କର ମୃତ୍ୟୁର ପ୍ରାୟ ଏକବର୍ଷ ଛଅମାସ ପରେ ଖଣ୍ଡପଡ଼ାର ରାଜା ନଟବର ସିଂହ ମଧ୍ୟ ପରଲୋକପ୍ରାପ୍ତ ହେଲେ ।

**ସତ୍ସଙ୍ଗ**—ସାଧୁ ସଙ୍ଗ ବ୍ୟତୀତ ମନୁଷ୍ୟମୁକ୍ତିର ଅନ୍ୟ କୌଣସି ଶ୍ରେଷ୍ଠ ଉପାୟ ନାହିଁ । ଭଗବାନ ଶ୍ରୀକୃଷ୍ଣ କହି ଅଛନ୍ତି ଯେ—

ନ ବୋଧୟତି ମାଂ ଯୋଗୋ ନ ସାଂଖ୍ୟଂ ଧର୍ମ ଏବ ବା
ନ ସ୍ୱାଧ୍ୟାୟ ସ୍ତପସ୍ତ୍ୟାଗୋ ନେଷ୍ଟାପୂର୍ତ୍ତିଂ ନ ଦକ୍ଷିଣା ॥
ବ୍ରତାନି ଯଜ୍ଞଶ୍ଛନ୍ଦାଂସି ତୀର୍ଥାନି ନିୟମା ଯମାଃ
ଯଥା ବରୁନ୍ଧେ ସତ୍‌ସଙ୍ଗଃ ସର୍ବସଙ୍ଗାପହୋ ହି ମାମ୍ ॥

ତାତ୍ପର୍ଯ୍ୟ ଏହି ଯେ ସର୍ବସଙ୍ଗବିନାଶକ ସତ୍‌ସଙ୍ଗ ଭଗବାନଙ୍କୁ ଯେତେଦୂର ଅବରୋଧ କରିପାରେ, ଯୋଗ, ସାଂଖ୍ୟ, ଜ୍ଞାନ, ଧର୍ମପାଳନ, ବେଦାଧ୍ୟୟନ, ତପସ୍ୟା, ସନ୍ନ୍ୟାସ, ଇଷ୍ଟାପୂର୍ତ୍ତି, ଦକ୍ଷିଣା, ସକଳ ବ୍ରତ, ସକଳ ଯଜ୍ଞ, ତୀର୍ଥ ଭ୍ରମଣ ଓ ଯମ ନିୟମ ତେତେଦୂର ବାଧ୍ୟ କରିପାରେ ନାହିଁ । ଅଷ୍ଟାଙ୍ଗ ଯୋଗାଦିଦ୍ୱାରା ଭଗବାନଙ୍କୁ ଗୌଣରୂପେ ସନ୍ତୁଷ୍ଟ କରି ଯାଇପାରେ, କିନ୍ତୁ ଏକମାତ୍ର ସତ୍‌ସଙ୍ଗଦ୍ୱାରା ଭଗବାନ୍ ସର୍ବଦା ହୃଦୟରେ ଅବରୁଦ୍ଧ ହୁଅନ୍ତି । ଅଜ୍ଞାନକ୍ରମେ ସୁଦ୍ଧା ଯଦି ସାଧୁସଙ୍ଗ ହୋଇଯାଏ ତେବେ ଜୀବର ଅନେକ ମଙ୍ଗଳ ଲାଭ ହୋଇଥାଏ । ଗଙ୍ଗାଦି ତୀର୍ଥ ସମୂହରେ ଅବଗାହନ କଲେ ସେମାନେ ପବିତ୍ର କରନ୍ତି ସତ୍ୟ, କିନ୍ତୁ ସାଧୁଗଣର ଦର୍ଶନ ମାତ୍ରେ ପବିତ୍ରତା ଲବ୍ଧ ହୁଏ । ଅତଏବ ଏହି ସଂସାରରେ ସାଧୁସଙ୍ଗହିଁ ଏକମାତ୍ର ଭବବନ୍ଧନ ମୋଚନର ଉପାୟ ।

ଚନ୍ଦ୍ରଶେଖରଙ୍କର ନିତ୍ୟକର୍ମ ଓ ଶରୀର ରକ୍ଷାର ଅବଶ୍ୟକ କାର୍ଯ୍ୟ ନିମିତ୍ତ ବ୍ୟୟିତ ସମୟ ଭିନ୍ନ ଅବଶିଷ୍ଟ ସମୟତକ କେବଳ ସତ୍‌ସଙ୍ଗରେ ଯାପିତ ହେଉଥିଲା । ସେ କବିଙ୍କର ଏହି ଉକ୍ତିର ଯାଥାର୍ଥ୍ୟ ଉତ୍ତମରୂପେ ଉପଲବ୍ଧ କରି ପାରିଥିଲେ—

ବାଞ୍ଛା ସଜ୍ଜନ ସଙ୍ଗମେ ପରଗୁଣେ ପ୍ରୀତି ର୍ଗୁରୌ ନମ୍ରତା
ବିଦ୍ୟାୟାଂ ବ୍ୟସନଂ ସ୍ୱଯୋଷିତି ରତି ର୍ଲୋକାପବାଦାଦ୍ ଭୟମ୍ ।
ଭକ୍ତିଃ ଶୂଲିନି ଶକ୍ତିରାତ୍ମଦମନେ ସଂସର୍ଗ ମୁକ୍ତିଃ ଖଲେ
ଯେଷ୍ୱେତେ ନିବସନ୍ତି ନିର୍ମଲଗୁଣା ସ୍ତେଭ୍ୟୋ ନରେଭ୍ୟୋ ନମଃ ॥

ଅର୍ଥାତ୍ ସତ୍ ସଙ୍ଗରେ ଇଚ୍ଛା, ପର ଗୁଣରେ ଅନୁରାଗ, ଗୁରୁଙ୍କଠାରେ ନମ୍ରତା, ବିଦ୍ୟାରେ ପରିଶ୍ରମ, ସ୍ତ୍ରୀୟ ପତ୍ନୀଠାରେ ଆସକ୍ତି, ଲୋକାପବାଦପ୍ରତି ଭୟ, ନାରାୟଣଙ୍କଠାରେ ଭକ୍ତି, ଆତ୍ମଦମନ ବିଷୟରେ ସାମର୍ଥ୍ୟ ଏବଂ ଦୁଷ୍ଟସଂସର୍ଗ ତ୍ୟାଗ ଏହି ସବୁ ନିର୍ମଳ ଗୁଣ ଯେଉଁ ବ୍ୟକ୍ତିମାନଙ୍କଠାରେ ଥାଏ ସେମାନଙ୍କୁ ନମସ୍କାର ।

ନାନା ସ୍ଥାନରୁ ବିଭିନ୍ନ ବିଷୟକ ପଣ୍ଡିତଗଣ ସାମନ୍ତଙ୍କ ସଙ୍ଗେ ଆଳାପ କରିବାକୁ ଖଣ୍ଡପଡ଼ା ଆସୁଥିଲେ । ପୁରୀର ମାର୍କଣ୍ଡେୟ ତର୍କ-ପଞ୍ଚାନନ, ଚନ୍ଦ୍ରାମଣି ତର୍କ-ବାଚସ୍ପତି, ସାମନ୍ତ ବିଶ୍ୱନାଥ ମହାପାତ୍ର କବିତୀର୍ଥ, ମଧୁସୂଦନ ତର୍କ-ବାଚସ୍ପତି, ମହାମହୋପାଧ୍ୟାୟ ଜଗନ୍ନାଥ ମିଶ୍ର ଏବଂ ଗଦାଧର ମିଶ୍ର କାବ୍ୟତୀର୍ଥ ପ୍ରଭୃତି ପଣ୍ଡିତମାନେ ସାମନ୍ତଙ୍କ ସଙ୍ଗେ ଶାସ୍ତ୍ରାଳାପ କରି ପରମ ପ୍ରୀତ ହୋଇ ଯାଉଥିଲେ । ପଣ୍ଡିତ ଚନ୍ଦ୍ରାମଣି ତର୍କ ବାଚସ୍ପତି ତର୍କ ଶାସ୍ତ୍ରରେ ଧୁରୀଣ ହେଲେହେଁ ଜ୍ୟୋତିଃଶାସ୍ତ୍ରରେ ଅଭିଜ୍ଞ ନୁହନ୍ତି, ମାତ୍ର ସ୍ମୃତି ଶାସ୍ତ୍ରରେ ତାହାଙ୍କର ବିଶେଷ ବ୍ୟୁତ୍ପତ୍ତି ଅଛି ଏବଂ ସଂସ୍କୃତ ଭାଷାରେ ସେ ଅନର୍ଗଳ ବକ୍ତା ଅଟନ୍ତି । ଏକଦା ସେ ସାମନ୍ତଙ୍କ ସଙ୍ଗେ ସ୍ମୃତିଶାସ୍ତ୍ର ସମ୍ବନ୍ଧରେ ବହୁ ସମୟ ବିଚାର କରି ପରାଜିତ ହେବାରୁ କହିଲେ, "ମୁଁ ଆପଣଙ୍କର ଶିଷ୍ୟତ୍ୱ ସ୍ୱୀକାର କଲି ; ସ୍ମୃତିଶାସ୍ତ୍ରରେ ଆପଣଙ୍କଠାରୁଁ ମୋହର ଅନେକ ଶିକ୍ଷଣୀୟ ବିଷୟ ଅଛି ।" ତହୁଁ ସାମନ୍ତ ଉତ୍ତର ଦେଲେ, "ଆପଣ ଉପଯୁକ୍ତ ପିତାଙ୍କର ଉପଯୁକ୍ତ ପୁତ୍ର ଏବଂ କୁଳୀନ ବ୍ରାହ୍ମଣ । ଆପଣଙ୍କ ଆଶୀର୍ବାଦ ବଳରେ ମୁଁ ଯତ୍ କିଞ୍ଚିତ୍ ଜାଣିଅଛି । ତର୍କ ଶାସ୍ତ୍ରରେ ମୋହର ଜ୍ଞାନ ନଗଣ୍ୟ, ମୁଁ ଆପଣଙ୍କଠାରୁ ସେ ବିଷୟ ଶିକ୍ଷା କରିବାକୁ ଇଚ୍ଛାକରେଁ ।" ଏହା ଏ ଲେଖକର ପ୍ରତ୍ୟକ୍ଷ ବିଷୟ । ଉକ୍ତ ପଣ୍ଡିତ ମହାଶୟ ମୋହର ସମ୍ପର୍କୀୟ ବନ୍ଧୁ ହୋଇଥିବାରୁ ଏବଂ

ଅଦ୍ୟାପି ବିଦ୍ୟମାନ ଥିବାରୁ ତାହାଙ୍କଠାରୁ ସାମନ୍ତଙ୍କ ସମ୍ବନ୍ଧରେ ଏହିପରି ନାନା ଗଳ୍ପ ଶୁଣାଯାଏ ଏବଂ ସେ ସାମନ୍ତଙ୍କୁ ଦେବତାତୁଲ୍ୟ ଜ୍ଞାନ କରୁଥିବାର ପ୍ରକାଶ କରନ୍ତି ।

ଜଣେ ସାମାନ୍ୟ ନାପିତର ସତ୍‌ସଙ୍ଗପ୍ରଭାବ କିପରି ଜ୍ଞାନଲବ୍ଧ ହୋଇଥିଲା ତାହା ଏହି ଗଳ୍ପରୁ ପାଠକମାନେ ଅବଗତ ହେବେ । ଖଣ୍ଡପଡ଼ାନିବାସୀ ଶିଖର ମହାପାତ୍ର ନାମକ ଜଣେ କରଜର ନାପିତ ସାମନ୍ତଙ୍କ ଗୃହରେ ସେବାକାରୀ ଥିବାରୁ ପ୍ରାୟ ସର୍ବଦା ଚନ୍ଦ୍ରଶେଖରଙ୍କର ସଂସର୍ଗ ଲାଭ କରୁଥିଲା । ତେଣୁ ସେ କି ଶାସ୍ତ୍ରୀୟ କି ଲୌକିକ ଅନେକ ବିଷୟରେ ଅଭିଜ୍ଞତା ଲାଭ କରିଥିଲା । ଏକଦା ପୁରୀରୁ ଆଗତ ପଣ୍ଡିତ ମାର୍କଣ୍ଡେୟ ତର୍କପଞ୍ଚାନନଙ୍କୁ କ୍ଷୌର କରିବା ସମୟରେ ( ଶାସ୍ତ୍ରରେ ତାହାଙ୍କର ପ୍ରଗଲ୍‌ଭତା ଓ ବାବଦୂକତା ବିଷୟ ପୂର୍ବରୁ ଶୁଣିଥିବାରୁ ) ପଚାରିଲା, "ଆଜ୍ଞା, ବେଦାନ୍ତରେ ଯେଉଁ ପଞ୍ଚୀକରଣ ବିଷୟ ଲେଖାଅଛି ସେ ବିଷୟ ଟିକିଏ ମୋତେ ବୁଝାଇ ଦିଅନ୍ତୁ ।" ପଣ୍ଡିତେ ନାପିତର ପ୍ରଶ୍ନ ଶୁଣି ଚମତ୍କୃତ ହୋଇ କହିଲେ, "କି ରେ, ତୁ ଏ ଶବ୍ଦ ଶୁଣିଲୁ କେଉଁଠାରୁ ?" ସେ କହିଲା, "ମୁଁ ପଠାଣି ସାମନ୍ତଙ୍କ ଦୁଆରେ ଅଧିକାଂଶ ସମୟ ରହୁଥିବାରୁ ତାହାଙ୍କଠାରୁ ଶୁଣିଅଛି ।" ତହୁଁ ପଣ୍ଡିତେ କହିଲେ, "ତୁ ଯାହାଙ୍କ ପାଖରେ ଅଛୁ ସେ ମୋଠାରୁ ଅପେକ୍ଷା ବଡ଼ ପଣ୍ଡିତ, ତୁ ତାଙ୍କୁ ପଚାରିଲେ ସେ ବୁଝାଇ ଦେବେ । ମୁଁ ଆଉ ବୁଝାଇବି କଣ ?" ଆଉ କିଛି ଦିନ ପରେ ଶିଖର ମହାପାତ୍ର କାର୍ଯ୍ୟୋପଲକ୍ଷରେ ନୟାଗଡ଼ର ରାଜପୁରୋଧା ଜ୍ୟୋତିର୍ବିତ୍ ପଣ୍ଡିତ ବୈଦ୍ୟନାଥ ରାଜଗୁରୁଙ୍କ ଗୃହକୁ ଯାଇଥିଲା । ସେ ପୂର୍ବରୁ ରାଜଗୁରୁଙ୍କର ପାଣ୍ଡିତ୍ୟାଭିମାନ ଶୁଣିଥିଲା । ସେ ଦିନ ରାଜଗୁରୁ ମୂଳା ନକ୍ଷତ୍ରରେ କ୍ଷୌର ହେଉଥିବାର ଦେଖି କହିଲା, "ରାଜଗୁରୁ ଆଜ୍ଞା, ଆପଣ ତ ମହାପଣ୍ଡିତ ଓ ରାଜଦ୍ୱାରର ପ୍ରବର୍ତ୍ତକ ହୋଇ

ଅର୍ଥାତ୍ ସତ୍ ସଙ୍ଗରେ ଇଚ୍ଛା, ପର ଗୁଣରେ ଅନୁରାଗ, ଗୁରୁଙ୍କ-ଠାରେ ନମ୍ରତା, ବିଦ୍ୟାରେ ପରିଶ୍ରମ, ସ୍ୱୀୟ ପତ୍ନୀଠାରେ ଅସକ୍ତି, ଲୋକାପବାଦପ୍ରତି ଭୟ, ନାରାୟଣଙ୍କଠାରେ ଭକ୍ତି, ଆତ୍ମଦମନ ବିଷୟରେ ସାମର୍ଥ୍ୟ ଏବଂ ଦୁଷ୍ଟସଂସର୍ଗ ତ୍ୟାଗ ଏହି ସବୁ ନିର୍ମଳ ଗୁଣ ଯେଉଁ ବ୍ୟକ୍ତିମାନଙ୍କଠାରେ ଥାଏ ସେମାନଙ୍କୁ ନମସ୍କାର ।

ନାନା ସ୍ଥାନରୁ ବିଭିନ୍ନ ବିଷୟକ ପଣ୍ଡିତଗଣ ସାମନ୍ତଙ୍କ ସଙ୍ଗେ ଆଳାପ କରିବାକୁ ଖଣ୍ଡପଡ଼ା ଆସୁଥିଲେ । ପୁରୀର ମାର୍କଣ୍ଡେୟ ତର୍କ-ପଞ୍ଚାନନ, ଚିନ୍ତାମଣି ତର୍କ-ବାଚସ୍ପତି, ସାମନ୍ତ ବିଶ୍ୱନାଥ ମହାପାତ୍ର କବି ତୀର୍ଥ, ମଧୁସୂଦନ ତର୍କ-ବାଚସ୍ପତି, ମହା-ମହୋପାଧ୍ୟାୟ ଜଗନ୍ନାଥ ମିଶ୍ର ଏବଂ ଗଦାଧର ମିଶ୍ର କାବ୍ୟତୀର୍ଥ ପ୍ରଭୃତି ପଣ୍ଡିତମାନେ ସାମନ୍ତଙ୍କ ସଙ୍ଗେ ଶାସ୍ତ୍ରାଳାପ କରି ପରମ ପ୍ରୀତ ହୋଇ ଯାଉଥିଲେ । ପଣ୍ଡିତ ଚିନ୍ତାମଣି ତର୍କ ବାଚସ୍ପତି ତର୍କ ଶାସ୍ତ୍ରରେ ଧୁରୀଣ ହେଲେହେଁ ଜ୍ୟୋତିଃଶାସ୍ତ୍ରରେ ଅଭିଜ୍ଞ ନୁହନ୍ତି, ମାତ୍ର ସ୍ମୃତି ଶାସ୍ତ୍ରରେ ତାହାଙ୍କର ବିଶେଷ ବ୍ୟୁତ୍ପତ୍ତି ଅଛି ଏବଂ ସଂସ୍କୃତ ଭାଷାରେ ସେ ଅନର୍ଗଳ ବକ୍ତା ଅଟନ୍ତି । ଏକଦା ସେ ସାମନ୍ତଙ୍କ ସଙ୍ଗେ ସ୍ମୃତିଶାସ୍ତ୍ର ସମ୍ବନ୍ଧରେ ବହୁ ସମୟ ବିଚାର କରି ପରାଜିତ ହେବାରୁ କହିଲେ, "ମୁଁ ଆପଣଙ୍କର ଶିଷ୍ୟତ୍ୱ ସ୍ୱୀକାର କଲି ; ସ୍ମୃତିଶାସ୍ତ୍ରରେ ଆପଣଙ୍କଠାରୁ ମୋହର ଅନେକ ଶିକ୍ଷଣୀୟ ବିଷୟ ଅଛି ।" ତହୁଁ ସାମନ୍ତ ଉତ୍ତର ଦେଲେ, "ଆପଣ ଉପଯୁକ୍ତ ପିତାଙ୍କର ଉପଯୁକ୍ତ ପୁତ୍ର ଏବଂ କୁଳୀନ ବ୍ରାହ୍ମଣ । ଆପଣଙ୍କ ଆଶୀର୍ବାଦ ବଳରେ ମୁଁ ଯତ୍ କିଞ୍ଚିତ୍ ଜାଣିଅଛି । ତର୍କ ଶାସ୍ତ୍ରରେ ମୋହର ଜ୍ଞାନ ନଗଣ୍ୟ, ମୁଁ ଆପଣଙ୍କଠାରୁ ସେ ବିଷୟ ଶିକ୍ଷା କରିବାକୁ ଇଚ୍ଛାକରେ ।" ଏହା ଏ ଲେଖକର ପ୍ରତ୍ୟକ୍ଷ ବିଷୟ । ଉକ୍ତ ପଣ୍ଡିତ ମହାଶୟ ମୋହର ସମ୍ପର୍କୀୟ ବନ୍ଧୁ ହୋଇଥିବାରୁ ଏବଂ

ଏପରି କରୁଅଛନ୍ତି, ଆଉ କିଏ ବା କ'ଣ କରିବ ?" ରାଜଗୁରୁ ଶୁଣି ଆଶ୍ଚର୍ଯ୍ୟାନ୍ୱିତ ହୋଇ କହିଲେ, "କି ରେ, ଆମେ କଣ କରୁଛୁ କହିଲୁ !" ନାପିତ କହିଲା, "ଆଜି ମୂଳା ନକ୍ଷତ୍ରରେ ପର୍ବ କ୍ଷୌର ନିଷିଦ୍ଧ, ଆପଣ ଆଜି କିପରି କ୍ଷୌର ହୋଇ ବସିଛନ୍ତି ?" ରାଜଗୁରୁ ଚମକି ପଡ଼ି ପାଞ୍ଜି ଅଣାଇ ଦେଖିଲେ ଯେ ପ୍ରକୃତରେ ସେ ଦିନ ମୂଳା ନକ୍ଷତ୍ର । ତେଣୁ ବଡ଼ ଲଜ୍ଜିତ ହୋଇ କହିଲେ, "ମହାପାତ୍ର, ଏ କଥା ପଠାଣି ସାମନ୍ତଙ୍କ କହିବୁ ନାହିଁ ଟି, ସେ ଶୁଣିଲେ ମୋତେ କଣ କହିବେ ?"

ସିଦ୍ଧାନ୍ତ ଦର୍ପଣର ମୁଦ୍ରଣ ପୂର୍ବରୁ ପୃଥିବୀର ସ୍ଥିରତା ଓ ସୂର୍ଯ୍ୟର ଭ୍ରମଣ ସମ୍ବନ୍ଧରେ ତାହାଙ୍କର ସନ୍ଦେହ ରହିଥିଲା । ଉକ୍ତ ବିଷୟରେ ସାମନ୍ତ ସ୍ଥିର ସିଦ୍ଧାନ୍ତରେ ଉପନୀତ ହୋଇଥିଲେହେଁ ଭାରତ ଭିନ୍ନ ସମଗ୍ର ପୃଥିବୀର ମତ ବିରୋଧରେ ଲିପିବଦ୍ଧ କରିଦେବା ବଡ଼ ଦୁରୂହ ବ୍ୟାପାର ମନେକରି ହୃଦୟରେ ସେହି ସନ୍ଦେହକୁ ସ୍ଥାନ ଦେଇଥିଲେ । ସେହି ସନ୍ଦେହ ମୋଚନ ନିମିତ୍ତ ଦୈବୀ ପ୍ରମାଣର ଅନୁସନ୍ଧାନପୂର୍ବକ ସର୍ବଦା ବ୍ରତୀ ଥାନ୍ତି ଏବଂ ଭଗବାନଙ୍କୁ ପ୍ରାର୍ଥନା କରୁଥାନ୍ତି । ଭକ୍ତାଭୀଷ୍ଟପ୍ରଦ ଭଗବାନଙ୍କ ଅପାର ମହିମାରୁ ଦିନେ ଜଣେ ସର୍ବଜ୍ଞ ବ୍ରାହ୍ମଣ କୋଦଳା ଅଠଗଡ଼ରୁ ଆସି ସାମନ୍ତଙ୍କ ଘରେ ଉପସ୍ଥିତ ହେଲେ । ତାହାଙ୍କର ନାମ ଚକ୍ରପାଣି ମିଶ୍ର । ସେ ଦେବୀ ଉପାସକ ଥିବାରୁ ତଦୀୟ କୃପାରେ ସର୍ବଜ୍ଞତା ଲାଭ କଲେହେଁ ସଂସ୍କୃତ ଭାଷାରେ ଅନଭିଜ୍ଞ ଥିଲେ । ପ୍ରଥମେ ସାମନ୍ତ ତାହାଙ୍କର ସର୍ବଜ୍ଞତାର ପରିଚୟ ନିମନ୍ତେ ଗୃହ ମଧ୍ୟରୁ ନିଜ ହସ୍ତରେ ଗୋଟିଏ ଶୁଷ୍କ ବରକୋଳି ମଞ୍ଜି ଧରି ମିଶ୍ରଙ୍କୁ ପଚାରିଲେ । ମିଶ୍ର ଧ୍ୟାନନିମଗ୍ନ ହୋଇ ପ୍ରଥମେ ବୀଜଂ, ତତ୍ପରେ ବିନ୍ଦୁଯୁକ୍ତ ବୀଜଂ ଓ ଶେଷରେ ବଦରୀ ବୀଜଂ, ବଦରୀ ବୀଜଂ ବୋଲି ମୁଖରେ କ୍ଷୀଣ ସ୍ୱରରେ କହୁଥାନ୍ତି, ଅଥଚ ସଂସ୍କୃତ ଭାଷାରେ ଅନଭିଜ୍ଞତାବଶତଃ ବଦରୀ ବୀଜର ଅର୍ଥ ପ୍ରକାଶ କରି

ପାରୁ ନ ଥାନ୍ତି । ସାମନ୍ତ ତାହାଙ୍କର ଏହିଭଳି ବୁଦ୍ଧି ପାଇଁ କହିଲେ, "ହଁ, ମୁଁ ଗୋଟିଏ ବରକୋଳି ମଞ୍ଜି ଧରିଅଛି ।" ଏଥିରୁ ମିଶ୍ରଙ୍କର ଦେବ ସହାୟତା ଉପଲବ୍ଧ କରି ସାମନ୍ତ ସ୍ୱୀୟ ଅଭୀଷ୍ଟ ପ୍ରଶ୍ନର ଉତ୍ଥାପନ ପୂର୍ବକ କହିଲେ, "ମୋ ମନରେ ବହୁଦିନରୁ ଗୋଟାଏ ସନ୍ଦେହ ଅଛି, ଆପଣ ତାହା ମୋଚନ କରନ୍ତୁ ।" ତାହା ଶୁଣି ମିଶ୍ରେ ପୂର୍ବବତ୍ କେତେକ ସମୟ ଧ୍ୟାନମଗ୍ନ ହେବା ପରେ ବିସ୍ମିତ ହୋଇ ଦୁଇଗୋଟି ବୃହତ୍ ପଦାର୍ଥ ସମ୍ବନ୍ଧରେ ପ୍ରଶ୍ନ ହୋଇଅଛି ବୋଲି ପ୍ରକାଶ କଲେ ଏବଂ କହିଲେ, "ଗୋଟିଏ ତେଜୀୟାନ୍ ଓ ଅପର ଗୋଟିଏ ତେଜୋହୀନ; ତେଜୀୟାନ୍ ପଦାର୍ଥଟି ଅନ୍ୟ ଅପେକ୍ଷା ବହୁଗୁଣରେ ବଡ଼ ।" ସର୍ବଶେଷରେ ସୂର୍ଯ୍ୟ ଓ ପୃଥିବୀର ନାମ କହି କିଏ ଗତି କରୁଅଛି ଓ କିଏ ସ୍ଥିର ଅଛି, ଏ ସମ୍ବନ୍ଧରେ ପ୍ରଶ୍ନ ଥିବାର ପ୍ରକାଶ କଲେ ଏବଂ ସୂର୍ଯ୍ୟ ସର୍ବଦା ଗତି କରୁଅଛନ୍ତି ଓ ପୃଥିବୀ ସ୍ଥିର ରହିଅଛି ବୋଲି ସ୍ପଷ୍ଟ ପ୍ରକାଶ କରିବାରୁ ସାମନ୍ତଙ୍କର ସନ୍ଦେହ ଦୂର ହେଲା ଏବଂ ସେ ଅତ୍ୟନ୍ତ ଆପ୍ୟାୟିତ ହେଲେ ।

ତତ୍ପରେ ସାମନ୍ତ ଶକଟଭିତରେ ଖଣ୍ଡପଡ଼ାର ତତ୍କାଳୀନ ରାଜା କୃଷ୍ଣବିହାରୀ ଓ ତାହାଙ୍କ ଭ୍ରାତା ନଟବରଙ୍କର କୋଷ୍ଠୀ ଦୁଇଖଣ୍ଡି ତାଳ-ପତ୍ରରେ ଲେଖି ସର୍ବଜ୍ଞଙ୍କୁ ଦେଲେ । ସର୍ବଜ୍ଞ ସେହି ତାଳପତ୍ରଦ୍ୱୟରୁ କୃଷ୍ଣବିହାରୀଙ୍କ କୋଷ୍ଠୀଖଣ୍ଡିକ ତଳେ ପକାଇ ଦେଇ କହିଲେ, "ଏ କୋଷ୍ଠୀ ଅଳ୍ପାୟୁ ଏବଂ ଏହାର ସ୍ତ୍ରୀ ରୂପସୀ । ସ୍ୱାମୀର ମୃତ୍ୟୁପରେ ଏ ସ୍ତ୍ରୀ ଗୃହତ୍ୟାଗ କରି ପୂର୍ବଦିଗକୁ ପଳାଇଯିବ ।" ଅପର କୋଷ୍ଠୀ ଦେଖି କହିଲେ, "ହଁ, ଏହା ବଳବତ୍ତର ଏବଂ ଏ କୋଷ୍ଠୀର ଲୋକ ନିକଟରେ ରାଜା ହେବ, ବହୁକାଳ ରାଜତ୍ୱ କରିବ ।" ସର୍ବଜ୍ଞଙ୍କର ଉଭୟ କଥାହିଁ ପ୍ରକୃତରୂପେ ଘଟିଥିଲା । କିଛିଦିନ ପରେ ଚନ୍ଦ୍ରପାଣି ମିଶ୍ର ସ୍ୱର୍ଗର ବିଷୟ ଜାଣିବା ପ୍ରକାଶ ସାଧନ ନିମିତ୍ତ ସେହି ତାରିଣୀ ପର୍ବତର ଉପରକୁ ଯାଇଥିଲେ ଏବଂ ସେହିଠାରେ ପର୍ବତ ଉପରୁ ପତିତ ହୋଇ ମୃତ ହେଲେ ।

ଖଣ୍ଡପଡ଼ାର ଲକ୍ଷ୍ମୀଧର ବକ୍ସି ପଟ୍ଟନାୟକ ଓ ମପ୍ରିତା ନାରାୟଣ ସଦସ୍ୟ ସାମନ୍ତଙ୍କର ବାଲ୍ୟସଖା ଥିଲେ । ସେ ଦୁହେଁଙ୍କର ଅଧିକାଂଶ ସମୟ ଚନ୍ଦ୍ରଶେଖରଙ୍କ ସହ ସଦାଳାପରେ ଯାପିତ ହେଉଥିଲା । ବକ୍ସି ଗଣିତ ଶାସ୍ତ୍ରରେ ରସିକ ଥିବାରୁ ସାମନ୍ତଙ୍କୁ ସର୍ବଦା ତତ୍‌ବିଷୟକ ପ୍ରଶ୍ନ ପଚାରି ଉତ୍ତର ବୁଝୁଥିଲେ । ସାମନ୍ତ କେବଳ ମାତ୍ର ଦଶକ ପଣକିଆ ଭିନ୍ନ ଅନ୍ୟ କିଛି ଅଙ୍କ ପଢ଼ି ନ ଥିଲେହେଁ ସ୍ୱକୀୟ ଅସାଧାରଣ ଧୀମତ୍ତ୍ୱବଳରେ ବକ୍ସିଙ୍କର ସମସ୍ତ ପ୍ରଶ୍ନର ସମାଧାନ କରି ଦେଉଥିଲେ । କେହି ତାହାଙ୍କୁ କୌଣସି କଠିନ ଅଙ୍କବିଷୟକ ପ୍ରଶ୍ନ କଲେ ସେ ତତ୍‌କ୍ଷଣାତ୍ ଗୋଟିଏ ସଂସ୍କୃତ ଶ୍ଳୋକ ରଚନା କରି ସେଥିରେ ସେହି ଅଙ୍କର ସୂତ୍ର ନିର୍ଦ୍ଦେଶ କରିଦେଉଥିଲେ । ସାମନ୍ତ ନବ୍ୟରୀତିରେ ଭଗ୍ନାଂଶର ସ୍ୱରୂପ ଦେଖି ନ ଥିଲେହେଁ ଉମେଶବାବୁଙ୍କ ପାଟୀଗଣିତର ସମସ୍ତ ଭଗ୍ନାଂଶ ଅଙ୍କ ଅତି ସହଜ ସୂତ୍ରରେ ସମାଧାନ କରି ଦେଉଥିଲେ । ମୁଁ ବାଲ୍ୟବୟସରେ ମଦୀୟ ଗୁରୁ ପଣ୍ଡିତ ରାଜବଲ୍ଲଭ ମିଶ୍ରଙ୍କଠାରୁ ଏ ସମ୍ବନ୍ଧରେ ନାନା ଗଳ୍ପ ଶୁଣିଥିଲେହେଁ ଏବଂ ଅଙ୍କ ବିଷୟକ କେତେକ ସଂସ୍କୃତ ସୂତ୍ର ଶିକ୍ଷା କରିଥିଲେହେଁ ମୋହର ତତ୍କାଳୀନ ଅଜ୍ଞାନତାବଶରୁ ଓ ସ୍ମୃତିଶକ୍ତିର ଦୁର୍ବଳତା ହେତୁରୁ ସେଥିମଧ୍ୟରୁ ଗୋଟିଏ ସୁଦ୍ଧା ସୂତ୍ରର ଉଲ୍ଲେଖ କରିପାରିଲି ନାହିଁ ।

ମୋହର ପିତୃଦେବ ପଣ୍ଡିତ ନାରାୟଣ ସଦସ୍ୟ ପ୍ରତ୍ୟହ ଦିବା ଭୋଜନ ପରେ ଅଲକ୍ଷଣ ଚଷ୍ମାମାନଙ୍କର ତାଳପତ୍ର ଖେରା ଓ ଲେଖଣୀ ଧରି ସାମନ୍ତଙ୍କ ଦୁଆରକୁ ଆସୁଥିଲେ ଏବଂ ସାମନ୍ତ ଗୃହ ମଧ୍ୟରୁ ଦାଣ୍ଡପିଣ୍ଡାକୁ ଆସିବା ପର୍ଯ୍ୟନ୍ତ କେବଳ ପୁସ୍ତକ ଲିଖନରେ ବ୍ୟାପୃତ ରହୁଥିଲେ । ବହୁକାଳ ସାମନ୍ତଙ୍କ ସଙ୍ଗରେ ଥାଇ ସୁଦ୍ଧା ମତ୍‌ପିତା ସ୍ୱୀୟ ପ୍ରାକ୍ତନବାସନାର ଅଭାବବଶତଃ ଜ୍ୟୋତିର୍ବିଦ୍ୟା ଶିକ୍ଷାରେ ପାରଗ ହୋଇ ନ ଥିଲେ । କେବଳ ସଂସ୍କୃତ ବ୍ୟାକରଣ ଓ ସାହିତ୍ୟରେ ବିଶେଷ ପାଣ୍ଡିତ୍ୟ ଲାଭ କରିଥିବାରୁ ସେହି ବିଷୟକ ଚର୍ଚ୍ଚାରେ ଏବଂ ଭକ୍ତି ଗ୍ରନ୍ଥର ଆଲୋଚନାରେ

କାଳକ୍ଷେପଣ କରୁଥିଲେ । ସେ କାବ୍ୟ, ବ୍ୟାକରଣ, ପୁରାଣ ଓ ସ୍ମୃତି ପ୍ରଭୃତି ବିଷୟକ ବହୁ ତାଳପତ୍ର ପୁସ୍ତକ ଲେଖିଥିଲେ । ମହାମ୍ୟ ପିତୃଦେବ ଅତ୍ୟନ୍ତ ନିଷ୍ଠାପର ବ୍ରାହ୍ମଣ ଥିଲେ । ସେ ପ୍ରତ୍ୟହ ପୂର୍ବାହ୍ଣରେ ନୀଳକଣ୍ଠେଶ୍ୱର ମହାଦେବଙ୍କ ସନ୍ନିଧିରେ ରୁଦ୍ରାଭିଷେକ ନ କରି ଏବଂ ନିଜ ଗଡ଼ରେ ଥିବା ଜଗନ୍ନାଥ, ଗୋପୀନାଥ ପ୍ରଭୃତି ଦେବତାମାନଙ୍କର ଦର୍ଶନ ନ କରି ଜଳ ଗ୍ରହଣ କରୁ ନ ଥିଲେ । ସନ୍ଧ୍ୟା ସମୟରେ ମଧ୍ୟ ସନ୍ଧ୍ୟୋପାସନା ଶେଷରେ ନିଜ ଗୃହ ଦେବତାବୃନ୍ଦଙ୍କର ପୂଜାବିଧାନ ପୂର୍ବକ ପଦବ୍ରଜ କରିଯାଇ ଜଗନ୍ନାଥଙ୍କ ଦେଉଳକୁ ଯାଉଥିଲେ ଏବଂ ସେଠାରେ ବଡ଼ସିଂହାର ଦର୍ଶନ ପରେ ଗୃହକୁ ପ୍ରତ୍ୟାବର୍ତ୍ତନ କରି ରାତ୍ରି ଭୋଜନ କରୁଥିଲେ । ସେ ସତତ ନାରାୟଣଙ୍କ ନାମ ଉଚ୍ଚାରଣ କରୁଥିଲେ ଏବଂ ଅତିଥିପରାୟଣ ଥିବାରୁ ଅତିଥି ବିଷୟରେ ତାହାଙ୍କର ବହୁ ସମୟ ଯାପିତ ହେଉଥିଲା । ଜଗନ୍ନାଥ ଦାସଙ୍କ ଭାଗବତରେ ଉକ୍ତ ଅଛି— "ଜୀବର ଭଲ ମନ୍ଦ ବାଣୀ, ମରଣ କାଳେ ତାହା ଜାଣି ।" ଏହି ବାକ୍ୟର ସାର୍ଥକତା ଅନେକଠାରେ ସ୍ପଷ୍ଟ ପ୍ରମାଣିତ ହୁଏ । ମୋହର ପିତୃଦେବ ୨ । ୪ ଦିନ ସାମାନ୍ୟ ଜ୍ୱରବେଗରେ ଆକ୍ରାନ୍ତ ହୋଇ ମୃତ୍ୟୁ ଦିବସର ପୂର୍ବାହ୍ଣରେ ବୃହତ୍ ବାର୍ତ୍ତାକୀର ବ୍ୟଞ୍ଜନ ( ପାଣିଦିଆ ବାଇଗଣ ଭରତା ) ସହ ଅନ୍ନ ଭୋଜନ କରିଥିଲେ ଏବଂ ସେହି ଅପରାହ୍ଣ ୩ ଘଣ୍ଟା ସମୟରେ ମହାମ୍ୟ ମାତୃଦେବୀ, ଜ୍ୟେଷ୍ଠା ଭଗିନୀ ଓ ମୋହର ଉପସ୍ଥିତିରେ ନାରାୟଣ ନାମ ଉଚ୍ଚାରଣ କରୁ କରୁ ସ୍ୱର୍ଗାରୋହଣ କରିଥିଲେ । ଏପରି କି ମହାପ୍ରସାଦ ଜଳ ଟିକିଏ ଦେବାକୁ ମଧ୍ୟ ଅବସର ହେଲା ନାହିଁ । କାରଣ ସେ ଦକ୍ଷିଣପାର୍ଶ୍ୱରେ ଶୋଇ ନାରାୟଣ ନାମ ଉଚ୍ଚାରଣ କରୁଥିଲେ ଏବଂ ହଠାତ୍ ଉତ୍ଥାନ ଭାବ ଧାରଣ କରନ୍ତେ ( ଛିଡ଼ା ହୁଅନ୍ତେ ) 'ନାରାୟଣ' ଶବ୍ଦର 'ନାରା' ଏହି ଦୁଇଟି ଅକ୍ଷର ଉଚ୍ଚାରିତ ହେବା ସଙ୍ଗେ ସଙ୍ଗେ ପ୍ରାଣବାୟୁ ଉଡ଼ିଗଲା ।

ମହାଶୟ ଧିତ୍ତୁଦେବ ସ୍ୱୀୟ ପୈତୃକ ଭୂସମ୍ପତ୍ତି ସାହାଯ୍ୟରେ ପରିବାର ବର୍ଗଙ୍କର ଭରଣ ପୋଷଣ କରୁଥିଲେହେଁ ସାମନ୍ତଙ୍କର ସହାୟତାରେହିଁ ପୁତ୍ରକନ୍ୟାଦିଙ୍କର ବିବାହ ଓ ଉପନୟନାଦି ଜନିତ ଅତିରିକ୍ତ ବ୍ୟୟର ସମାଧାନ କରୁଥିଲେ । ଚନ୍ଦ୍ରଶେଖର ନବଦୁର୍ଗର ତଦାନୀନ୍ତନ ବଦାନ୍ୟ ରାଜା ଲଡ଼ୁକେଶ୍ୱର ମାନଧାତାଙ୍କ ନିକଟକୁ ବ୍ରାହ୍ମଣ୍ୟ କର୍ମର ଅନୁଷ୍ଠାନ ନିମନ୍ତେ ମୋହର ପିତାଙ୍କୁ ପଠାଇ ଦକ୍ଷିଣା ଓ ପୁରସ୍କାରରୂପେ ଯେଉଁ ଧନ ଉପାର୍ଜିତ କରାଇ ଦେଉଥିଲେ ତଦ୍ଦ୍ୱାରା ମୋପିତା ଅତିରିକ୍ତ ବ୍ୟୟର ନିର୍ବାହ କରୁଥିଲେ ।

ଖଣ୍ଡପଡ଼ାବାସୀ ପଣ୍ଡିତ ଦାମୋଦର ଦାଶ, ହରି ପରମଗୁରୁ, ରାମ ପରମଗୁରୁ, ଆର୍ତ୍ତବନ୍ଧୁ ପଟ୍ଟନାୟକ ଓ ଅଷ୍ଟାବଧାନୀ ସଦାଶିବ କବିରତ୍ନ ପଟ୍ଟନାୟକଙ୍କ ସଂସର୍ଗରେ ସାମନ୍ତ ବହୁ ସମୟ ଅତିବାହିତ କରୁଥିଲେ । ସାମନ୍ତ ମହୋଦୟ ଅଷ୍ଟାବଧାନୀଙ୍କର ଏକକାଳୀନ ବିଭିନ୍ନ ଆଠ ଗୋଟି ବିଷୟର ସମାଧାନ ଦେଖି ଚମତ୍କୃତ ହେଉଥିଲେ ଏବଂ ଦାମୋଦର ବାହୁନୀପତିଙ୍କର ଫାଁଲ୍ଲ ଚଉପଦୀ ରଚନାରେ ଦୈବୀଶକ୍ତି ସନ୍ଦର୍ଶନ କରି ପ୍ରଭୂତ ଆନନ୍ଦ ଉପଭୋଗ କରୁଥିଲେ । ବାହୁନୀପତି ବିଦ୍ୱାନ୍ ନ ହେଲେହେଁ ଖଣ୍ଡପଡ଼ାର ବାଲ୍ଲୁକେଶ୍ୱର ମହାଦେବଙ୍କ ପ୍ରସାଦରୁ ଅଦ୍ଭୁତ ରଚନାଶକ୍ତି ଉପାର୍ଜନ କରିଥିଲେ ଏବଂ ସେହି ଶକ୍ତି ବଳରେ ସେ ମନୋହର ଚତୁଷ୍ପଦୀ କବିତା ରଚନା କରି ସମସ୍ତଙ୍କୁ ମୋହିତ କରୁଥିଲେ । ସେଥିମଧ୍ୟରୁ ଗୋଟିଏ ଚତୁଷ୍ପଦୀ କବିତା ପାଠକମାନଙ୍କୁ ଉପହାର ଦେଉଅଛି ।

ସରିଗଲାଣି ବୃଷଭାନୁ କିଶୋରୀ ।
ସୋରିଷେକ ଦକ୍ଷା ନ ବହିଲ ହେ ହରି । ଘୋଷା ।

ଦରଶନେଚ୍ଛାକୁ ଅଛ କି ମନ୍ଦ କରି,
କରୁଅଛ ତୁମ୍ଭଙ୍କୁ ସୁମରି ସୁମରି,
ମରିଯିବ ସେ ସିନା ତୁମ୍ଭ ଲାଗି ନବୀନା,
ବିନା ଅପରାଧରେ କଲ ଯା ଏତେ ଅନା,
ଅନାଦର କଲଣି ସବୁ ଭୋଗ ନବୀନା
ବିନା ଦରଶନରୁ ତୁମ୍ଭର । ୧ ।

ଭରିଥିଲ ଯେ ଭୂଷା ଅଙ୍ଗେ ଚତୁରୀ,
ତୁରିତେ ପକାଇଲଣି ବାହାର କରି,
କରି ତାକୁ ଏପରି କି ଯଶ ହେବ ହରି,
ହରି କରଣ ମଣୁଅଛ ଅନଳ ପରି,
ପରିତେଜ୍ୟା କଲଣି ଶେଯ ତୁଳୀ ନାଗରୀ,
ଗରିଷ୍ଠମାନେ ଜବା ଅଧରୀ । ୨ ।

ଧରଣୀ ମଧ୍ୟରେ ଥିଲ କେ ତାକୁ ସରି,
ବାରିଦ-ସୁକୁନ୍ତଳା ତୁଳାଅଙ୍ଗୀ ଅବଳା,
ବଳାବଳ କଲେଣି ତାକୁ ରୁକ୍ମିଣୀ ବାଳା,
ବଳାଗଛ ସମ୍ପତ୍ତିକ ସେ କରଇ ହେଳା,
ହେଳା ନ କର କୁଞ୍ଜବିହାରୀ । ୩ ।

ହାରିଲେଣି ସଖୀଏ ଉପଚାର କରି,
କରିରିପୁମଧ୍ୟା ବସୁଧାକୁ ଆଦରି,
ଦରିଅଛି ସବେଳ ପଲବ ଆଣି ଶେଯ,
ସେ ଯଥାବିଧିମତେ ଶୋଇ ନାରୀବ୍ରଜ,
ବ୍ରଜରାଜ ନନ୍ଦନ ବିଜୟ କର ଆଜ
ଇନ୍ଦୁ ମୁଖୀକି କର ପାରି । ୪ ।

"ଧାରିବାରପଣ ଜଣା ଗଲାଣି ହରି,
ହରିତାଳ ବରଗାର ସଙ୍ଗ ବହରି,
ହରିଚନ୍ଦନ ବୀର—　　ବର ଶ୍ରୀ ନରେଶ୍ୱର,
ସ୍ମରଣ କରି ହରି ପାଦେ ନବେଶି ଶିର,
ସୀରପାଣି-ଅନୁଜ　　ଶୁଣି ହେଲେ ବାହାର,
ହା ରମଣି ହା ରାଧା ସୁମରି । ୫ ।

ଏହି କବିତାଟିରେ ପ୍ରତ୍ୟେକ ପାଦର ଶେଷ ଅକ୍ଷର ଦୁଇଟି ପରବର୍ତ୍ତୀ ପାଦର ଆଦ୍ୟାକ୍ଷର ଦୁଇଟି ସଙ୍ଗେ ସମାନ ହୋଇଥିବାରୁ ମନୋହର ହୋଇଅଛି । ବାହିନୀପତି ଏହି ପଦ୍ୟଟିର ରଚନା ଶେଷ କରି ସୀରପାଣି ଶବ୍ଦର ଅର୍ଥ ବୁଝି ନ ପାରିବାରୁ ସାମନ୍ତଙ୍କ ନିକଟକୁ ଯାଇ ପଚାରିଲେ, "ଆଜ୍ଞା କାଲି ଗୋଟିଏ ଚଉପଦୀ ରଚନା କଲି ଯେ ସେଥିରୁ ଗୋଟିଏ ପଦର ଅର୍ଥ ବୁଝି ପାରୁନାହିଁ ।" କେଉଁପଦ ବୋଲି ସାମନ୍ତ ପଚାରନ୍ତେ ବାହିନୀପତି 'ସୀରପାଣି' ଶବ୍ଦଟି କହିଲେ । ସାମନ୍ତ ପଚାରିଲେ, "ବାହିନୀପତି, ତେମେ ତ ଅର୍ଥ ବୁଝି ପାରୁନାହଁ, କବିତା ବସାଇଲ କିପରି ?" ବାହିନୀପତି କହିଲେ, "ଆଜ୍ଞା, ମୋତେ ସେ ପଦଟି ତ ଦଶିଗଲା, ବସାଇ ଦେଲି । ପଛେ ଭାବିଲାବେଳକୁ ଅର୍ଥ ବୁଝି ପାରିଲି ନାହିଁ, ତେଣୁ ଆପଣଙ୍କୁ ପଚାରିବାକୁ ଆସିଲି ।" ସାମନ୍ତ ତହିଁ ଅର୍ଥ କହି ଦେଲେ ଏବଂ ବାହିନୀପତିଙ୍କ ପ୍ରତି ବାଲୁକେଶ୍ୱର ମହାଦେବଙ୍କର ଅନୁଗ୍ରହ ଦେଖି ବିସ୍ମିତ ହେଲେ ।

**ପାଣ୍ଡିତ୍ୟ କବିତ୍ୱ ଓ ସ୍ମରଣ ଶକ୍ତି—** ଦେବ ଭାଷାର ପ୍ରସୂତି ଏହି ଭାରତବର୍ଷରେ ନାନା ଶାସ୍ତ୍ରରେ ପାରଦର୍ଶୀ ଅସଂଖ୍ୟ ପଣ୍ଡିତ ଜନ୍ମଗ୍ରହଣ କରି ଅକ୍ଷୟ କୀର୍ତ୍ତି ସ୍ଥାପନପୂର୍ବକ ଅମରତ୍ୱ ଲାଭ କରିଅଛନ୍ତି । ଅସାଧାରଣ ପାଣ୍ଡିତ୍ୟ ବଳରେ ଚନ୍ଦ୍ରଶେଖର

ମଧ୍ୟ ଭାସ୍କରାଚାର୍ଯ୍ୟ ପ୍ରମୁଖ ପ୍ରାତଃସ୍ମରଣୀୟ ଜ୍ୟୋତିର୍ବିତ୍‌ମାନଙ୍କ ସଙ୍ଗେ ସମାନ ଆସନ ଗ୍ରହଣପୂର୍ବକ ଭାରତର ମୁଖ ଉଜ୍ଜ୍ୱଳ କରି ଯାଇଅଛନ୍ତି । ଉତ୍କଳର ବାହାର ପ୍ରଦେଶବାସୀ ଏବଂ ପାଶ୍ଚାତ୍ୟ ଦେଶର ପଣ୍ଡିତମାନେ ଚନ୍ଦ୍ରଶେଖରଙ୍କ ପାଣ୍ଡିତ୍ୟର ଯେପରି ପରିଚୟ ପାଇଥିଲେ ଉତ୍କଳବାସୀମାନେ ସେପରି ପାଇପାରି ନ ଥିଲେ । ଉତ୍କଳର ଅରଣ୍ୟାନୀ ମଧ୍ୟରେ ଅବରୁଦ୍ଧ ହୋଇ ଧନ-ଜନ-ସହାୟ-ଶୂନ୍ୟ ଅବସ୍ଥାରେ ସେ ସ୍ୱୀୟ ଅଲୌକିକ ପ୍ରତିଭା ବଳରେ ଯେଉଁ ପାଣ୍ଡିତ୍ୟ ଉପାର୍ଜନ କରିଥିଲେ ତାହା ଅନିର୍ବଚନୀୟ । ସେ ଯଦି ବଙ୍ଗଳା ପ୍ରଭୃତି ପ୍ରଦେଶରେ ଜନ୍ମଗ୍ରହଣ କରିଥାନ୍ତେ, ତେବେ ଜ୍ୟୋତିର୍ବିଦ୍ୟାର ଅପୂର୍ବ ଅଧିକ ଉନ୍ନତି ସାଧନ କରିଥାନ୍ତେ ଏବଂ ବହୁ ନୂତନ ଯନ୍ତ୍ରର ଆବିଷ୍କାର କରିଥାନ୍ତେ । ଅନେକ ପ୍ରସିଦ୍ଧ ପଣ୍ଡିତ ଚନ୍ଦ୍ରଶେଖରଙ୍କ ପାଣ୍ଡିତ୍ୟର ଭୂୟସୀ ପ୍ରଶଂସା କରିଅଛନ୍ତି ଏବଂ କରୁଅଛନ୍ତି । ଭବିଷ୍ୟତରେ ମଧ୍ୟ ତତ୍‌ସମାନଧର୍ମୀ ବ୍ୟକ୍ତିମାନେ ପ୍ରଶଂସା କରିବେ । ଯେତେବେଳେ ସେ ସୂର୍ଯ୍ୟୋପରାଗ ଓ ଚନ୍ଦ୍ରଗ୍ରହଣର ନିର୍ଦ୍ଦିଷ୍ଟ ସମୟ ମିନିଟ୍, ସେକେଣ୍ଡ ପର୍ଯ୍ୟନ୍ତ ଗଣନାକରି ପ୍ରଥମେ ପୃଥିବୀ ସମ୍ମୁଖରେ ଉପସ୍ଥାପିତ କଲେ, ସେତେବେଳେ ସମସ୍ତେ ବିଶେଷ ଚମତ୍କୃତ ହୋଇଥିଲେ । ସେ ପୃଥିବୀର ସ୍ଥିରତା ଓ ସୂର୍ଯ୍ୟର ଭ୍ରମଣ ବିଷୟରେ ସ୍ଥିରସିଦ୍ଧାନ୍ତରେ ଉପନୀତ ହୋଇ ସମୁଦାୟ ପାଶ୍ଚାତ୍ୟମତର ପ୍ରତିକୂଳାଚରଣରେ ପ୍ରବୃତ୍ତ ହେବାରୁ ବୈଦେଶିକ ପଣ୍ଡିତମାନଙ୍କର କୁରକଣ୍ଠାକ୍ଷରେ ପଡ଼ିଥିଲେ । ମାତ୍ର ଆଗତ ପ୍ରଶ୍ନମାନଙ୍କର ସମୁଚିତ ଉତ୍ତର ବିଧାନପୂର୍ବକ ଅକାଟ୍ୟ ଯୁକ୍ତିବଳରେ ସ୍ୱୀୟମତର ପ୍ରାଧାନ୍ୟ ସ୍ଥାପନରେ ସମର୍ଥ ହେବାରୁ ପଣ୍ଡିତମ୍ମନ୍ୟ ସେହି ବୈଦେଶିକମାନଙ୍କର ମୁଖ ମୁଦ୍ରିତ ହୋଇଗଲା ।

ସଂସ୍କୃତ ସାହିତ୍ୟରେ ଚନ୍ଦ୍ରଶେଖରଙ୍କର ଯେପରି ଅଗାଧ ପାଣ୍ଡିତ୍ୟ ଓ କବିତ୍ୱ ଥିଲା ତାହା ତତ୍‌ପ୍ରଣୀତ ସିଦ୍ଧାନ୍ତ ଦର୍ପଣର ଉପୋଦ୍ଘାତ ପ୍ରକାଶ-

ବର୍ଣ୍ଣିତ ପୁରୁଷୋତ୍ତମସ୍ତବ ପାଠକଲେ ସହଜରେ ଉପଲବ୍ଧ ହେବ । ଗ୍ରନ୍ଥକର ବାହୁଲ୍ୟଭୟରେ ଗ୍ରନ୍ଥମଧ୍ୟରୁ କେବଳ ତିନିଗୋଟି ଶ୍ଳୋକ ଉଦ୍ଧୃତ କରି ପାଠକମାନଙ୍କ ସମ୍ମୁଖରେ ଉପସ୍ଥାପିତ କରୁଅଛୁ ।

ଯା ବାଗ୍ଭୂର୍ବ୍ରହ୍ମଶର୍ବୈର୍ଦ୍ଦିତ ଗୁଣବତତୈଃ ଶ୍ରୀପତେର୍ବର୍ଣ୍ଣନାଢ୍ୟା
ସା ସ୍ୟାଦ୍ୱିଶ୍ୱାଶୁଭଘ୍ନୀ ସତତମପି ଯୁତାବଦ୍ୟବଦ୍ଗଦ୍ୟପଦ୍ୟୈଃ ।
ଯା ତଦ୍ଭକ୍ତ୍ୟା ସୁଯୁକ୍ତାପି ଚ ସୁଭଗପଦୈସ୍ତ୍ୟଜ୍ୟତେ ସଦ୍ଭିରେଷା
ତସ୍ମାତ୍କୃଷ୍ଣାଚଳେଶାମଳ ଗୁଣଜଲଧେ ର୍ବର୍ଣ୍ଣ୍ୟତେଽନ୍ନ ବିନ୍ଦୁଃ ।

୨୩ ଶ ପ୍ରକାଶ ପ୍ରଥମ ଶ୍ଳୋକଃ ।

ଅର୍ଥ—ସରସ୍ୱତୀ, ବ୍ରହ୍ମା ଏବଂ ମହାଦେବ ପ୍ରଭୃତି ଦେବତାମାନେ ଯାହାଙ୍କ ଗୁଣସମୂହର ସ୍ତୁତି କରନ୍ତି ସେହି ଲକ୍ଷ୍ମୀପତିଙ୍କର ବର୍ଣ୍ଣନାଦ୍ୱାରା ଯେଉଁ ଗ୍ରନ୍ଥ ଶୋଭିତ ହୋଇଥାଏ, ତାହା ଅସୁନ୍ଦର ଗଦ୍ୟ ପଦ୍ୟରେ ରଚିତ ହୋଇଥିଲେହେଁ ସର୍ବଦା ସଂସାରର ଅମଙ୍ଗଳ ଧ୍ୱଂସ କରେ । ଯେଉଁ ଗ୍ରନ୍ଥରେ ଭଗବଦ୍ୱର୍ଣ୍ଣନା ନ ଥାଏ ସେଥିରେ ପଦବିନ୍ୟାସ ସୁନ୍ଦର ହୋଇଥିଲେହେଁ ସଜ୍ଜନମାନେ ତାହାକୁ ତ୍ୟାଗ କରନ୍ତି । ତେଣୁ ନୀଳାଚଳବାସୀ ଜଗନ୍ନାଥଙ୍କର ନିର୍ମଳ ଗୁଣ-ସମୁଦ୍ରରୁ କଣିକାମାନ ଏହି ଗ୍ରନ୍ଥରେ ବର୍ଣ୍ଣିତ ହେବ ।

ନାନୋଦ୍ୟାନୋଦ୍ୟତାନୋକହବହଲଦଳଚ୍ଛାୟ ଶାନ୍ତାତପାର୍ତ୍ତି—
ର୍ନିତ୍ୟପ୍ରତ୍ୟଗ୍ରସୌଧାବଳିଦଳିତ କଳାନାଥଭୃଚ୍ଛୈଳକାନ୍ତିଃ ।
ଅଶ୍ରାନ୍ତଭ୍ରାନ୍ତବାତପ୍ରମଥିତପଥିକଶ୍ରାନ୍ତିରକ୍ଷେମଶାନ୍ତ୍ୟୈ
ଭୂୟାତ୍ ପର୍ଯ୍ୟନ୍ତ ଗର୍ଜ୍ଜଜ୍ଜଲଧିରଧିରୁଚଃ କମ୍ବୁଭୃତଃ କାପିପୁର୍ଣ୍ଣଃ ।

୨୩ ଶ ପ୍ରକାଶ ୪ର୍ଥ ଶ୍ଳୋକଃ ।

ଅର୍ଥ—ଯେଉଁଠାରେ ଉଦ୍ୟାନରୋପିତ ନାନାପ୍ରକାର ବୃକ୍ଷର ବହଳପତ୍ରଛାୟାଦ୍ୱାରା ରୌଦ୍ରପୀଡ଼ା ଶାନ୍ତ ହୁଏ, ଯହିଁରେ ନିତ୍ୟ ନୂତନ

ନିର୍ମିତ ଅଟ୍ଟାଳିକାସମୂହ ଚନ୍ଦ୍ରଶେଖରଙ୍କର ଆବାସଭୂମି କୈଳାସ ପର୍ବତର ସୌନ୍ଦର୍ଯ୍ୟକୁ ପରାଜିତ କରୁଅଛି, ଯେଉଁସ୍ଥାନରେ ସର୍ବଦା ପ୍ରବାହିତ ପବନ ପଥିକମାନଙ୍କର ଶ୍ରାନ୍ତି ଅପନୋଦନ କରୁଅଛି ଏବଂ ଯାହାର ନିକଟରେ ସମୁଦ୍ର ଗର୍ଜନ କରୁଅଛି ସେହି ଉତ୍କୃଷ୍ଟଶୋଭାମୟୀ ଶଙ୍ଖକ୍ଷେତ୍ର ପୁରୀ ଆମ୍ଭମାନଙ୍କର ଅମଙ୍ଗଳ ଶାନ୍ତି କରୁ ।

ପଠାପଠ୍ଟୁବୁଚୀକୃତପ୍ରକଠହାଠକଣ୍ଠା ର୍ଜଗତ୍—
କଠାହଦଠନାସ୍ଥୂଠୋଲ୍ଲଠକଠାକ୍ଷପାତକ୍ରମଃ ।
ବଠଦ୍ରୂମତଠୋଭଠଦ୍ୟୁଢ ରନଷ୍ଟକୁଠାଠବାଂ
ଫଠାଧରଫଠାଛ୍ଛଠାନଠନପାଠବୀପାଠଯ୍ୟେତ୍ ॥

୧୨ଶ ପ୍ରକାଶ ୯୩ ଶ୍ଳୋକ

ଅର୍ଥ—ଯାହାଙ୍କ ପୀତବସନର ଶୋଭା ବିଶୁଦ୍ଧ ସୁବର୍ଣ୍ଣର କାନ୍ତିକୁ ପରାଜିତ କରୁଅଛି, ଯାହାଙ୍କର ତୀକ୍ଷ୍ଣ କଟାକ୍ଷପାତମାନେ ବ୍ରହ୍ମାଣ୍ଡରୂପ କଟାହ ଅର୍ଥାତ୍ ଜୀବାଦି ସମସ୍ତଙ୍କର ଆଧାର ସୃଷ୍ଟି ହୁଏ, ଯେ କଳ୍ପବଟର ନିକଟରେ ସୁକାଶିତ ହୋଇଅଛନ୍ତି, କାଳୀୟସର୍ପର ଫଣୋପରେ ନୃତ୍ୟକାରୀ ସେହି ଶ୍ରୀକୃଷ୍ଣ ଆମ୍ଭମାନଙ୍କର ଅନିଷ୍ଟସମୂହକୁ ଧ୍ୱଂସ କରନ୍ତୁ ।

ସ୍ମୃତିଶାସ୍ତ୍ରରେ ଚନ୍ଦ୍ରଶେଖରଙ୍କର ଗଭୀର ପାଣ୍ଡିତ୍ୟ ସନ୍ଦର୍ଶନ କରି ତତ୍କାଳୀନ ପଣ୍ଡିତମାନେ ବିସ୍ମିତ ହେଉଥିଲେ । ପୁରୀ ମୁକ୍ତିମଣ୍ଡପ ପଣ୍ଡିତ ସଭାର ସ୍ମୃତିଶାସ୍ତ୍ରସମ୍ବନ୍ଧୀୟ କୌଣସି ବିଷୟରେ ସନ୍ଦେହ ଉପସ୍ଥିତ ହେଲେ ତାହା ସାମନ୍ତଙ୍କୁ ଜ୍ଞାପନ କରାଯାଉଥିଲା ଏବଂ ସେ ଅନାୟାସରେ ସେ ବିଷୟରେ ମୀମାଂସା କରିଦେଉଥିଲେ । ସାମନ୍ତଙ୍କର ସ୍ମୃତ୍ୟଧ୍ୟାପକ ଅନନ୍ତଖଡ୍ଗରାୟ ଓ ଦର୍ଶନଶାସ୍ତ୍ରାଧ୍ୟାପକ ଭଗିରଥନିବାସୀ ପଣ୍ଡିତ ଭୁବନେଶ୍ୱର ବଡ଼ପଣ୍ଡାଙ୍କ ଭିନ୍ନ ତାହାଙ୍କର ପଠଦଶାରେ ଅନ୍ୟ କୌଣସି ପଣ୍ଡିତ ତାହାଙ୍କୁ ପଢ଼ାଇବାକୁ ସାହସ କରୁ ନ ଥିଲେ । ଖଣ୍ଡପଡ଼ା

କଲ୍ଲି ଦୁର୍ଗତ ଯଜ୍ଞେଶ୍ୱରପୁର ଶାସନ ନିବାସୀ ବାଣୀଭୂଷଣ ଉପାଧିଧାରୀ ପଣ୍ଡିତ ଗାଲକଣ୍ଠ ମିଶ୍ର ନବଦ୍ୱୀପରୁ ନ୍ୟାୟଶାସ୍ତ୍ର ଅଧ୍ୟୟନ କରି ଆସି ତତ୍କାଳୀନ ରାଜା କୃଷ୍ଣଚନ୍ଦ୍ରଙ୍କ ସମକ୍ଷରେ ନିଜର ପାଣ୍ଡିତ୍ୟ ପ୍ରକର୍ଷ ଦେଖାଇବାରୁ ରାଜା ତାହାଙ୍କୁ ଦଦାସାମନ୍ତ ଚନ୍ଦ୍ରଶେଖରଙ୍କର ଦର୍ଶନାଧ୍ୟାପକସ୍ୱରୂପ ନିଯୁକ୍ତ କଲେ । ପଣ୍ଡିତ ମହାଶୟ ରାଜକୁଳରେ ଗୁରୁ ହେବା ଶୁଣି ଆନନ୍ଦିତ ହେଲେ ଏବଂ ସାମନ୍ତଙ୍କୁ ପଢ଼ାଇବାକୁ ଆସିଲେ । ମାତ୍ର ଶିଷ୍ୟଙ୍କର ନାନାବିଧ ଜଟିଳ ପ୍ରଶ୍ନରେ ଗୁରୁ ଅସ୍ଥିର ହୋଇ ଉତ୍ତର ଦାନରେ ଅସମର୍ଥ ହେବାରୁ ରାଜାଙ୍କୁ କହିଲେ, "ସାମନ୍ତଙ୍କୁ ପଢ଼ାଇବାର ସାମର୍ଥ୍ୟ ମୋର ନାହିଁ ।" ସେ ଗଭୀର ପାଣ୍ଡିତ୍ୟ ଲାଭ କରିଅଛନ୍ତି ଏବଂ ତାଙ୍କର ଧୀ ଶକ୍ତି ଯେପରି ଅସାଧାରଣ ତାହା ମୁଁ କହିପାରିବି ନାହିଁ ବୋଲି ପ୍ରକାଶ କରି ପଣ୍ଡିତ ମହାଶୟ ନିମ୍ନୋକ୍ତ ଶ୍ଳୋକଟି ପାଠକଲେ ।

ସୀତାଶୋକ ସମଭିର୍ଯ୍ୟଦୈନ୍ୟ ମସୁରକୌର୍ଯ୍ୟଂଚ ମନ୍ଦୋଦରୀ—
କଣ୍ଠେ ମଙ୍ଗଳସୂତ୍ର ମାତ୍ମଲଘୁତା ମେକେଷୁଣା ଯୋଽଲୁନାତ୍ ।
ଲୀଲୋନ୍ମୂଳିତ ସପ୍ତଶାଲ ବିତତେଃ ଶ୍ୱେତାତପତ୍ରାୟୁତ—
ଚ୍ଛେତ୍ତୁସ୍ତସ୍ୟ ବିଦଗ୍ଧତା ବିବରଣେ ବ୍ରହ୍ମାପି ଜିହ୍ମାୟତେ ।

ଏହି ଶ୍ଳୋକଟି ଧର୍ମସୂରି-ପ୍ରଣୀତ ସାହିତ୍ୟରତ୍ନାକର ଗ୍ରନ୍ଥରେ ରାମଚନ୍ଦ୍ରଙ୍କର ନାୟକଲକ୍ଷଣ ବର୍ଣ୍ଣନରେ ଲିଖିତ ଅଛି । ଏହାର ତାତ୍ପର୍ଯ୍ୟ ଏହି:—ଯେ ଗୋଟିଏ ଶରରେ ସୀତାଙ୍କର ଶୋକ, ଦେବତାମାନଙ୍କର ଦୁଃଖ, ରାକ୍ଷସଗଣର କ୍ରୂରତା, ମନ୍ଦୋଦରୀ କଣ୍ଠର ମଙ୍ଗଳସୂତ୍ର, ସୀତା ରକ୍ଷଣରେ ଅସାମର୍ଥ୍ୟରୂପ ନିଜର ଦୁର୍ବଳତା ଛେଦନ କରିଥିଲେ, ଅବଲୀଳା କ୍ରମେ ସପ୍ତତାଳ ଭେଦନ କରିଥିଲେ ଏବଂ ଅଯୁତସଂଖ୍ୟକ ଛତ୍ରର କର୍ତ୍ତନ କରିଥିଲେ, ତାହାଙ୍କର ଚତୁର୍ଯ୍ୟ ବର୍ଣ୍ଣନ ବିଷୟରେ ବ୍ରହ୍ମା ମଧ୍ୟ ସଙ୍କୁଚିତ ହୁଅନ୍ତି ।

ସାମନ୍ତଙ୍କର ଅଲୌକିକ ସ୍ମରଣ ଶକ୍ତି ପାଣ୍ଡିତ୍ୟର ଅନ୍ୟତମ କାରଣ ଥିଲା । ଶତାବଧାନୀ ପଣ୍ଡିତ ଗଟ୍ଟୁଲାଲଙ୍କୁ ଛାଡ଼ିଦେଲେ ତାଦୃଶ ସ୍ମୃତିଧରର ପଣ୍ଡିତ ବହୁଦିନରୁ ଭାରତରେ ଜାତ ହୋଇ ନ ଥିଲେ କହିଲେ ଅତ୍ୟୁକ୍ତି ହେବ ନାହିଁ । ଚନ୍ଦ୍ରଶେଖର ଯାହା ଥରେ ଅଧ୍ୟୟନ କରୁଥିଲେ ତାହା ତଦୀୟ ସ୍ମୃତିପଟରେ ଜୀବନାବଧି ଅଙ୍କିତ ହୋଇ ଯାଉଥିଲା । ଯେତେଗୁଡ଼ିଏ ବିଷୟ ସେ ମୁଖସ୍ଥ ରଖିଥିଲେ, ତାଦୃଶ ସ୍ମରଣଶକ୍ତି ନ ଥିଲେ କେବଳ ଆବୃତ୍ତି କରିବା (ଘୋଷିବା) ସାହାଯ୍ୟରେ କଦାପି ସେପରି ହୋଇପାରି ନ ଥାନ୍ତା । ବିଶେଷତଃ ନିତ୍ୟକର୍ମର ବାହୁଲ୍ୟବଶତଃ ପଠନ ନିମିତ୍ତ ତାହାଙ୍କର ଅଧିକ ସମୟ ନିଯୋଜିତ ହୋଇ ପାରୁ ନ ଥିଲା । କିନ୍ତୁ କୌଣସି ନୂତନ ପୁସ୍ତକର ନାମ ଶୁଣିଲା ମାତ୍ରେ ଜ୍ଞାନଲିପ୍ସା ବଳରେ ସେ କୌଣସିମତେ ତାହା ସଂଗ୍ରହ କରି ତହିଁର ଅଧ୍ୟୟନରେ ପ୍ରବୃତ୍ତ ହେଉଥିଲେ । ସ୍ଥାନାନ୍ତରମାନଙ୍କରୁ ପୁସ୍ତକ ସଂଗ୍ରହ କରିବା ସକାଶେ ସେ ମଧ୍ୟ ଯଥାଶକ୍ତି ବ୍ୟୟ କରି ଲୋକ ନିଯୁକ୍ତ ରଖୁଥିଲେ । ରଘୁବଂଶାଦି ପଞ୍ଚକାବ୍ୟର ପ୍ରାୟ ସମଗ୍ର ଶ୍ଳୋକ କ୍ରମାନ୍ୱୟରେ ସେ ଆବୃତ୍ତି କରିପାରୁଥିଲେ ଏବଂ ନୈଷଧ କାବ୍ୟକୁ ସେ ଅତ୍ୟନ୍ତ ଭଲ ପାଉଥିବାରୁ ତହିଁର ପ୍ରତ୍ୟେକ ଶ୍ଳୋକ ଅନର୍ଗଳଭାବରେ ମୌଖିକ ପାଠ କରିପାରୁ ଥିଲେ । ସଂସ୍କୃତ ଶ୍ରୀମଦ୍‌ଭାଗବତର ପ୍ରାୟ ଅଷ୍ଟାଦଶ ସହସ୍ର ଶ୍ଳୋକ ତଦୀୟ କଣ୍ଠରେ ନୃତ୍ୟ କରୁଥିଲା । ସ୍ମରଣ ବିଷୟରେ ଭାଗବତର ପାଠ ଅପେକ୍ଷା ଶ୍ରବଣ ତାହାଙ୍କର ଅଧିକତର କାର୍ଯ୍ୟକାରୀ ହୋଇଥିଲା । ବଙ୍ଗାକ୍ଷର କିମ୍ବା ନାଗରାକ୍ଷର ପରିଚୟରେ ଅସମର୍ଥ ଥିବାରୁ ସେ ବଙ୍ଗୀୟ ରଘୁନନ୍ଦନ-ସ୍ମୃତି ଉତ୍କଳାକ୍ଷରରେ ଲେଖାଇ ଅଧ୍ୟୟନପୂର୍ବକ ସେଥିର ପ୍ରାୟ ସମସ୍ତ ବିଷୟ ଆୟତ୍ତ କରିଥିଲେ । ସ୍ୱାମୀଗ୍ରନ୍ଥର ଅଧିକାଂଶ ତଦୀୟ ସ୍ମୃତିମନ୍ଦିରରେ ବାସ କରିଥିଲା । ଯେଉଁ ଜ୍ୟୋତିର୍ବିଦ୍ୟାରେ ସେ ଅଧ୍ୟବସାୟ କରିଥିଲେ ତତ୍‌ସମ୍ବନ୍ଧୀୟ ସମସ୍ତ ପ୍ରାଚୀନ ପୁସ୍ତକର ଆୟତ୍ତୀକରଣ ବିଷୟରେ ଉଲ୍ଲେଖ କରିବା

ଅନାବଶ୍ୟକ । [illegible] ରଚନା ସୂର୍ଯ୍ୟସିଦ୍ଧାନ୍ତ ଓ ସିଦ୍ଧାନ୍ତଶିରୋମଣି ପ୍ରଭୃତି ଗଣିତ-ଜ୍ୟୋତିଷ ଶାସ୍ତ୍ରସମୂହର ନିତ୍ୟ ଲୀଳାକ୍ଷେତ୍ର ଥିଲା । କେହି କୌଣସି ଶବ୍ଦ ବା ଭାବର ଉତ୍ଥାପନ କରନ୍ତେ ତତ୍କ୍ଷଣାତ୍ ସେ ସେହି ଶବ୍ଦ ଅଥବା ଭାବଗର୍ଭକ ଶ୍ଲୋକ ପାଠପୂର୍ବକ ବ୍ୟାଖ୍ୟା କରୁଥିଲେ । କୋଷଗ୍ରନ୍ଥରେ ତାହାଙ୍କର ଅସାମାନ୍ୟ ଅଧିକାର ଥିଲେହେଁ ଅପ୍ରଚଳିତ ବା କଠିନ ଶବ୍ଦର ଅର୍ଥ ପ୍ରକାଶ ପ୍ରାଚୀନ କବି ପଣ୍ଡିତଙ୍କର ପ୍ରୟୋଗ ଭିନ୍ନ ଅଭିଧାନର ଆବଶ୍ୟକତା ପଡ଼ୁ ନ ଥିଲା ।

ଓଡ଼ିଆ ସାହିତ୍ୟରେ ଚନ୍ଦ୍ରଶେଖରଙ୍କର ଗଭୀର ଅନୁରାଗ ଥିବାରୁ ସେ ବୈଦେହୀଶ-ବିଳାସ, କୋଟି-ବ୍ରହ୍ମାଣ୍ଡ-ସୁନ୍ଦରୀ ପ୍ରଭୃତି ଭଞ୍ଜୀୟ କବିତା ଏବଂ ଚନ୍ଦ୍ରକଳା, କିଶୋରଚନ୍ଦ୍ରାନନ୍ଦ-ଚମ୍ପୂ ପ୍ରଭୃତି କବିସୂର୍ଯ୍ୟ-କବିତା ଏବଂ ଅନ୍ୟାନ୍ୟ ପ୍ରାଚୀନ କବିଙ୍କର ରଚିତ କାବ୍ୟାଦି ପାଠପୂର୍ବକ ବିନୋଦ କରୁଥିଲେ । ସେ ସବୁର ଅଧିକାଂଶ ସ୍ଥଳ ମୃତ୍ୟୁପର୍ଯ୍ୟନ୍ତ ତାହାଙ୍କର ସ୍ମରଣ ଥିଲା । କବିସୂର୍ଯ୍ୟ ଓ ଉପେନ୍ଦ୍ରଭଞ୍ଜ ଉଭୟ କବିଙ୍କୁ ସେ ପ୍ରଶଂସା କରୁଥିଲେହେଁ ବଳଦେବ ରଥଙ୍କୁ ଅଧିକତର ପସନ୍ଦ କରୁଥିଲେ । ଏକଦା କୌଣସି ଗୋଟିଏ ବାକ୍ୟ ବିଷୟରେ ବକ୍ସି ପଟ୍ଟନାୟକଙ୍କ ସହିତ ତାହାଙ୍କର ପାଠାନ୍ତର ଘଟିବାରୁ ସାମନ୍ତ କହିଲେ, "୩୫ ବର୍ଷ ପୂର୍ବରେ ରାମପରମଗୁରୁଙ୍କ ଘରୁ ମୁଁ ଖଣ୍ଡିଏ ପୋଥି ଆଣି ପଢ଼ିବା ସମୟରେ ଦେଖିଥିଲି ସେଥିରେ ଏହି ବାକ୍ୟଟି ଅଛି । ସେ ପୁସ୍ତକରେ ଗୋଟିଏ ଖଡ଼ୀଚକ ଲାଗିଛି, କଳାପୋଥିଟିଏ, ତାହାର ଅମୁକ ପତ୍ରରେ ଏ ବାକ୍ୟଟି ଥିବାର ମୋହର ସ୍ମରଣ ହେଉଅଛି, ତାହା ଆଣାଇ ଦେଖିବା ।" ତହିଁ ରାମପରମଗୁରୁଙ୍କ ପୁତ୍ର ଯୋଗିନାଥ ପରମଗୁରୁଙ୍କଦ୍ୱାରା ସେ ପୁସ୍ତକ ଆନୀତ ହୋଇ ଦେଖାଗଲା ଯେ ଠିକ୍ ସେତିକି ପତ୍ରଠାରେ ଉକ୍ତ ବାକ୍ୟଟି ଅଛି । କି ଅମାନୁଷିକ ସ୍ମରଣଶକ୍ତି ! ଆଜିକାଲି ଏକଥା ଶୁଣି କେତେକ ବ୍ୟକ୍ତି

ଅବିଶ୍ୱାସ କରିପାରନ୍ତି, ମାତ୍ର ମୁଁ ଏ ବିଷୟରେ ଯୌଗିନାଥ ପରମଗୁରୁ ଓ ଖଣ୍ଡପଡ଼ାର କେତେକ ବୃଦ୍ଧଙ୍କଠାରୁ ଶୁଣିଅଛି ।

ଚନ୍ଦ୍ରଶେଖର ବାଲ୍ୟାବସ୍ଥାରେ ଯାହା କିଛି ପଢ଼ିଥିଲେ ବୃଦ୍ଧାବସ୍ଥାରେ ସେ ସବୁ ଉତ୍ତମରୂପେ ମୁଖସ୍ଥ ଥିଲା । ଯେଉଁମାନେ ତାହାଙ୍କ ସଙ୍ଗରେ ଅଧିକାଂଶ ସମୟ ଆଳାପ କରୁଥିଲେ ସେମାନେ ତଦୀୟ ସ୍ମୃତିଶକ୍ତିର ପ୍ରାବଲ୍ୟ ଦେଖି ବିସ୍ମିତ ହୋଇ ଯାଉଥିଲେ । ଖଣ୍ଡପଡ଼ାବାସୀ ଅଧିକାଂଶ ଲୋକଙ୍କର ପିତୃପିତାମହଙ୍କର ନାମ ସେ ଜାଣିଥିଲେ । କାରଣ ଯାହା କେବେ ଥରେ ସେ ଶ୍ରବଣ କରିଥାନ୍ତି ତାହା ତଦୀୟ ସ୍ମୃତିପଟରେ ଲାଗି ରହିଥାଏ । ଗଡ଼ଜାତର ଅଧିକାଂଶ ରାଜବଂଶର ବିବରଣ ଏବଂ ସେମାନଙ୍କ ବନ୍ଧୁବାନ୍ଧବର ବିବରଣ ମଧ୍ୟ ତାହାଙ୍କୁ ଜଣା ଥିଲା । ବ୍ରାହ୍ମଣ କର୍ମ ଅର୍ଥାତ୍ ଯାଗ, ହୋମ, ଶ୍ରାଦ୍ଧ, ତର୍ପଣ ଓ କୂପାଦିର ପ୍ରତିଷ୍ଠା ପ୍ରଭୃତି ବହୁବିଧ ପାଠ ତାହାଙ୍କର କଣ୍ଠସ୍ଥ ଥିଲା ; ଶ୍ରାଦ୍ଧାଦି କାର୍ଯ୍ୟରେ ପୁରୋହିତଙ୍କ ବିନା ସାହାଯ୍ୟରେ ସମସ୍ତ ବାକ୍ୟ ନିଜେ ପାଠକରି କାର୍ଯ୍ୟ କରୁଥିଲେ । ପୁରୋହିତ ନାମମାତ୍ର ପୁସ୍ତକ ଧରି ବସିଥାନ୍ତି । ମାତ୍ର ପୁରୋହିତ ନ ଆସିଲେ କାର୍ଯ୍ୟାରମ୍ଭ ହୁଏ ନାହିଁ । କାରଣ ସେ ଜାଣନ୍ତି ପୁରୋହିତଙ୍କ ବିନା କୌଣସି କର୍ମ ସାଙ୍ଗ ହୁଏ ନାହିଁ । ସାମନ୍ତଙ୍କ ଗୃହରେ ଯେ ପୌରୋହିତ୍ୟ କରନ୍ତି ସେ ସାଧାରଣ ପୁରୋହିତ ତୁଲ୍ୟ ନୁହନ୍ତି । ସାମନ୍ତଙ୍କ ସାହାଯ୍ୟରେ ସେ ସମସ୍ତ କର୍ମ ବିଶୁଦ୍ଧରୂପେ ଜାଣନ୍ତି ।

ପୂର୍ବକାଳରେ ଶ୍ରୀହର୍ଷ, କାଳିଦାସ ପ୍ରଭୃତି ବହୁ ସ୍ମୃତିଧର ପଣ୍ଡିତଙ୍କର ବିଷୟ ଶୁଣାଯାଏ । ଭୋଜରାଜଙ୍କ ସଭାରେ ନୂତନ କବିତା ରଚନା କରିବାର ଘୋଷଣା ବିଷୟକ ଗଳ୍ପ ଏବଂ ଶ୍ରୀହର୍ଷଙ୍କର ଶାରଦା ପୀଠରେ ଅବସ୍ଥାନ ସମୟରେ ଶବରଣୀଦ୍ୱୟର ଅନାର୍ଯ୍ୟ ଭାଷାରେ କଳହ-ବୃତ୍ତାନ୍ତ-ପ୍ରକାଶ ବିଷୟକ ଗଳ୍ପ ଶ୍ରୁତିଗୋଚର ହେଲେହେଁ ତାହା ବହୁ

ପୂର୍ବକାଳର କଥା । ଆଧୁନିକ ଯୁଗରେ ଚନ୍ଦ୍ରଶେଖରଙ୍କ ସଦୃଶ ସ୍ମୃତିଧର ମନ୍ତ୍ରିତଙ୍କର ବିଷୟ କର୍ଣ୍ଣଗୋଚର ହୁଏ ନାହିଁ । ଚନ୍ଦ୍ରଶେଖରଙ୍କର ସ୍ମୃତିଶକ୍ତି ସମ୍ବନ୍ଧରେ ନାନାପ୍ରକାର ଗଳ୍ପ ଶୁଣାଯାଉ ଥିଲେହେଁ ଗ୍ରନ୍ଥର ବାହୁଲ୍ୟ ଭୟରେ ସେ ସମସ୍ତ ପରିତ୍ୟକ୍ତ ହେଲା ।

ସ୍ୱସ୍ତି ଶ୍ରୀ ଭୋଜରାଜ ତ୍ରିଭୁବନ ବିଜୟିନ୍ ସନ୍ତତଂ ସତ୍ୟବାଦନ୍
ପିତ୍ରା ତେ ଯା ଗୃହୀତା ନବନବତିଯୁତା ସ୍ୱର୍ଣ୍ଣକୋଟିର୍ମଦୀୟା ।
ସର୍ବାଂ ତାଂ ଦେହି ତୂର୍ଣ୍ଣଂ ସକଳବୁଧଜନୈର୍ଜ୍ଞାୟତେ ସତ୍ୟମେତ-
ନ୍ନୋବା ଜାନନ୍ତି କେଚିନ୍ନବକୃତ ମିତି ଚେଦ୍ଦେହି ମେ ଲକ୍ଷମୁଦ୍ରାଃ ।

ପ୍ରବଳ ପ୍ରତାପ ଭୋଜରାଜଙ୍କ ସଭାରେ ଯେତେ ପଣ୍ଡିତ ବିଦ୍ୟମାନ ଥିଲେ ସେମାନେ ସମସ୍ତେ ଅସାଧାରଣ ସ୍ମୃତିଧର ଥିଲେ । କେହି ନୂତନ କବିତା ରଚନା କଲେ ତାହାଙ୍କୁ ଏକ ଲକ୍ଷ ମୁଦ୍ରା ପୁରସ୍କାର ପ୍ରଦତ୍ତ ହେବାର ଘୋଷଣା କରାଯାଇଥିଲା । ମାତ୍ର କୌଣସି ପଣ୍ଡିତ ନୂତନ କବିତା ରଚନା ପୂର୍ବକ ସଭାରେ ପାଠ କରିବା ମାତ୍ରେ ଅନ୍ୟ ପଣ୍ଡିତମାନେ ତତ୍ଶ୍ରବଣରେ ତତ୍କ୍ଷଣାତ୍ ତାହାର ଆବୃତ୍ତି କରି ଦେଉଥିଲେ । ସୁତରାଂ ତାହା ନୂତନ ରଚନାରୂପେ ପରିଗଣିତ ହେଉ ନ ଥିଲା । ଏଣୁ କବିବର କାଳିଦାସ ସ୍ୱୀୟ ଅଲୌକିକ ପ୍ରତିଭା ବଶତଃ ଉଲ୍ଲିଖିତ ଶ୍ଳୋକଟି ରଚନା ପୂର୍ବକ ଉକ୍ତ ଲକ୍ଷମୁଦ୍ରା ପାରିତୋଷିକ ପ୍ରାପ୍ତ ହେବାକୁ ସମର୍ଥ ହୋଇଥିଲେ ।

ଶ୍ଳୋକାର୍ଥ—ହେ ତ୍ରିଭୁବନ ବିଜୟୀ ସର୍ବଦା ସତ୍ୟବାଦୀ ଭୋଜରାଜ ! ଆପଣଙ୍କର ମଙ୍ଗଳ ହେଉ । ଭବତ୍ପିତା ମୋଠାରୁ ଯେଉଁ ଅନେଶ୍ୱତ କୋଟି ସ୍ୱର୍ଣ୍ଣମୁଦ୍ରା କରଜ କରିଅଛନ୍ତି ତାହା ମୋତେ ଶୀଘ୍ର ପ୍ରଦାନ କରନ୍ତୁ । କାରଣ ଏ ବିଷୟରେ ସମସ୍ତ ପଣ୍ଡିତ ଅବଗତ ଥିବାରୁ

ଏହା ସତ୍ୟ ଅଟେ । ଯଦ୍ୟପି ଏହା କେହି ନ ଜାଣନ୍ତି ତେବେ ମୋହର ନୂତନ କବିତାର ପୁରସ୍କାର ଏକ ଲକ୍ଷ ମୁଦ୍ରା ମୋତେ ପ୍ରଦାନ କରନ୍ତୁ ।"

**ଚରିତ୍ର**—ଏହି ପରିଦୃଶ୍ୟମାନ ଜଗତରେ ଚରିତ୍ରବତ୍ତା ମନୁଷ୍ୟର ମେରୁଦଣ୍ଡ ତୁଲ୍ୟ । ଯେପରି ମେରୁଦଣ୍ଡର ଅଭାବରେ ମନୁଷ୍ୟର ଜୀବନଧାରଣ ଅସମ୍ଭବ ସେହିପରି ଚରିତ୍ରବତ୍ତା ନ ଥିଲେ ଲୋକ ମୃତବତ୍ ହୋଇଯାଏ ଏବଂ ନିତାନ୍ତ ନୀଚ ବ୍ୟକ୍ତିର ସୁଦ୍ଧା ଘୃଣାଭାଜନ ହୁଏ । ଯେତେ ପଣ୍ଡିତ ହେଉ ପଛକେ ଚରିତ୍ରହୀନ ହେଲେ ଲୋକଙ୍କ ନିକଟରେ ଅସ୍ପୃଶ୍ୟ ପଶୁ ରୂପରେ ପରିଗଣିତ ହୁଏ । ଯାହାର ପାଣ୍ଡିତ୍ୟ ସଙ୍ଗେ ଚରିତ୍ରବତ୍ତା ମିଶ୍ରିତ ଥାଏ ସେ ଦେବତାସଦୃଶ ପୂଜା ପାଏ । ଚରିତ୍ରବତ୍ତା ଚନ୍ଦ୍ରଶେଖରଙ୍କ ସୁଖ୍ୟାତି ଓ ପ୍ରତିଷ୍ଠାର ପ୍ରଧାନ କାରଣ । ଏହି ଦୁଶ୍ଚରିତ୍ରତାର ଯୁଗରେ ତାଦୃଶ ଚରିତ୍ରବାନ୍ ବ୍ୟକ୍ତି ନାହାନ୍ତି କହିଲେ ଅତିରଞ୍ଜିତ ହେବ ନାହିଁ । ତାହାଙ୍କ ଚରିତ୍ର ସମସ୍ତଙ୍କର ଆଦର୍ଶ ହେଲେ ବହୁ କଲ୍ୟାଣ ସାଧିତ ହୁଅନ୍ତା । କୌଣସିପ୍ରକାର କଳଙ୍କ ତାହାଙ୍କ ଚରିତ୍ରକୁ ଲବ ମାତ୍ର ସ୍ପର୍ଶ କରିପାରି ନ ଥିଲା । ସାଧାରଣ ମନୁଷ୍ୟ ସଙ୍ଗେ ତାହାଙ୍କ ଚରିତ୍ର ତୁଳନୀୟ ନୁହେଁ । ଚନ୍ଦ୍ରଶେଖର ସତ୍ୟ ଓ ସହିଷ୍ଣୁତାରେ ଯୁଧିଷ୍ଠିରଙ୍କ ତୁଲ୍ୟ; ଭଗବଦ୍ଭକ୍ତି ବିଷୟରେ ରାଜର୍ଷି ଜନକ ସଦୃଶ ଏବଂ ସ୍ୱଚ୍ଛତାରେ ଗଙ୍ଗାଜଳ ସମାନ ଥିଲେ । ସେ ନିଜର ସଚ୍ଚରିତ୍ରତା ହେତୁରୁ ସମୟେ ସମୟେ କାହାର କାହାର କୋପଦୃଷ୍ଟିରେ ପଡ଼ିଥିଲେ ଏବଂ ଦାରିଦ୍ର୍ୟକୁ ଚିର ସହଚର ରୂପେ ବରଣ କରିଥିଲେ । ଚନ୍ଦ୍ରଶେଖର ଯଦି ପୃଥିବୀର ସ୍ଥିରତା ଓ ସୂର୍ଯ୍ୟର ଭ୍ରମଣ ବିଷୟରେ ପାଶ୍ଚାତ୍ୟ ମତର ପ୍ରତିକୂଳାଚରଣ କରି ନ ଥାନ୍ତେ ତେବେ ତାହାଙ୍କୁ ଦାରିଦ୍ର୍ୟର କରାଳ କବଳରେ ପଡ଼ିବାକୁ ହୋଇ ନ ଥାନ୍ତା ଏବଂ ଆଜି ତାହାଙ୍କ ପରିବାରବର୍ଗ ଈଦୃଶ ଆର୍ଥିକ ଦୁର୍ଗତି ଲାଭ କରୁ ନ ଥାନ୍ତେ ।

ଚନ୍ଦ୍ରଶେଖରଙ୍କର ଚରିତ୍ରକୁ କେତେଗୁଡ଼ିଏ ବିଭାଗରେ ବିଭକ୍ତ କରି ଆଲୋଚନା କଲେ ସୁବିଧାଜନକ ହେବ । (୧) ଭକ୍ତି, (୨) ଶୌଚ

ଓ ଧର୍ମନିଷ୍ଠା, (୩) ବଦାନ୍ୟତା ଓ ଅତିଥିସେବା, (୪) ସତ୍ୟପ୍ରିୟତା ଓ ସ୍ପଷ୍ଟବାଦିତା, (୫) ଦୟା, କ୍ଷମା ଓ ପରୋପକାରିତା, (୬) କଷ୍ଟସହିଷ୍ଣୁତା ଓ ଧୈର୍ଯ୍ୟ, (୭) ବିନୟ ଓ ସୌଜନ୍ୟ, (୮) ନିର୍ଭୀକତା ବା ସତ୍‌ସାହସ, ଏବଂ (୯) ପରିହାସ-ରସିକତା ଓ ସରସତା, ଏହି ନଅ ଭାଗରେ ବିଭକ୍ତ କରି ଯାଇପାରେ ।

**ଭକ୍ତି**—ପାଣ୍ଡିତ୍ୟ ସଙ୍ଗେ ଭଗବଦ୍‌ଭକ୍ତି ମିଶ୍ରିତ ଥିଲେ ତାହା ସ୍ୱର୍ଣ୍ଣାଳଙ୍କାର ସହିତ ରତ୍ନ ସଂଯୋଗ ତୁଲ୍ୟ ଏବଂ ସୁନ୍ଦର ପୁଷ୍ପରେ ସୁବାସ ସଂଯୋଗ ସଦୃଶ ମନୋହାରୀ ହୁଏ । ଈଶ୍ୱରଭକ୍ତି ସାମନ୍ତଙ୍କ ଚରିତ୍ରର ପ୍ରଧାନ ଅଙ୍ଗ । ତାହାଙ୍କର ଅସାଧାରଣ କବିତ୍ୱ ଥିବା ସ୍ଥଳେ ସେ ଭଗବଦ୍ ବିଷୟ ବର୍ଣ୍ଣନ ଭିନ୍ନ ଅନ୍ୟ କବିତା ରଚନା ନ କରିବା ତହିଁର ନିଦର୍ଶନ ଅଟେ । ତଦୀୟ ଅନର୍ଘ-ସନ୍ଦର୍ଭ ସିଦ୍ଧାନ୍ତଦର୍ପଣର ପ୍ରତ୍ୟେକ ପ୍ରକାଶର ଆଦ୍ୟ ପ୍ରାନ୍ତରେ ଏବଂ ସମୁଦାୟ ଚତୁର୍ବିଂଶ ପ୍ରକାଶରେ ଭଗବଦ୍‌ବର୍ଣ୍ଣନ ଏବଂ ଗ୍ରନ୍ଥ ଶେଷରେ ଜଗନ୍ନାଥାର୍ପଣ ତାହାଙ୍କ ଭକ୍ତିର ଜ୍ୱଳନ୍ତ ନିଦର୍ଶନ ଅଟେ । ଯେ ସାଂସାରିକ ବିଷୟ ମଧ୍ୟରେ ଥାଇ ନାନାବିଧ ବାଧାବିଘ୍ନ ସତ୍ତ୍ୱେ ସର୍ବଦା ଈଶ୍ୱରଙ୍କର ଅନୁଗତ ଥାଏ ସେ ପ୍ରକୃତ ଭକ୍ତପଦବାଚ୍ୟ । ସାମନ୍ତ ବିଷୟାନ୍ତରରେ ବ୍ୟାପୃତ ହୋଇ ସୁଦ୍ଧା ସର୍ବଦା ଈଶ୍ୱର ଚିନ୍ତନ ଓ ଭଗବନ୍ନାମୋଚ୍ଚାରଣରେ କାଳାତିପାତ କରୁଥିଲେ । ସେ ସାକାରବାଦୀ ଥିବାରୁ ପ୍ରତିମା ପୂଜା କରୁଥିଲେ ଏବଂ ଶ୍ରୀକ୍ଷେତ୍ରସ୍ଥ ଜଗନ୍ନାଥଦେବଙ୍କ ପ୍ରତି ଦୃଢ଼ ବିଶ୍ୱାସ ଅର୍ପଣ ପୂର୍ବକ ନିରନ୍ତର ତଦୀୟ ଦର୍ଶନ ବିଷୟରେ ଲାଳାୟିତ ଥିଲେ । ସେ ଶିବ, ଦୁର୍ଗା, ସୂର୍ଯ୍ୟ, ଗଣେଶ ଓ ସରସ୍ୱତୀ ପ୍ରଭୃତି ଦେବ-ଦେବୀଙ୍କୁ ନିଷ୍କାମ ଭାବରେ ପୂଜା କରୁଥିଲେହେଁ ଭଗବଚ୍ଚରଣାରବିନ୍ଦରେ ସତତ ଅସକ୍ତ ଥିଲେ । ଭଗବଦ୍ ଭକ୍ତିପ୍ରାପ୍ତି ଈଶ୍ୱରଙ୍କ ନିକଟରେ ତାହାଙ୍କ ପ୍ରାର୍ଥନାର ପ୍ରଧାନ ବିଷୟ ଥିଲା । ସେ ନିରନ୍ତର କୃଷ୍ଣ ପାଦପଦ୍ମରେ ଭକ୍ତି ରଖି ଅନାସକ୍ତ ଭାବରେ ଗୃହ କାର୍ଯ୍ୟର ପରିଚାଳନା କରୁଥିଲେ ।

ଭଗବାନଙ୍କର ଆରାଧନା ସମୟରେ କୌଣସି ବୈଷୟିକ ବ୍ୟାପାର ତାଙ୍କ କର୍ଣ୍ଣଗୋଚର ହେଲେ ତାହା ବିଷବତ୍ ପ୍ରତୀୟମାନ ହେଉଥିଲା । ଜ୍ୟୋତିର୍ବିଷୟରେ ସେ ଅଧ୍ୟବସାୟୀ ଥିଲେହେଁ ତାହାଙ୍କର ମନ ଭଗବାନଙ୍କ ଭିନ୍ନ ଅନ୍ୟ କୌଣସି ଦିଗରେ ସମ୍ପୂର୍ଣ୍ଣ ଆକୃଷ୍ଟ ହେଉ ନ ଥିଲା । ଦିନେ ସାମନ୍ତ ଦଅଁଘରେ ବସି ଜପ କରିବା ସମୟରେ ଜ୍ୟୋତିର୍ବିଷୟ ମନରେ ଉଦିତ ହେବାରୁ ତାହା ଖଡ଼ି ଗୋଟାଏରେ ବାମ ହସ୍ତରେ କାନ୍ଥରେ ଲେଖିଦେଲେ । ନିତ୍ୟ କର୍ମ ଶେଷରେ ତାଙ୍କ ଜ୍ୟେଷ୍ଠ ପୁତ୍ରଙ୍କୁ କହିଲେ, "ପୀତବାସ, ଆଚ୍ଛା ମୁଁ ଜ୍ୟୋତିଷ ପଢ଼ିଲି; ତାହା ମୋ ନିତ୍ୟ କର୍ମରେ ବ୍ୟାଘାତ କରୁଅଛି ।" ସେ ଏ ବିଷୟ ମଧ୍ୟ ସିଦ୍ଧାନ୍ତ-ଦର୍ପଣର ୧୫ ଶ ପ୍ରକାଶର ୭୧ ଶ୍ଳୋକରେ ଲେଖି ଅଛନ୍ତି । ସେହି ଶ୍ଳୋକ ଏହି ଗ୍ରନ୍ଥର ଉପକ୍ରମରେ ସନ୍ନିବିଷ୍ଟ ହୋଇଅଛି ।

ମନ୍ତ୍ରୋପଦେଷ୍ଟା ଗୁରୁଙ୍କ ପ୍ରତି ତାହାଙ୍କର ଯେପରି ଭକ୍ତି ଥିଲା ତାହା ସାଧାରଣତଃ ଦେଖା ଯାଏନାହିଁ । ସେ ବୁଝିଥିଲେ ଯେ ଗୁରୁର୍ବ୍ରହ୍ମା ଗୁରୁର୍ବିଷ୍ଣୁ ଗୁରୁର୍ଦେବ ମହେଶ୍ୱରଃ, ଗୁରୁଃ ସାକ୍ଷାତ୍ ପରଂ ବ୍ରହ୍ମ ତସ୍ମୈ ଶ୍ରୀଗୁରବେ ନମଃ । ଅଜ୍ଞାନତିମିରାନ୍ଧସ୍ୟ ଜ୍ଞାନାଞ୍ଜନ ଶଲାକୟା, ଚକ୍ଷୁରୁନ୍ମୀଲିତଂ ଯେନ ତସ୍ମୈ ଶ୍ରୀଗୁରବେ ନମଃ । ଅଖଣ୍ଡ ମଣ୍ଡଳାକାରଂ ବ୍ୟାପ୍ତଂ ଯେନ ଚରାଚରଂ, ତତ୍ପଦଂ ଦର୍ଶିତଂ ଯେନ ତସ୍ମୈ ଶ୍ରୀଗୁରବେ ନମଃ ।

ଚନ୍ଦ୍ରଶେଖର ଗୁରୁଙ୍କୁ ଯେଉଁଠାରେ ଦେଖୁଥିଲେ, ଧୂଳି ହେଉ ବା କାଦୁଅ ହେଉ ତତ୍କ୍ଷଣାତ୍ ସେଠାରେ ଦଣ୍ଡପ୍ରଣାମ କରୁଥିଲେ । ଏହିପରି ଅନେକବାର ଘଟିବାରୁ ଗୁରୁଦେବ ସାମନ୍ତଙ୍କୁ କଷ୍ଟ ହେବା ଭୟରେ ପୂର୍ବରୁ ସମ୍ବାଦ ଦେଇ ନିର୍ଦ୍ଦିଷ୍ଟ ସମୟରେ ସାକ୍ଷାତ୍ କରୁଥିଲେ । ସାମନ୍ତ ରାଜଦ୍ୱାର ଭିନ୍ନ ଅନ୍ୟଦ୍ୱାରକୁ ଯାଉନଥିଲେ ହେଁ ବିବାହ ବ୍ରତାଦି କାର୍ଯ୍ୟରେ ଗୁରୁଦେବ ନିମନ୍ତ୍ରଣ କଲେ ତାହାଙ୍କ ଗୃହକୁ ଯାଇ ଭୋଜନ

କରୁଥିଲେ । ସ୍ୱୟଂ ଅଭିବବାନ୍ ହେଲେ ମଧ୍ଯ ଗୁରୁଙ୍କୁ ଯଥାଶକ୍ତି ସାମୟିକ ସାହାଯ୍ୟଦାନ କରୁଥିଲେ । ଗୁରୁଜନମାନଙ୍କମଧ୍ୟରେ ପିତା ମାତା ତାହାଙ୍କ ଚକ୍ଷୁରେ ଦେବତାସଦୃଶ ପରିଦୃଷ୍ଟ ହେଉଥିଲେ । ସେ ଉତ୍ତମରୂପେ ଅବଗତ ଥିଲେ ଯେ ପିତାଧର୍ମଃ ପିତାସ୍ୱର୍ଗଃ ପିତାହି ପରମଂ ତପଃ, ପିତରି ପ୍ରୀତିମାପନ୍ନେ ପ୍ରୀୟନ୍ତେ ସର୍ବ ଦେବତାଃ । ପିତାମାତାଙ୍କର ଆଦେଶ ପ୍ରାପ୍ତି ମାତ୍ରେ ତାହା ଶିରୋଧାର୍ଯ୍ୟ କରି ତଦନୁସାରେ କାର୍ଯ୍ୟସାଧନ କରୁଥିଲେ । ଗନ୍ଥାରମ୍ଭରେ ଗୁରୁ ଓ ପିତାମାତାଙ୍କୁ ପ୍ରଣାମପୂର୍ବକ ସେମାନଙ୍କର ଅନୁଗ୍ରହପ୍ରାର୍ଥନା କରିଅଛନ୍ତି । ବାଲ୍ୟାବସ୍ଥାରେ ପାଠରେ ତାହାଙ୍କର ଅତିଶ୍ରାନ୍ତି ଦେଖି ମାତା ସେଥିରୁ ନିବୃତ୍ତ ହୋଇ ଟିକିଏ ଟିକିଏ ଖେଳିବାକୁ କହୁଥିଲେ । ମାତ୍ର ସାମନ୍ତ ବାଲସୁଲଭ ବଶତଃ କେତେଥର ସେହି ଆଦେଶ ପାଳନ କରି ନ ଥିବାରୁ ପରିଣତବୟସରେ ଅନୁତାପ କରିଥିଲେ ।

ସାମନ୍ତଙ୍କର ବ୍ରାହ୍ମଣଭକ୍ତି ମଧ୍ଯ ଅସାଧାରଣ ଥିଲା । ସେ କହନ୍ତି— "ବର୍ଣ୍ଣାନାଂ ବ୍ରାହ୍ମଣୋ ଗୁରୁଃ", ତେଣୁ ବ୍ରାହ୍ମଣ ଦେଖିବା ମାତ୍ରେ ତାହାଙ୍କୁ ନମସ୍କାର କରୁଥିଲେ । ଏପରି କି ବ୍ରାହ୍ମଣ ମୂର୍ଖ ହୋଇଥିଲେ ହେଁ ତାହାଙ୍କପ୍ରତି ଭକ୍ତିମାତ୍ର ସମ୍ମାନର ତ୍ରୁଟି କରୁ ନ ଥିଲେ । ସେ ଭଗବଦ୍ ବାକ୍ୟରୁ ବୁଝିଥିଲେ ଯେ "ଅବିଦ୍ୟୋ ବା ସବିଦ୍ୟୋ ବା ବ୍ରାହ୍ମଣୋ ମାମକୀ ତନୁଃ ।" ସଦ୍ୟ ଉପନୀତ ବ୍ରାହ୍ମଣ ବାଳକଙ୍କୁ ଦେଖିଲେ ସାମନ୍ତ ନମସ୍କାର କରନ୍ତି ଏବଂ ତାହାକୁ ଆଶୀର୍ବାଦ ଜଣା ନ ଥିଲେ ତାଳପତ୍ରରେ ଲେଖିଦେଇ କହନ୍ତି, "ଏତକ ମୁଖସ୍ଥ କରିବ, କାଲି ଆସି ମୋତେ ଆଶୀର୍ବାଦ କରିବ ।" କି ନିଷ୍କପଟ ଭକ୍ତି । କିପରି ସ୍ୱଧର୍ମବିଶ୍ୱାସ ! ଆଜିକାଲି ଏବମ୍ବିଧ ବ୍ୟବହାର ଦର୍ଶନ କରିବା ଦୂରେ ଥାଉ ଶ୍ରୁତି-ଗୋଚର ମଧ୍ଯ ହେଉନାହିଁ ।

**ଶୌଚ ଓ ଧର୍ମନିଷ୍ଠା**—ମନ ପବିତ୍ର ଥିଲେ, ବାହ୍ୟ ଶୌଚ ଅନାବଶ୍ୟକ ବୋଲି କେତେକଙ୍କର ମତ । ମାତ୍ର ବାହ୍ୟଶୁଚିତା ଅନ୍ତଃଶୌଚର ଦ୍ୱାରସ୍ୱରୂପ । ପ୍ରଥମେ ବାହ୍ୟ ଶୌଚ ହିଁ ଅନ୍ତଃଶୁଚିତ୍ୱ ଆନୟନ କରେ । ଯେଉଁମାନେ ଯୋଗୀ ଏବଂ ଯେଉଁମାନଙ୍କର ତତ୍ତ୍ୱଜ୍ଞାନ ଲବ୍ଧ ହୋଇଥାଏ ସେମାନଙ୍କ ପକ୍ଷରେ ବାହ୍ୟ ଶୌଚ ଅନାବଶ୍ୟକ ହୋଇପାରେ; କିନ୍ତୁ ବିଷୟୀମାନଙ୍କ ପକ୍ଷରେ ବାହ୍ୟଶୌଚ ଅତ୍ୟନ୍ତ ଆବଶ୍ୟକ । ସ୍ନାନର ପୂର୍ବରୁ ଓ ପରେ କିପରି ପବିତ୍ରତା ଅନୁଭୂତ ହୁଏ ତାହା ଅନେକେ ଉପଲବ୍ଧି କରି ପାରୁଥିବେ । ଚନ୍ଦ୍ରଶେଖରଙ୍କର ଅନ୍ତଃଶୁଦ୍ଧି ଯେପରି ବାହ୍ୟଶୌଚ ମଧ୍ୟ ସେହିପରି ଅତୁଳନୀୟ) ଛୁଆଁ ଛୁଇଲ କଥା କହିଲେ, ଆଜକାଲି ଅନେକ ଶିକ୍ଷିତ ବ୍ୟକ୍ତି ଉପହାସ କରିବେ; କିନ୍ତୁ ଚନ୍ଦ୍ରଶେଖରଙ୍କର ପଞ୍ଚବିଧ ବସ୍ତ୍ର ବ୍ୟବହୃତ ହେଉଥିଲା । ସେଥି ମଧ୍ୟରୁ ଛଅପ୍ରକାର ଛୁଆଁ ଓ ଦୁଇ ପ୍ରକାର ଇଲ । ଶେଯଛୁଆଁ ବା ଗାଢଅସ, ପୋଶାଗଛୁଆଁ, ଦାଣ୍ଡଛୁଆଁ, ଦନପିନ୍ଧା ଓ ଦଅଁଘର ଲୁଗା । ସେ ଛୁଆଁ ଲୁଗା ପିନ୍ଧି ଅନ୍ୟ କିଛି କାର୍ଯ୍ୟ କରିବା ଦୂରେ ଥାଉ, ପାନ ପର୍ଯ୍ୟନ୍ତ ଖାଉ ନ ଥିଲେ । ସ୍ନାନ ପରେ ରାତିରେ ଶୟନ ପର୍ଯ୍ୟନ୍ତ ଅଧିକାଂଶ ସମୟ ସେ ଶୁଦ୍ଧବସ୍ତ୍ର ପରିଧାନପୂର୍ବକ କାର୍ଯ୍ୟ କରୁଥିଲେ । ସେ କହୁଥିଲେ, "ଉଚ୍ଛିଷ୍ଟ-ଦୋଷ, ସ୍ପର୍ଶଦୋଷ ଓ ଲେପଦୋଷ ଏହି ତିନିଗୋଟି ବିଷୟ ଯେ ପ୍ରତିପାଳନ ନ କରେ, ସେ ପ୍ରକୃତ ହିନ୍ଦୁ ନୁହେ ।" ପ୍ରସ୍ରାବ କରିଗଲେ ସମସ୍ତ ଗୋଡ଼ହାତ ଧୋଇ କୁଳି କରନ୍ତି । ତଥାପି ସେ ଲୁଗା ପ୍ରସ୍ରାବ-ଛୁଆଁ ହୁଏ । ଏହିପରି ଛୁଆଁଛୁ ପ୍ରଥା ତଦୀୟ ପୂର୍ବ ପୁରୁଷ ନୃସିଂହ ଭ୍ରମରବରଙ୍କ ସମୟରୁ ଆରମ୍ଭ ହୋଇଥିଲା । ଦଣ୍ଡକୁ ବାହାରିଲେ ପାନ ଖାଇବା ଦୂରେ ଥାଉ ସେ କୁଳି କରି ମୁଖ ପରିଷ୍କୃତ କରନ୍ତି । ବହିର୍ଦେଶ ଯିବା ପୂର୍ବରୁ ଏବଂ ଭୋଜନ ଶେଷରେ ତାହାଙ୍କର ଦାନ୍ତ ଖୁଣ୍ଟା ହେବାକୁ ଖଡ଼ିକାଗୁଡ଼ିଏ ପ୍ରସ୍ତୁତ ହୋଇ ରଖା ଯାଇଥାଏ । ପାଇଖାନା ଯିବା

ସମୟରେ ସେ ଗୋଟିଏ ଖଣ୍ଡ ପଞ୍ଜିପତ୍ର ଧରିଥାନ୍ତି । ମନ୍ତ୍ରୋଚ୍ଚାରଣଦ୍ୱାରା ଭୂମିପ୍ରାର୍ଥନାପୂର୍ବକ ସ୍ୱୟଂ ସେଥିରେ ଭୂମିର ଦୁଇ ଅଙ୍ଗୁଳ ଭିତରୁ ମାଟି ଖୋଳି ସେଥିରେ ତାହାଙ୍କର ହାତମାଟି ହୁଏ । କାରଣ ଉପରର ମୃତ୍ତିକା ବିଷ୍ଠା ତୁଲ୍ୟ ଅଶୁଦ୍ଧ । ସେ ପୁରୁଷୋତ୍ତମ ଦେବଙ୍କ ନିତ୍ୟାଗ୍ନିର-ପଦ୍ଧତି ଅନୁସାରେ ସର୍ବଦା ଚଳୁଥିଲେ ଏବଂ ଗୋବିନ୍ଦ ସାମନ୍ତରାୟଙ୍କ ସଙ୍କଳିତ ସ୍ମୃତିସର୍ବସ୍ୱ ଅନୁସାରେ ବ୍ରାହ୍ମଣ୍ୟ କର୍ମର ଅନୁଷ୍ଠାନ କରୁଥିଲେ । ଭଲ୍ଲୁକ ଚର୍ମ ଅଶୁଦ୍ଧ ବୋଲି ସାମନ୍ତ ତାହାକୁ ସ୍ପର୍ଶ କରନ୍ତି ନାହିଁ, ମାତ୍ର ବ୍ୟାଘ୍ର ଓ ମୃଗର ଚର୍ମ ଶୁଦ୍ଧ ଥିବା ଏହି ବାକ୍ୟରେ ଲିଖିତ ଅଛି । "ବୈୟାଘ୍ରେ କାର୍ଯ୍ୟସିଦ୍ଧିର୍ଭବତି ମୃଗଭବେ ଚର୍ମ୍ମଣି ଜ୍ଞାନ ସିଦ୍ଧିଷ୍ଟେଲେ ଶାର୍ଦ୍ଦେଗତାଳଂ ପ୍ରଭବତି ବସନେ କମ୍ବଳେ ଦୁଃଖ ମୋକ୍ଷଃ । ବେଣେ ବତ୍ତଂ ବଚନଂ ଭୂମି ଭବବସନେ ଶୃପନେ ପୁଷ୍ଟି ଶଷ୍ଟ୍ୟା ଦୌର୍ଭାଗ୍ୟଂ ଦାରବେସ୍ୟାତ୍ ଭୂବସୁଖ ନରତିଂ ପ୍ରସ୍ତରେ ବ୍ୟାଧି ଦୌସ୍ଥ୍ୟଂ ।" ସାମନ୍ତ ସର୍ବଦା ଚେଲାସନରେ ଓ ସ୍ୱସ୍ତିକାସନରେ ବସି ଜପ ଧ୍ୟାନ କରୁଥିଲେ । ସେ ପ୍ରତ୍ୟହ ଛଅ ଯୋଡ଼ା ଲୁଗା ବ୍ୟବହାର କରୁଥିଲେ । ଅପର ଦିନକୁ ତାହା ଧୌତ ହୋଇ ରଖାଯାଇ ଥାଏ । ସାମନ୍ତ କାଗଜ ଛୁଇଁଲେ ଛୁଆଁ ହେଉଥିଲେ । କୌଣସି ସ୍ଥାନରେ ବସିବାକୁ ହେଲେ ସେଠାରେ ପୂର୍ବରୁ ଜଳସେଚନ ହୁଏ । ତାହାଙ୍କ ଗୃହର ବାସନଗୁଡ଼ିକ ମଙ୍ଗା ହେବା ପରେ ଶୁଷ୍କ ବସ୍ତ୍ରରେ ପୋଛା ହୋଇ ସେଥିରୁ ପାଣି ଛଡ଼ିଲେ ତାହା ଶୁଦ୍ଧ ହୁଏ ଏବଂ ସେଥିରେ ଭଲ ଜଳ ସେଚନ କରାଯାଇ ତାହା ପାକଶାଳାକୁ ବା ଦେବ ଗୃହକୁ ନିତ ହୁଏ । ଇଦାନିଂ ଅସ୍ପୃଶ୍ୟତା-ନିବାରଣର ବ୍ୟବସ୍ଥା ସଙ୍ଗେ ଚନ୍ଦ୍ରଶେଖରଙ୍କର ବ୍ୟବହାରର ଆକାଶ ପାତାଳ ପ୍ରଭେଦ ଦେଖାଯାଏ । ଗୀତାରେ ଉକ୍ତ ଅଛି "ସ୍ୱଧର୍ମେ ନିଧନଂ ଶ୍ରେୟଃ ପରଧର୍ମୋ ଭୟାବହଃ ।" ଯାହାର ଯେଉଁ ଧର୍ମ, ସେ ତଦନୁଯାୟୀ ଚଳି ଚଳି ମୃତ୍ୟୁ ହେଲେ ମଧ୍ୟ ମଙ୍ଗଳ ହୁଏ ।

ସାମନ୍ତଙ୍କର ଧର୍ମନିଷ୍ଠା ବିଷୟରେ କବିରତ୍ନ ଫକୀର ବ୍ରହ୍ମାଙ୍କଠାରୁ ଶ୍ରୁତ—କେହି ଜଣେ ସାମନ୍ତଙ୍କର ବ୍ୟବହୃତ କୂପ ମଧ୍ୟରେ ପିଅଜ ଚୋପା ପକାଇ ଦେଇ ଥିବାରୁ ତାହା ଅପବିତ୍ର ବୋଧ କରି ସାମନ୍ତ ସେହି କୂପରୁ କେତେକ ଜଳ ନିଷ୍କାଷିତ କରାଇ ଦେଇଥିଲେ । କାରଣ ପଲାଣ୍ଡୁ ଅତ୍ୟନ୍ତ ଅମେଧ୍ୟ ପଦାର୍ଥ ଅଟେ । ତେଣୁ ତାହା ଦେବ ଦେବୀଙ୍କର ନୈବେଦ୍ୟ ମଧ୍ୟରେ ଗୃହୀତ ହୁଏ ନାହିଁ । ବୈଜ୍ଞାନିକ ମତରେ ମଧ୍ୟ ପଲାଣ୍ଡୁ ଏ ଦେଶର ଜଳବାୟୁ ପକ୍ଷରେ ଅତ୍ୟନ୍ତ ଅପକାରୀ ଅଟେ । ବାସ୍ତବିକ ଯେଉଁମାନେ ଅଜ୍ଞତାବଶତଃ ତାହା ପ୍ରତି ଅତ୍ୟନ୍ତ ଆସକ୍ତ ସେମାନଙ୍କର ସାବଧାନ ହେବା ଉଚିତ ।

୧୮୯୪ ମସିହାରେ କଲିକତାର ଦରବାରରେ ଯୋଗ ଦେବାକୁ ଯେତେବେଳେ ନିମନ୍ତ୍ରଣ ପତ୍ର ଆସିଥିଲା, ସେତେବେଳେ ସାମନ୍ତ କହିଲେ, "ମୁଁ ଜାହାଜରେ କଲିକତା ଗଲେ ମୋର ନିତ୍ୟକର୍ମରେ ବ୍ୟାଘାତ ଘଟିବ ।" ସୁତରାଂ ସେ ସେଠାକୁ ଯିବାକୁ ନାସ୍ତି କରି ପଠାଇଲେ । କି ଧର୍ମନିଷ୍ଠା ଓ ସାଂସାରିକ ସମ୍ମାନ ପ୍ରତି ଅନାସକ୍ତି । ସମ୍ପ୍ରତି ଏରୂପ କାର୍ଯ୍ୟରେ କାହାର ଅନିଚ୍ଛା ହେବା ଦୂରେ ଥାଉ ବରଂ ସେ ସେଥିପାଇଁ ଅର୍ଥ ବ୍ୟୟ ଓ ନାନା ପ୍ରଯତ୍ନ କରିବାର ଦେଖାଯାଏ । ପାଠମାନଙ୍କର ଅବଗତି ନିମନ୍ତେ କଲିକତାରୁ ଆସିଥିବା ପତ୍ରର ପ୍ରତିଲିପି ପ୍ରକାଶିତ ହେଲା—

Government of Bengal.
Political Department,
Calcutta, the 8th March 1894

Dear Sir,

The Lieutenant-Governor will hold a Darbar in the reception rooms at Belvedere on Tuesday, the

20th instant, at 5 P. M., for the purpose of investing you and other gentlemen with the titles which have been bestowed upon you by His Excellency the Viceroy and Governor-General. I am desired to request that, if possible, you will be so good as to attend at Belvedere not later than 4-45 P. M., on the above date.

The favour of a very early reply is requested informing me whether you will be able to attend.

Yours truly.
Sd/ Illegible
Under-Secretary.

N. B. Gentlemen to be invested should drive in by the side gate opposit the Alipore Jail and enter the house by the flight of stone steps on the south side.

To
Mahamahopadhyaya Chandra Sekhar Sinha
Hari Chandana Mahapatra Samanta.

ହିନ୍ଦୁଧର୍ମରେ ଯେତେ ପ୍ରକାର ବ୍ରତ ଓ ଉପବାସର ବିଧି ଅଛି ସାମନ୍ତ ପ୍ରାୟ ସେ ସମସ୍ତର ପାଳନ କରିଥିଲେ । କୃଚ୍ଛ୍ର ଚାନ୍ଦ୍ରାୟଣ ବ୍ରତର ଅନୁଷ୍ଠାନରେ ସେ ଦୁର୍ବଳ ହୋଇ ଯାଉଥିଲେ ହେଁ ତାହା ଛାଡୁନଥିଲେ । କୃଷ୍ଣପକ୍ଷ ପ୍ରତିପଦ ତିଥିରେ ୧୫ ଗୁଣ୍ଡା, ତତ୍ପର ଦିନ ୧୪ ଗୁଣ୍ଡା, ଏହିପରି କ୍ରମରେ ଅମାବାସ୍ୟା ଦିନ ଏକଗୁଣ୍ଡା ଏବଂ ଶୁକ୍ଳପକ୍ଷ ପ୍ରତିପଦ ଠାରୁ କ୍ରମରେ ଦୁଇ ତିନି ଗୁଣ୍ଡା ହିସାବରେ ପୂର୍ଣ୍ଣମୀ ଦିନ ୧୫ ଗୁଣ୍ଡା ଭୋଜନ କରିବା ଚାନ୍ଦ୍ରାୟଣ ବ୍ରତର ବିଧି ଅଟେ । ଶିବରାତ୍ରି ଦିନ ଚନ୍ଦ୍ରଶେଖର ଶିବ ମନ୍ଦିରରେ ବ୍ରାହ୍ମଣମାନଙ୍କ ସଙ୍ଗେ ରାତ୍ରି ଜାଗରଣ ପୂର୍ବକ ଶ୍ଳୋକ ଓ

ସ୍ତୋତ୍ରାଦିର ଅର୍ଥ କରୁଥିଲେ । ସେହି ସୂତ୍ରର ଦୃଶ୍ୟ ଏହି ଲେଖକର ଅନୁଭୂତିରେ ଅଛି ।

କୌଣସି ଗ୍ରହ ଦୁଷ୍ଟ ହେଉଥିଲେ କିମ୍ବା ନିଜ ପ୍ରତି କ୍ରୁର ଦୃଷ୍ଟିପାତ କରୁଥିଲେ ସାମନ୍ତ ଗ୍ରହ ହୋମ କରାଇଥାନ୍ତି ଏବଂ ଦାନ କରିବାର ବାକ୍ୟ-ଗୁଡ଼ିକ ତାଳପତ୍ରରେ ଲେଖି ଦେଇଥାନ୍ତି । ସେଥିରେ ପୁରୋହିତ ଉଚ୍ଚାରଣ କରି ନପାରିଲେ ସ୍ପଷ୍ଟ ଉଚ୍ଚାରଣ ପର୍ଯ୍ୟନ୍ତ ସେ ତାହାଙ୍କୁ ପୁନଃ ପୁନଃ ବୋଲଉଥାନ୍ତି । ଦିନେ ହୋମ ସମୟରେ ପୁରୋହିତ "ବୁଧ" ପରିବର୍ତ୍ତିରେ 'ବୃଦ୍ଧ ମହାଗ୍ରହାୟ ନମଃ' ବୋଲି ଆରମ୍ଭ କରନ୍ତେ ସାମନ୍ତ କହିଲେ, "ମୁଁ ତ ସାନ ବୁଧଙ୍କପାଇଁ ହୋମ କରାଉଅଛି, ତୁମ୍ଭେ ବଡ଼ ବୁଧଙ୍କୁ କାହିଁକି ଡାକୁଅଛ ?" ତହୁଁ ପୁରୋହିତ ନିଜର ଉଚ୍ଚାରଣ ଦୋଷ ବୁଝିପାରି ଲଜ୍ଜିତ ହେଲେ । ପୁରୋହିତ ପୁଷ୍ପ ଛଣ୍ଡାଇ ଦେବତାଙ୍କ ଉପରେ ନିକ୍ଷେପ କରିବା ସମୟରେ 'ପୁଷ୍ପାଣି ବୌଷଟ୍' ବୋଲି କହିବାରୁ ସାମନ୍ତ କହିଲେ, "ଗୋଟିଏ ପୁଷ୍ପ ତ ହେଉନାହିଁ, ପୁଷ୍ପାଣି କିପରି ହେଲା ?" ଏଥିରୁ ସାମନ୍ତଙ୍କର ବାକ୍ୟ ଓ କାର୍ଯ୍ୟର କିପରି ସାମଞ୍ଜସ୍ୟ ଥିଲା ତାହା ସହଜରେ ପ୍ରମାଣିତ ହେଉଅଛି ।

ପ୍ରତି ଗୁରୁବାର ଦିନ ଗୃହର ଲକ୍ଷ୍ମୀ ଦେବୀଙ୍କ ନିକଟରେ ଗୁରୁବାର-କଥା ପାଠ କରାଯାଏ । ଥରେ ପୁରୋହିତ ପୂଜା ଶେଷରେ ଉକ୍ତ କଥା କହିବାକୁ ଆରମ୍ଭ କରନ୍ତେ ସାମନ୍ତ କହିଲେ, "ପୋଥିରୁ ଦୁଇଟି ପତ୍ର ହଜିଯାଇଛି, ତେବେ ତ ପଢ଼ିପାରିବ ନାହିଁ, ମୋହର ମୁଖସ୍ଥ ଅଛି; ମୁଁ ପଢ଼ିଦେଉଛି, ତେବେ ପୁସ୍ତକ ଧରିଥାଅ ।" ଏହା କହି ସମସ୍ତ କଥା ନିଜେ ମୌଖିକ ପାଠ କରିଦେଲେ ।

ପ୍ରତିବେଶୀ କୁଳୀନ ବ୍ରାହ୍ମଣ-ଗୃହରୁ ବିବାହ ବ୍ରତାଦି କାର୍ଯ୍ୟରେ ପିଷ୍ଟକ ବ୍ୟଞ୍ଜନାଦି ଚନ୍ଦ୍ରଶେଖର ଗ୍ରହଣ କରନ୍ତି । ସେଥିପାଇଁ ପୂର୍ବରୁ

ନିମନ୍ତ୍ରଣୀୟ ପଦାର୍ଥ ନାରିକେଳ ପୁଗାଦି ତାହାଙ୍କୁ ଦିଆ ଯାଇଥାଏ ଏବଂ ନିର୍ଦ୍ଦିଷ୍ଟ ଦିବସର ପୂର୍ବଦିନ ମୌଖିକ କୁହା ଯାଇଥାଏ । ମାତ୍ର ସାମନ୍ତଙ୍କୁ ପ୍ରସାଦ ଦେବାକୁ ହେଲେ କାର୍ଯ୍ୟକାରୀଙ୍କୁ ବଡ଼ ସାବଧାନ ହେବାକୁ ପଡ଼େ । ବ୍ରାହ୍ମଣ ଭୋଜନ ଶେଷ ନ ହେଲେ ପ୍ରସାଦ ଗୃହୀତ ହୁଏନାହିଁ କିମ୍ବା ଯଦି ୧୨ ଟା ପରେ ମହାନଣା ହୋଇଯିବାରୁ ସାମନ୍ତ କିମ୍ବା ତଦୀୟ ପୁତ୍ର କଳତ୍ରାଦି କେହି ଅନ୍ନ ଭୋଜନ କରନ୍ତି ନାହିଁ । ଏକଦା ଜଣେ ବଶିଷ୍ଠ ବ୍ରାହ୍ମଣ ସ୍ୱୀୟ ପୁତ୍ରର ଉପନୟନ ଦିନ ବ୍ରାହ୍ମଣଭୋଜନ ହେବା ପୂର୍ବରୁ ଯଦି ବିଳମ୍ବ ହୋଇଯିବା ଭୟରେ ସାମନ୍ତଙ୍କ ଗୃହକୁ ପ୍ରସାଦ ନେଲେ । ସାମନ୍ତ ତାହା ଦେଖି କହିଲେ, "ତମର ତ ଏଥର ବଡ଼ ଚଞ୍ଚଳ ହୋଇଗଲା ?" ବ୍ରାହ୍ମଣ ଉତ୍ତର ଦେଲେ, "ବ୍ରାହ୍ମଣ-ଭୋଜନ ହୋଇନାହିଁ, ବିଳମ୍ବ ହୋଇଯିବ ବୋଲି ଆଗେ ନେଇଆସିଲି ।" ତାହା ଶୁଣି ଚନ୍ଦ୍ର-ଶେଖର ଚମକ୍ତୃତ ହୋଇ କହିଲେ, "ମହାପାତ୍ରେ, କି କଲ ! ବ୍ରାହ୍ମଣ-ମାନଙ୍କୁ ଆମ୍ଭର ଉଚ୍ଛିଷ୍ଟ ଦେବ କିନା ! ବର୍ତ୍ତମାନ ଏହା ଆମ୍ଭ ଗୃହକୁ ଆସି ଥିବାରୁ ଅନ୍ନ ବ୍ରାହ୍ମଣ-ଯୋଗ୍ୟ ହେବନାହିଁ, ତେଣୁ ଏହାସବୁ ପୋତିବାକୁ ହେବ ।" ଏହା କହି ଭୃତ୍ୟଦ୍ୱାରା ଦାଣ୍ଡ ଦୁଆରେ ଗାତ ଖୋଳାଇ ସେ ସମସ୍ତ ଜିନିଷ ନିଜେ ଥାଇ ପୋତାଇ ଦେଲେ । କାର୍ଯ୍ୟକାରୀ ବ୍ରାହ୍ମଣ ଅତ୍ୟନ୍ତ ଲଜ୍ଜିତ ହେଲେ ଓ ସେହିଦିନଠାରୁ ଅନ୍ୟାନ୍ୟ ବ୍ରାହ୍ମଣମାନେ ସାବଧାନ ହୋଇଗଲେ । କି ଅସାଧାରଣ ଧର୍ମନିଷ୍ଠା ! ବର୍ତ୍ତମାନ ଯୁଗରେ ଏଭଳି ଘଟନା ଅବିଶ୍ୱାସଯୋଗ୍ୟ ହୋଇପାରେ, କିନ୍ତୁ ଏହା ୩୦ ବର୍ଷ ପୂର୍ବର ପ୍ରତ୍ୟକ୍ଷ ଘଟନା ।

କ୍ଷତ୍ରିୟ ଜାତିର ବେଦରେ ଅଧିକାର ନ ଥିବାରୁ ସାମନ୍ତ ନିୟମିତ ରୂପେ ବେଦପାଠ କରି ନଥିଲେ । ମାତ୍ର ଯେଉଁସବୁ ମନ୍ତ୍ର ଶୁଣି ଶୁଣି ତାହାଙ୍କର ମୁଖସ୍ଥ ଥିଲା ସେସବୁ ବ୍ରାହ୍ମଣମାନଙ୍କୁ ତୁଣ୍ଡରେ କହି ନଥିଲେ,

କାରଣ ବ୍ରାହ୍ମଣଙ୍କୁ ମନ୍ତ୍ରୋପଦେଶ ଦେବା କ୍ଷତ୍ରିୟ ଜାତିର ଅଧିକାର ନାହିଁ । ଆବଶ୍ୟକ ହେଲେ କୌଣସି ମନ୍ତ୍ର ସେ କେବଳ ତାଳପତ୍ରରେ କିମ୍ବା ଖଡ଼ୀରେ ଲେଖିଦିଅନ୍ତି ।

ପୁରୋହିତଙ୍କର ଦେବପୂଜା ଶେଷରେ ନୈବେଦ୍ୟ ପ୍ରସାଦରୁ ଚଣ୍ଡ ପ୍ରାପ୍ୟ ଥାଏ । ବିଷ୍ଣୁପୂଜାର ଦଶାଂଶ, ଦେବୀପୂଜାର ଚତୁର୍ଥାଂଶ ଏବଂ ଗଣେଶ ପୂଜାର ସମୁଦାୟ ପ୍ରସାଦ ସାମନ୍ତଙ୍କ ଗୃହରୁ ପୁରୋହିତ ପାଉଥିଲେ । ପ୍ରଥମେ ନୈବେଦ୍ୟରୁ ଯେଉଁ ଚଣ୍ଡ ବାହାର କରି ଦିଅନ୍ତି ତାହା ଚଣ୍ଡ-ନୈବେଦ୍ୟ ନାମରେ ଅଭିହିତ, ତାହା ପୁଣି ବିଷ୍ୱକ୍‌ସେନ ( ବିଷ୍ଣୁଙ୍କର ପ୍ରତିହାରୀ ) ଙ୍କୁ ପାଣିଛଡ଼ାଇ ଦିଆଯାଏ, 'ବିଷ୍ୱକ୍ ସେନାୟ ଚଣ୍ଡନୈବେଦ୍ୟଂ ନମଃ ।' ପୁନଶ୍ଚ ଅନ୍ୟ ପ୍ରସାଦ ସବୁ ବୈଷ୍ଣବମାନଙ୍କୁ ଅର୍ପଣ କରାଯାଏ ।"ପ୍ରସାଦଂ ବାସୁଦେବସ୍ୟ ସର୍ବେ ଗୃହ୍ଣନ୍ତୁ ବୈଷ୍ଣବାଃ ।" ଏହିପରି ପୂଜା ଶେଷହେଲେ ଚଣ୍ଡ ନୈବେଦ୍ୟଗୁଡ଼ିକ ପୁରୋହିତଙ୍କୁ ଦିଆଯାଏ । ପର୍ବ ଦିନମାନଙ୍କରେ ପୂଜା ଶେଷରେ ଚଣ୍ଡ ଦେବାକୁ ସାମନ୍ତ ନିଜେ ଉପସ୍ଥିତ ହୁଅନ୍ତି । କାଳେ ପୁତ୍ର କଳତ୍ରାଦି ଭଲ ପଦାର୍ଥଗୁଡ଼ିକରୁ ଚଣ୍ଡ ଦେବେନାହିଁ, ଏହି ଆଶଙ୍କା ତାହାଙ୍କ ମନରେ ଜାତହୁଏ । ପର୍ବାଦି ବିଶିଷ୍ଟ ଦିବସରେ ସାମନ୍ତ କହନ୍ତି, "ପୁରୋହିତେ ସିନା ତାଙ୍କ ପାଉଣା ନେଲେ, ଆମ ଘରୁ ତ ତାଙ୍କୁ କିଛି ଦିଆଗଲା ନାହିଁ ।" ଏହା ଶୁଣି ସାମନ୍ତଙ୍କ ପତ୍ନୀ ପୁନଶ୍ଚ ଘରୁ କିଛି ପିଷ୍ଟକ ପ୍ରଭୃତି ପୁରୋହିତଙ୍କୁ ଦିଅନ୍ତି ।

ଚନ୍ଦ୍ରଶେଖରଙ୍କ ଲୋକାନ୍ତରର ପ୍ରାୟ ଚୌରବର୍ଷ ପୂର୍ବର ଘଟନା ଶୁଣିଲେ ଜଣାଯାଏ ଯେ ଧର୍ମନିଷ୍ଠା ନିକଟରେ ତଦୀୟ ପୁତ୍ର ହୁଅନ୍ତୁ ବା ପତ୍ନୀ ହୁଅନ୍ତୁ କାହାରି ପ୍ରତି ସ୍ନେହର ସ୍ଥାନ ନଥାଏ । ତଦୀୟ ପତ୍ନୀ ପ୍ରତ୍ୟହ ସାମନ୍ତଙ୍କଠାରୁ ଗୀତାର ଦ୍ୱାଦଶ ଅଧ୍ୟାୟର ଭକ୍ତିଯୋଗ ଶ୍ରବଣ କରନ୍ତି । ଏକଦା ଦ୍ୱାଦଶୀ ଅଳ୍ପ ଥିବାରୁ ଶୀଘ୍ର ନିତ୍ୟକର୍ମ ଶେଷକଲେ ଦ୍ୱାଦଶୀ

ପାରଣା ହେବ ବୋଲି ପତ୍ନୀଙ୍କୁ ଜଣାଇଲେ; ମାତ୍ର ସେଦିନ ପତ୍ନୀ ଗୀତା ଶ୍ରବଣ କରିବାକୁ ଅନିଚ୍ଛା ହେଲେ ମଧ୍ୟ ଗୃହକାର୍ଯ୍ୟ ବଶତଃ ଆଗମନରେ ଟିକିଏ ବିଳମ୍ବ କରିଦେଲେ । ତହୁଁ ସାମନ୍ତ କହିଲେ, "ତମର କ'ଣ ମୋଠାରେ ପୂର୍ବ ସ୍ନେହ ଅଛି ? ଏତେବେଳେ ତ ମୁଁ ବୁଢ଼ା ହୋଇଗଲିଣି, ସେତେବେଳେ ଯିନା ମୁଁ ଡାକଦେଲେ ମୋ ଡାକକୁ କାନ ଡେରିଥାଅ ।" ଏହିପରି କଟୁକଥା କହିବାରୁ ପତ୍ନୀଙ୍କ ଚକ୍ଷୁରୁ ଅଶ୍ରୁ ବିଗଳିତ ହେଲା ।

ସାମନ୍ତଙ୍କର ଜ୍ୟେଷ୍ଠପୁତ୍ର ପୀତବାସ ସିଂହ ସଂସ୍କୃତ ସାହିତ୍ୟରେ ବିଶେଷ ବ୍ୟୁତ୍ପନ୍ନ ଥିଲେହେଁ ଜ୍ୟୋତିଷ ଶାସ୍ତ୍ରରେ ସମ୍ୟକ୍ ଅଭିଜ୍ଞ ନ ଥିଲେ । ସେ ଦିନେ ରାତିରେ ବିପତ୍ତିରରେ ପତ୍ନୀଙ୍କ ଅବାସକୁ ଗମନ କରିଥିବାରୁ ସାମନ୍ତ ଏକଥା ଜାଣିପାରି ସକାଳୁ ପୁରୋହିତଙ୍କୁ କହିଲେ ଯେ କାଲି ପୀତବାସଙ୍କର ବିପତ୍ତିର ଥିଲା । ସେ କାଲି ଉଅସ ଅଢ଼େ ପତ୍ନୀ କରିଥିଲେ । ସେଥିପାଇଁ ଗୁଡ଼ ପ୍ରାୟଶ୍ଚିତ୍ତ କରିବାକୁ ହେବ । ତାହାଙ୍କୁ ନ କହି କିମ୍ବା ବାକ୍ୟ ନ କରି ଚୌପଦୀଏ ଗୁଡ଼ ଓ ଗୃହେକି ପଇସା ପୀତବାସଙ୍କୁ ଛୁଆଇଁ ତୁମ୍ଭେ ନେଇଯାଅ । ପୁରୋହିତ ସେହିପରି କଲେ; କିନ୍ତୁ ପୁତ୍ର ତାହାପରେ ଜାଣିପାରି ଲଜ୍ଜିତ ହେଲେ । ସାମନ୍ତଙ୍କର ଆଗ୍ରହ ଓ ଧର୍ମନିଷ୍ଠା ଲେଖିବାକୁ ହେଲେ ଗୋଟିଏ ସ୍ୱତନ୍ତ୍ର ପୁସ୍ତକ ହୋଇଯାରେ ।

**ବଦାନ୍ୟତା ଓ ଅତିଥି ସେବା** } ଲୋକ ପାଣ୍ଡିତ୍ୟ ବଳରେ କେବଳ ଶିକ୍ଷିତ ସମାଜରେ ଆଦୃତ ହୁଏ, ମାତ୍ର ବଦାନ୍ୟତା ଗୁଣରେ ଲୋକକୁ କି ପଣ୍ଡିତ କି ମୂର୍ଖ ସମସ୍ତେ ଅତିଶୟ ଆଦର ସମ୍ମାନ କରନ୍ତି ଏବଂ ଦେବତା ତୁଲ୍ୟ ଜ୍ଞାନ କରନ୍ତି । ହରିଶ୍ଚନ୍ଦ୍ର, ବଳି, କର୍ଣ୍ଣ ପ୍ରଭୃତି ସେହି ଦାତୃତ୍ୱ ଗୁଣରେ ଆଜି ଜନସମାଜରେ ଆଦୃତ ହେଉଅଛନ୍ତି ଏବଂ ଚିରକାଳ ମଧ୍ୟ ସମ୍ମାନିତ

ହେବେ । ଗୀତଶାସ୍ତ୍ରରେ ଅଛି, "ସକଳ ଗୁଣଭୂଷା ବିତରଣଂ ।" ଚନ୍ଦ୍ରଶେଖର ଧନଶାଳୀ ହୋଇ ନ ଥିଲେହେଁ ଦରିଦ୍ରମାନଙ୍କୁ ଯଥାଶକ୍ତି ଦାନକରିବା ବିଷୟରେ ଅଭ୍ୟସ୍ତ ଥିଲେ । ସେ ବ୍ରାହ୍ମଣମାନଙ୍କୁ ସ୍ୱୀୟ ପୈତୃକ ଭୂସମ୍ପତ୍ତିରୁ ମଧ୍ୟ ଭୂମିଦାନ କରିଯାଇ ଅଛନ୍ତି । ନିଜର ଶାଳପଡ଼ା ଓ ଦୂବପଲ୍ଲୀ ମୌଜାରୁ ମନ୍ତ୍ରୋପଦେଷ୍ଟା ଓ ଶିକ୍ଷାଦାତା ଗୁରୁଙ୍କୁ, ପୁରୋହିତଙ୍କୁ ଏବଂ ବନମାଳୀ ନନ୍ଦ, ରଘୁନାଥ ମହାପାତ୍ର, ରାମ ପରମଗୁରୁ ଓ ମପୃତା ନାରାୟଣ ସଦସ୍ୟ ପ୍ରଭୃତି ବ୍ରାହ୍ମଣମାନଙ୍କୁ କିଛି କିଛି ଭୂମିଦାନ କରିଯାଇ ଅଛନ୍ତି । କେତେକ ବ୍ରାହ୍ମଣଙ୍କୁ ସେମାନଙ୍କ ପୁତ୍ରକନ୍ୟାର ବ୍ରତୋପନୟନ ଓ ବିବାହ ନିମିତ୍ତ ଯଥାଶକ୍ତି ଦାନ କରୁଥିଲେ । ଏକଦା ଜଣେ ବ୍ରାହ୍ମଣ ସ୍ୱୀୟ ପୁତ୍ରର ବ୍ରତୋପନୟନ ନିମିତ୍ତ ସାହାଯ୍ୟ ପ୍ରାର୍ଥନା କରିବାରୁ ସାମନ୍ତ ଅର୍ଥାଭାବବଶତଃ ଗୃହର ପିତ୍ତଳହଣ୍ଡା ବନ୍ଧାପକାଇ ତାହାଙ୍କୁ ଟ ୩୦ ଙ୍କା ପ୍ରଦାନ କରିଥିଲେ । ନିଜର ସାମାନ୍ୟ କିଛି ଅପରାଧ ହେଲେ ସେଥିପାଇଁ ସେ ପ୍ରାୟଶ୍ଚିତ୍ତ କରୁଥିଲେ । ଦିନେ ସେ ସ୍ୱକୀୟ ଗୃହଭୂମି ଦେଖିବାକୁ ଶାଳପଡ଼ା ମୌଜାକୁ ଯାଇଥିବାରୁ ନାପିତ ତାହାଙ୍କର ପାଦଧୌତ କରିଦେଲା, ଏବଂ ସେହି ଗୋଡ଼ଧୁଆ ପାଣି ଅଲକ୍ଷିତ ଭାବରେ ଗୋଟିଏ ଅଶ୍ୱତ୍ଥ ବୃକ୍ଷମୂଳକୁ ବହିଗଲା । ସାମନ୍ତ ତାହା ଦେଖିବାମାତ୍ରେ ବିଷ୍ଣୁ ବୃକ୍ଷରେ ଗୋଡ଼ଧୁଆ ପାଣି ପଡ଼ିଲା ବୋଲି ପ୍ରାୟଶ୍ଚିତ୍ତ ସ୍ୱରୂପ ବ୍ରାହ୍ମଣଙ୍କୁ କିଛି ଭୂମିଦାନ କରିଥିଲେ ।

ଯେଉଁମାନେ ଚନ୍ଦ୍ରଶେଖର ସାମନ୍ତଙ୍କର ଅସାମର୍ଥ୍ୟ ବୁଝିଥିଲେ ସେମାନେ କଦାପି ସାହାଯ୍ୟାର୍ଥୀ ହୁଅନ୍ତି ନାହିଁ । ମାତ୍ର ତାହାଙ୍କର ନାମ ଓ ପ୍ରତିଷ୍ଠା ଶୁଣି ଦୂରସ୍ଥାନରୁ ବହୁ ଲୋକେ ସାହାଯ୍ୟପ୍ରାର୍ଥୀ ହେଉଥିଲେ । ଥରେ ନୟାଗଡ଼ବାସୀ ଜଣେ ବ୍ରାହ୍ମଣ ଆସି ଶ୍ରାଦ୍ଧ ଖର୍ଚ୍ଚପାଇଁ ସାହାଯ୍ୟ ମାଗିଥିଲେ । ସେଦିନ ସାମନ୍ତଙ୍କ ନିକଟରେ କିଛି ଟଙ୍କା ନ ଥିବାରୁ ନିଜ

ହସ୍ତରୁ ସୁନାମୁଦିଟିଏ କାଢ଼ି ବନ୍ଧକ ଦେଇ ଦୁଇଟଙ୍କା ଆଣିବା ସକାଶ ଭୃତ୍ୟଙ୍କୁ ବିଦାୟ କଲେ । କିନ୍ତୁ ବନ୍ଧକଗ୍ରହୀତା ମୁଦିଟି ନ ରଖି ଯୋଡ଼ିଏ ଟଙ୍କା ଦେଇ ପଠାଇବାରୁ ସାମନ୍ତ କହିଲେ, "ମୁଁ ଯିନା ସ୍ୱୀକାର କରିଥିବାରୁ ଦୁଇଟଙ୍କା ଦେବି, ବନ୍ଧକ ନ ରଖିଲେ ମୋ ଦେବାପରି ତ ହେଲା ନାହିଁ । ଏଣୁ ବନ୍ଧକ ରଖିବାକୁ ହେବ" ବୋଲି ପୁନଶ୍ଚ ମୁଦିଟି ପଠାଇ ଦେଲେ ଏବଂ ବ୍ରାହ୍ମଣଙ୍କୁ ସେହି ଦୁଇଟଙ୍କା ଦେଲେ । କିପରି ସାତ୍ତ୍ୱିକ ଦାନ, ପାଠକମାନେ ବିଚାର କରନ୍ତୁ । ସୂର୍ଯ୍ୟୋପରାଗ ଓ ଚନ୍ଦ୍ରଗ୍ରହଣ ସମୟରେ ସେ ସ୍ନାନାଦି ନିତ୍ୟକର୍ମ ଶେଷ କରି ପଇସାଖୁଡ଼ିଏ ଧରି ବ୍ରାହ୍ମଣ ଓ ଦରିଦ୍ରମାନଙ୍କୁ ବିତରଣ କରନ୍ତି । ସେଥିପାଇଁ ପୂର୍ବରୁ ଯଥାଶକ୍ତି କେତୋଟି ଟଙ୍କା ଭଙ୍ଗାଇ ପଇସା ରଖାଯାଇଥାଏ ।

ନିଜର ବାଡ଼ି ବଗିଚାରୁ କୌଣସି ଫଳ ନୂତନ ହୋଇ ତୋଳା ହେଲେ ସେ ପ୍ରଥମେ ତାହା ଠାକୁର ଘରକୁ ଓ ପରେ ବ୍ରାହ୍ମଣଙ୍କୁ ଡାକି ଦେଉଥିଲେ ଏବଂ ତତ୍ପରେ ନିଜ ଗୃହରେ ତାହା ବ୍ୟବହୃତ ହେଉଥିଲା । ଏକଦା ବଡ଼ ବାଇଗଣ ନୂତନ ତୋଳା ହୋଇଥିବାରୁ ସେଥିରୁ ଦୁଇଟି ଓ ଗୋଟିଏ ପଇସା ବନମାଳୀ ନନ୍ଦଙ୍କୁ ଦେଇ ସାମନ୍ତ କହିଲେ, "ନନ୍ଦେ, ଏହି ବାଇଗଣ ଦୁଇଟି ଘିଅରେ ନ ଭାଜିଲେ ଭଲ ଲାଗିବ ନାହିଁ । ଏହି ପଇସାଟି ନିଅ ଘିଅ କିଣିବ ।" ପଇସାଟିଏ କାହିଁକି ଦିଆଗଲା ବୋଲି ତାହାଙ୍କ ଗୃହର କେହି ପଚାରିବାରୁ ସାମନ୍ତ କହିଲେ, "ଆମ ଘରେ ଘିଅରେ ବାଇଗଣ ଭଜା ହେବ, ମାତ୍ର ନନ୍ଦେ ତ ଗରିବ, ସେ ଘିଅ କାହୁଁ କିଣନ୍ତେ ? ସେଥିପାଇଁ ଗୋଟିଏ ପଇସା ଦେଲି । ଆମର ଘିଅ କିଣା ହୋଇ ଆସିଥିଲେ ଯିନା ଟିକିଏ ଦେଇଥାନ୍ତି ।" ଅହୋ କି ହୃଦୟବତ୍ତା ! କିଲାଗଡ଼ବାସୀ ପ୍ରାୟ ସମସ୍ତ ବ୍ରାହ୍ମଣ ସ୍ତ୍ରୀୟ ପୁତ୍ର କନ୍ୟାଦିଙ୍କର ବିବାହ ବ୍ରତ ଉଦ୍ଦେଶ୍ୟରେ ସାମନ୍ତଙ୍କୁ ନାରିକେଳ

ନୁଆଁ ନି
ପ୍ରଗାଢ଼ଭାବେ ନିମନ୍ତ୍ରଣ କରନ୍ତି । ସେଥିସକାଶେ ସେ ଯଥାଶକ୍ତି ଦହି, ଦୁଧ, ପଇସା ଓ କିଛି ଟଙ୍କା ନିର୍ଦ୍ଦିଷ୍ଟ ଦିବସରେ ସାହାଯ୍ୟ କରନ୍ତି ।

ଅତିଥିସେବା ଗୃହସ୍ଥର ଗୋଟିଏ ପ୍ରଧାନ କାର୍ଯ୍ୟ । ଅତିଥି ଗୃହରୁ ବିମୁଖ ହୋଇଗଲେ ଗୃହସ୍ଥର ଅମଙ୍ଗଳ ହୁଏ । ସେଥିପାଇଁ ଉକ୍ତ ଅଛି ଯେ—ଅତିଥି ର୍ଯସ୍ୟ ଭଗ୍ନାଶୋ ଗୃହାତ୍ ପ୍ରତି ନିବର୍ତ୍ତତେ, ସତସ୍ମୈ ଦୁଷ୍କୃତଂ ଦତ୍ତ୍ୱା ପୁଣ୍ୟମାଦାୟ ଗଚ୍ଛତି । ଅର୍ଥାତ୍ ଅତିଥି ଯେଉଁ ଗୃହରୁ ନିରାଶ ହୋଇ ଫେରିଯାଏ ସେହି ଗୃହସ୍ଥକୁ ନିଜର ପାପଗୁଡ଼ିକ ଦେଇ ଏବଂ ଗୃହସ୍ଥର ପୁଣ୍ୟସମୂହ ସ୍ୱୟଂ ଗ୍ରହଣ କରି ଚାଲିଯାଏ । ଚନ୍ଦ୍ରଶେଖର ଅତିଥିମାନଙ୍କର ସେବା ନିମନ୍ତେ ସର୍ବଦା ସାବଧାନ ଥାନ୍ତି । ସେ ନିଜେ ନିତ୍ୟକର୍ମାଦିରେ ବହୁ ସମୟ ବ୍ୟାପୃତ ରହୁଥିବାରୁ ଅତିଥିମାନଙ୍କ ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା କରାଯାଇଥାଏ । ପ୍ରତ୍ୟହ ଭିକ୍ଷାଦାନ ନିମିତ୍ତ କେତେକ ଚାଉଳ ଗୃହର ଦାଣ୍ଡତରଫରେ ରଖାଯାଇଥାଏ ଏବଂ ଭୃତ୍ୟମାନଙ୍କୁ ସେଥିପାଇଁ ବହୁ ତାକିଦ୍ କରାଯାଇଥାଏ । ଯେପରି କୌଣସି ଭିକ୍ଷୁକ ଦ୍ୱାରରୁ ଫେରି ନ ଯାନ୍ତି ସେଥିସକାଶେ ଗୃହର ସମସ୍ତଙ୍କୁ ମଧ୍ୟ ସେ ସାବଧାନ କରିଦେଇଥାନ୍ତି । କୌଣସି ଅତିଥି ଉପସ୍ଥିତ ହେବାର ଶୁଣିବାମାତ୍ରେ ସାମନ୍ତ ତତ୍କ୍ଷଣାତ୍ ଗୃହରୁ ଆସି ତାହାର ବନ୍ଦୋବସ୍ତ କରନ୍ତି । ଆପଣାର ଭୋଜନପୂର୍ବରେ ଅତିଥି ଉପସ୍ଥିତ ହେଲେ ତାହାଙ୍କୁ ଭୋଜନ କରାଇ ତତ୍ପରେ ସେ ନିଜେ ଭୋଜନ କରନ୍ତି । ନିଜର ଆହାରାର୍ଥ ଯାହା ଯାହା ପ୍ରସ୍ତୁତ ହୋଇଥାଏ ସେ ସବୁ ପଦାର୍ଥରୁ କିଛି କିଛି ଯେପରି ଅତିଥିଙ୍କୁ ଦିଆଯିବ ସେଥିପାଇଁ ସେ ପତ୍ନୀପ୍ରଭୃତି ସମସ୍ତଙ୍କୁ ପୂର୍ବରୁ ସତର୍କ କରିଦେଇଥାନ୍ତି । ଯେଉଁ ଅତିଥି ଗୃହରେ ଭୋଜନ ନ କରିବାର କଥା ତାହାଙ୍କର ପାକସକାଶେ ସେ ସ୍ୱୟଂ କିମ୍ବା ତଦାୟ ପତ୍ନୀ ବନ୍ଦୋବସ୍ତ କରିଦିଅନ୍ତି । ଯେଉଁମାନେ ସାମନ୍ତଙ୍କ ଗୃହରେ ଅତିଥ୍ୟ ସ୍ୱୀକାରପୂର୍ବକ ସ୍ୱତନ୍ତ୍ର ପାକ କରନ୍ତି ସେମାନେ ତାହାଙ୍କର ସିଧାସାମଗ୍ରୀ ଦେଖି ବିସ୍ମିତ

ହୁଅନ୍ତି । ସେଥିମଧ୍ୟରେ କୌଣସି ଆବଶ୍ୟକ ପଦାର୍ଥର ଅଭାବ ନ ଥାଏ । ଏପରି କି କଣ୍ଠା ପରିବା ଓ ବଣ୍ଠା ମସଲା ପର୍ଯ୍ୟନ୍ତ ସମସ୍ତ ପଦାର୍ଥ ଥାଏ ।

ପିତୃ ଶ୍ରାଦ୍ଧ ଦିବସରେ ବ୍ରାହ୍ମଣ ଭୋଜନ ସମୟରେ ସାମନ୍ତଙ୍କର ତତ୍ତ୍ୱାବଧାନ ଓ ସାତ୍ତ୍ୱିକତା ଦେଖି ବ୍ରାହ୍ମଣମାନେ ପରମପ୍ରୀତ ହୁଅନ୍ତି । ସେଥିପାଇଁ ପୂର୍ବରୁ ପୁରୀରୁ ମହାପ୍ରସାଦ ଅଣାଇ ହୋଇ ରଖାଯାଇଥାଏ । ଗୃହରେ ପ୍ରସ୍ତୁତ ନାନାପ୍ରକାର ଖଟା, ଚଟଣୀ ଓ ସୂର୍ଯ୍ୟକାଞ୍ଜି ପ୍ରଭୃତି ପଦାର୍ଥ ସାମନ୍ତ ସ୍ୱୟଂ ପରିବେଷଣ କରୁଥାନ୍ତି ଏବଂ ବ୍ରାହ୍ମଣମାନଙ୍କ ସହିତ ହାସ୍ୟକୌତୁକ ବିଷୟକ କଥୋପକଥନ କରୁଥାନ୍ତି । ତାଦୃଶ ସାତ୍ତ୍ୱିକ କ୍ରିୟାକଳାପ ଏ ଯୁଗରେ ଆଉ ଦେଖାଯିବା ସମ୍ଭବପର ନୁହେ ।

**ସତ୍ୟପ୍ରିୟତା ଓ ସ୍ପଷ୍ଟବାଦିତା**

ଏ ସଂସାର ସତ୍ୟ ଉପରେ ପ୍ରତିଷ୍ଠିତ । ସତ୍ୟହିଁ ଲୋକକୁ ମନୁଷ୍ୟତା ପ୍ରଦାନ କରେ । ସତ୍ୟବାଦିତା ଲୋକଚରିତ୍ରର ପ୍ରଧାନ ଅଙ୍ଗରୂପରେ ପରିଗଣିତ । ଚନ୍ଦ୍ରଶେଖର ସତ୍ୟବାଦିତା ନିମନ୍ତେ ଜୀବନବ୍ୟାପୀ ପ୍ରସିଦ୍ଧି ଲାଭ କରିଥିଲେ । ସେ ଯେ ପ୍ରଶଂସା ବା ସମ୍ମାନ ସକାଶ ସତ୍ୟ କହୁଥିଲେ ତାହା ନୁହେଁ । ସତ୍ୟବାଦିତା ତାହାଙ୍କର ସ୍ୱଭାବଗତ ଧର୍ମ । ସେ କାହାକୁ ମିଥ୍ୟା କହିବାର ଦେଖିଲେ ବଡ଼ ଅସନ୍ତୁଷ୍ଟ ହେଉଥିଲେ । କେହି କୌଣସି ବିଷୟରେ ଶିକ୍ଷା ଦେଲେ ମଧ୍ୟ ଆବଶ୍ୟକ ସମୟରେ ତାହାଙ୍କ ମୁଖରୁ ପ୍ରକୃତ କଥା ବାହାରିପଡ଼େ । ଯେତେବେଳେ ପଣ୍ଡିତ ରାଜବଲ୍ଲଭ ମିଶ୍ର ଓ ସାମନ୍ତ ଏକତ୍ର ପଞ୍ଜିକା ମୁଦ୍ରିତ କରାଉଥିଲେ ସେତେବେଳେ ପଣ୍ଡିତ ମହାଶୟ ସୂର୍ଯ୍ୟୋପରାଗ ଏବଂ ଚନ୍ଦ୍ରଗ୍ରହଣର ଗଣନା ଶିକ୍ଷା କରି ନ ଥିଲେ । ଦିନେ ସାମନ୍ତଙ୍କର କନିଷ୍ଠ ପୁତ୍ର ଚକ୍ରଧର ସିଂହ ରାଜବଲ୍ଲଭ ମିଶ୍ରଙ୍କୁ ସୂର୍ଯ୍ୟୋପରାଗ ଓ ଚନ୍ଦ୍ରଗ୍ରହଣ ବିଷୟ ଶିକ୍ଷା ନ ଦେବାକୁ ପିତାଙ୍କୁ କହିବାରୁ ସାମନ୍ତ କାରଣ ଜିଜ୍ଞାସା କଲେ । ଚକ୍ରଧର କହିଲେ,

"ମହାଶୟେ ସେହି ଦୁଇଟି ବିଷୟ ଶିଖିଗଲେ ଏକୁଟିଆ ପାଞ୍ଜି କରିପାରିବେ, ଆମକୁ ଆଉ ପଇସା ମିଳିବ ନାହିଁ ।" ହୃଷ୍ଟବଦନ ପଣ୍ଡିତ ମହାଶୟ ଆସିବାରୁ ସାମନ୍ତ କହିଲେ, "ମହାଶୟେ, ତମକୁ ସୂର୍ଯ୍ୟୋପରାଗ, ଚନ୍ଦ୍ରଗ୍ରହଣ ବିଷୟ ଶିଖାଇ ଦେବନାହିଁ ।" ପଣ୍ଡିତ ମହାଶୟ କାରଣ ପଚାରିବାରୁ ସାମନ୍ତ କହିଲେ, "ତେମେ ସ୍ୱତନ୍ତ୍ର ପାଞ୍ଜି କରିପାରିବ, ଆମକୁ ଆଉ ପଇସା ମିଳିବ ନାହିଁ ।" ପଣ୍ଡିତେ କହିଲେ, "ଆଜ୍ଞା, ଏହା ତ ସମ୍ପୂର୍ଣ୍ଣ କଥା ନୁହେଁ ।" ତହୁଁ ସାମନ୍ତ କହିଲେ, "ମୁଁ କଣ ଜାଣିଥିଲି କି, କାଲି ପରା ଚକ୍ରଧର ଏ କଥା ମୋତେ କହିଲେ ।" ତାହା ଶୁଣି ଚକ୍ରଧର ନିକଟରୁ ଉଠି ଗୃହ ମଧ୍ୟକୁ ପଳାଇଗଲେ ଏବଂ ମାତାଙ୍କ ଆଗରେ କହିଲେ । ମାତା କହିଲେ, "ତେମେ ଏ କଥା ତାଙ୍କୁ କାହିଁକି କହିଲ ? ମୁଁ ତ କୌଣସି କଥା ଗୋପନରେ କହିଥିଲେ ସେ ତାହା ଦାଣ୍ଡରେ ପ୍ରକାଶ କରିଦିଅନ୍ତି ।" ସେହିଦିନଠାରୁ ଗୃହରେ ସମସ୍ତେ ସାବଧାନ ହୋଇଗଲେ ।

ଯେତେବେଳେ ନୟାଗଡ଼ର ରାଜା ଅପୁତ୍ରକ ବଳଭଦ୍ର ସିଂହ ମାନଧାତା ପରଲୋକପ୍ରାପ୍ତ ହେଲେ ସେତେବେଳେ ରଘୁନାଥ ସିଂହ ପୋଷ୍ୟପୁତ୍ର ହୋଇ ରାଜା ହେଲେ । ଏଥିରେ ଖଣ୍ଡପଡ଼ାର ରାଜା ନଟବର ସିଂହ ବିରୋଧୀ ହୋଇ କହିଲେ, "ନୟାଗଡ଼ ରାଜ୍ୟ ଖଣ୍ଡପଡ଼ାର ପ୍ରାପ୍ୟ ।" ତେଣୁ ଗଡ଼ଜାତର ତତ୍‌କାଳୀନ ଆସିଷ୍ଟାଣ୍ଟ ସୁପରିଣ୍ଟେଣ୍ଡେଣ୍ଟ ନନ୍ଦକିଶୋର ବାବୁ ନୟାଗଡ଼ ଓ ଖଣ୍ଡପଡ଼ାର ରାଜବଂଶ ସମ୍ବନ୍ଧରେ ଅନୁସନ୍ଧାନ କରିବାରୁ ନାନା ଲୋକେ ନାନା କଥା କହିଲେ । ମାତ୍ର ବାବୁଙ୍କର ସେଥିରେ ବିଶ୍ୱାସ ହେଲାନାହିଁ । ସେ ଚନ୍ଦ୍ରଶେଖରଙ୍କର ସତ୍ୟନିଷ୍ଠା ଓ ସ୍ପଷ୍ଟବାଦିତାର ପରିଚୟ ପୂର୍ବରୁ ପାଇଥିବାରୁ ତାହାଙ୍କୁ କହିଲେ, "ଆପଣ ତ ଯୁଧିଷ୍ଠିର ସଦୃଶ, ଏ ବିଷୟରେ ପ୍ରକୃତ କଥା କହନ୍ତୁ ।" ତହୁଁ ସାମନ୍ତ ଉତ୍ତର ଦେଲେ, "ତାଙ୍କର ଅମର ଅଛି, ଏଗାର ଦିନ ଅଶୌଚ ପାଳନା ଥିଲି ।

ଏବେ କେତେକାଳ ହେଲା ଛନଦନ ପାଳନାରେ ରହୁଛନ୍ତି ।" ତାଙ୍କ ବାକ୍ୟରୁ ଛାଡ଼ଥିବାର ପ୍ରମାଣ ହେବାରୁ ନୟାଗଡ଼ରେ ରଘୁନାଥ ସିଂହ ସ୍ଥାୟୀ ହେଲେ । ତତ୍ପରେ ନଟବର ନାନା ଉପଦ୍ରବ କରି ନୟାଗଡ଼ରେ ମେଳ ସୃଷ୍ଟି କରିବାର ଅନୁମିତ ହେଲା ଏବଂ ସେହି ବିପ୍ଳବ ଭୀଷଣ ଆକାର ଧାରଣ କରିବାରୁ ରଘୁନାଥ ସିଂହଙ୍କର ଅଭିଯୋଗ କ୍ରମେ ନଟବର ସିଂହ ଦୋଷୀ ସାବ୍ୟସ୍ତ ହେଲେ । ମଧୁବାବୁଙ୍କ ପରି ଉକିଲ ନ ଥିଲେ ନଟବର ସିଂହଙ୍କର ସର୍ବନାଶ ଘଟିଥାନ୍ତା । ସେହିଦିନଠାରୁ ମଧୁବାବୁ ନଟବରଙ୍କ ସଙ୍ଗେ ସଙ୍ଗାତ ବସି ମିତ୍ରତା-ସୂତ୍ରରେ ଆବଦ୍ଧ ହେଲେ । ଏହି ଘଟନାରେ ସାମନ୍ତ ନଟବର ସିଂହଙ୍କର ଘୋର ଅପ୍ରିୟଭାଜନ ହୋଇଥିଲେ ।

ଚନ୍ଦ୍ରଶେଖର ସ୍ପଷ୍ଟବାଦୀ ଥିବାରୁ ଆଉ ଗୋଟିଏ ଘଟନାରେ ନଟବରଙ୍କର ଚକ୍ଷୁଃଶୂଳ ହୋଇଥିଲେ । ନଟବର ଅପୁତ୍ରକ ଥିବାରୁ ସ୍ତ୍ରୀୟ ଦାସୀ ପୁତ୍ର ମହେନ୍ଦ୍ର ସିଂହଙ୍କୁ ଅତ୍ୟନ୍ତ ସ୍ନେହ କରୁଥିଲେ । ତାହାଙ୍କୁ ସ୍ୱୀୟ ସମାଜରେ ଚଳାଇ ନେବାପାଇଁ ନଟବର ଚେଷ୍ଟା କରୁଥିଲେ । ମାତ୍ର ଦଦା ସାମନ୍ତଙ୍କର ବିନା ଅନୁମତିରେ ତାହା କାର୍ଯ୍ୟରେ ପରିଣତ ହୋଇ ନ ପାରିବାର ଭୟ ନଟବର ଚନ୍ଦ୍ରଶେଖରଙ୍କୁ କହିଲେ, "ଦଦା, ମୁଁ ଗୋଟିଏ କଥା ବରିଛି, ଦୋଉଙ୍କ କଥାରେ ତାହା ସିଦ୍ଧ ହେବ ।" ସାମନ୍ତ କହିଲେ, "କଣ କହନ୍ତୁ ।" ତହୁଁ ନଟବର ସିଂହ ମହେନ୍ଦ୍ରଙ୍କୁ ସ୍ୱସମାଜରେ ଚଳାଇନେବା କଥା ପଚାରିବାରୁ ସାମନ୍ତ ଉତ୍ତର ଦେଲେ, "ତାହା କି ହୋଇପାରେ ? ଅସମ୍ଭବ କଥା । ଏ ବଦେଳ ସମାଜରେ ଅନ୍ତର ପୁଅ ମିଶିବ, ଏହା ମୁଁ କହିପାରିବି ନାହିଁ ।" ତେଣୁ ରଜା ସମକ୍ଷରେ ସାମନ୍ତଙ୍କୁ କିଛି କହି ପାରିଲେ ନାହିଁ, ମାତ୍ର ପରୋକ୍ଷରେ ଘୋର ଶତ୍ରୁତାଚରଣ କଲେ । ରଜାନ୍ତଃପୁର ପ୍ରତି ଭ୍ରୂକ୍ଷେପ ନକରି ଏହିପରି ନାନା ଘଟନାରେ

ସାମନ୍ତ ସତ୍ୟ କଥା କହିବାରୁ ଘୋର ଅଭାବମଧ୍ୟରେ ରହି କାଳଯାପନ କରିଥିଲେ ।

**ଦୟା, କ୍ଷମା ଓ ପରୋପକାରିତା** } ଦୟା ନାମ ପରଦୁଃଖାପହରଣେଚ୍ଛା, ଅର୍ଥାତ୍ ପରଦୁଃଖ ହରଣ କରିବାର ଇଚ୍ଛାକୁ ଦୟା କହନ୍ତି । ଦୟାଦ୍ୱାରା ମନୁଷ୍ୟ ଅମରତ୍ୱ ଲାଭ କରେ । ପୌରାଣିକ ଯୁଗରେ ଦଧୀଚି, ଜୀମୂତବାହନ ଓ ରନ୍ତି ଦେବ ପ୍ରଭୃତି ଏବଂ ଆଧୁନିକ ଯୁଗରେ ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ପ୍ରଭୃତି କେତେ ଦୟାବୀର ଜନ୍ମଗ୍ରହଣ କରି ଅକ୍ଷୟ କୀର୍ତ୍ତି ସ୍ଥାପନ କରିଯାଇଅଛନ୍ତି । ଶ୍ରୀମଦ୍‌ଭାଗବତର ନବମସ୍କନ୍ଧରେ ସୂର୍ଯ୍ୟ ବଂଶୀୟ ରାଜା ରନ୍ତି ଦେବଙ୍କର ଭଗବତ୍ ପ୍ରାର୍ଥନା ବିଷୟକ ଏହି ଶ୍ଳୋକ ପାଠକଲେ ହିନ୍ଦୁର ପରଦୁଃଖକାତରତା କିପରି ଚରମସୀମାପର୍ଯ୍ୟନ୍ତ ଗମନ କରିଅଛି ତାହା ସହଜରେ ଅନୁମିତ ହେବ । ପୃଥୁରାଜଙ୍କ ପ୍ରତି ଭଗବାନଙ୍କର ଉକ୍ତି ଏହି—

ନ କାମୟେଽହଂ ଗତି ମୀଶ୍ୱରାତ୍‌ପରା ମଷ୍ଟର୍ଦ୍ଧି ଯୁକ୍ତା ମପୁନର୍ଭବଂ ବା ।<br>
ଆର୍ତ୍ତିଂ ପ୍ରପଦ୍ୟେଽଖିଳ ଦେହଭାଜାମନ୍ତଃସ୍ଥିତୋ ଯେନ ଭବନ୍ତ୍ୟ ଦୁଃଖାଃ ।

ଅର୍ଥାତ୍ ମୁଁ ଈଶ୍ୱରଙ୍କଠାରୁ ଅଷ୍ଟୈଶ୍ୱର୍ଯ୍ୟଯୁକ୍ତ ଶ୍ରେଷ୍ଠଗତି ପାଇବାକୁ ଇଚ୍ଛା କରୁନାହିଁ କିମ୍ବା ପୁନର୍ଜନ୍ମ ଲାଭ ନ କରିବାକୁ ତାହାଙ୍କୁ ପ୍ରାର୍ଥନା କରୁନାହିଁ । ଜଗତରେ ଯେତେପ୍ରକାର ପ୍ରାଣୀ ଅଛନ୍ତି ସେହି ସମସ୍ତଙ୍କ ହୃଦୟରେ ରହି ସେମାନଙ୍କର ତାବତୀୟ କ୍ଲେଶ ମୁଁ ଯେପରି ଭୋଗକରିବି ଏବଂ ତଦ୍ଦ୍ୱାରା ସେମାନେ ଦୁଃଖମୁକ୍ତ ହୋଇ କିପରି ସୁଖଭୋଗ କରିବେ ଏହାହିଁ ମୁଁ ଭଗବଚ୍ଚରଣାରବିନ୍ଦରେ ପ୍ରାର୍ଥନା କରୁଅଛି ।

ଈଶ୍ୱରଚନ୍ଦ୍ର, ବିଦ୍ୟାସାଗର ଉପାଧି ସଙ୍ଗେ ସଙ୍ଗେ ଦୟାସାଗର ନାମ ଲାଭ କରିଥିଲେ । ମହାତ୍ମା ଚନ୍ଦ୍ରଶେଖର ପରମଦୟାଳୁ ଥିଲେ । ପ୍ରାଣୀପ୍ରତି

ଦୟା ତାହାଙ୍କର ନୈସର୍ଗିକ ଗୁଣ ଥିଲା । ପରର ଦୁଃଖ ଦେଖିଲେ ତାହାଙ୍କର ହୃଦୟ ଦ୍ରବୀଭୂତ ହୁଏ ଏବଂ ନେତ୍ରରୁ ଲୋତକପାତ ହୁଏ । ତାହାଙ୍କ ଦୟାଗୁଣରୁ ଭୃତ୍ୟମାନେ ଅନ୍ୟତ୍ର ଅଧିକ ବେତନ ପାଇବାକୁ ପ୍ରଲୋଭିତ ହେଲେହେଁ ସାମନ୍ତଙ୍କ ଗୃହ ଛାଡ଼ିବାକୁ ଇଚ୍ଛା କରୁ ନ ଥିଲେ । ପଶୁପକ୍ଷୀମାନେ ମଧ୍ୟ ତାହାଙ୍କ ଦୟାରୁ ତିଳେ ମାତ୍ର ବଞ୍ଚିତ ନ ଥିଲେ । ଗୋ-ସେବା ତାହାଙ୍କ ନିତ୍ୟକର୍ମର ଗୋଟିଏ ଅଙ୍ଗ ଥିଲା । ଦୟାଗୁଣର ବଶବର୍ତ୍ତୀ ହୋଇ ସେ ମତ୍ସ୍ୟ ମାଂସ ଭୋଜନ ପରିତ୍ୟାଗ କରିଥିଲେ । ଦେହରେ ମଶକ ଦଂଶନ କଲେ ତାହାର ବିତାଡ଼ନ ଭିନ୍ନ ସାମନ୍ତ ତାହା ଉପରେ ଚପେଟାଘାତ କରୁ ନ ଥିଲେ । ସେ ପିପୀଲିକାଦିଙ୍କ ଗର୍ତ୍ତିରେ କିଛି କିଛି ମିଷ୍ଟପଦାର୍ଥ ରଖିଦେଉଥିଲେ । ସେ କହନ୍ତି, "ଗାତରେ ମିଠା ଜିନିଷ ରଖିଦେଲେ ସମସ୍ତେ ଏକାଠି ହୋଇଯିବେ, ଆଉ ଗୃହଅଲୋ ଖେଳେଇ ହୋଇ କାମୁଡ଼ିବେ ନାହିଁ ।" ସାମନ୍ତଙ୍କ ଗୃହରେ ଗବାଦି ଗୃହପାଳିତ ପଶୁ ବୃଦ୍ଧ ହୋଇଗଲେ ସେମାନଙ୍କର ପାଳନ ନିମନ୍ତେ ସ୍ୱତନ୍ତ୍ର ବନ୍ଦୋବସ୍ତ କରାଯାଇଥାଏ । ଉପସ୍ଥିତ ଯୁଗରେ ଅଶ୍ୱାଦି ପଶୁ ବୃଦ୍ଧ ହୋଇଗଲେ ସେମାନଙ୍କୁ ବନ୍ଧୁକ ଗୁଳିରେ ବିନାଶ କରିବା ଏବଂ ବୁଲା କୁକୁରମାନଙ୍କୁ ଦଣ୍ଡ ପ୍ରହାରରେ ହତ୍ୟା କରିବା ବ୍ୟାପାର ସଙ୍ଗେ ମହାତ୍ମାଙ୍କର ବ୍ୟବହାର ତୁଳନା କଲେ ସ୍ୱର୍ଗ ନରକ ତୁଲ୍ୟ ପ୍ରତୀୟମାନ ହୁଏ ।

ଶାସନନୀତିରେ ଦଣ୍ଡର ଆବଶ୍ୟକତା ଥିଲେହେଁ ମହାତ୍ମାମାନେ ସ୍ୱୀୟ କ୍ଷମାଗୁଣରେହିଁ ଶାସନ କରିବାକୁ ସମର୍ଥ ହୁଅନ୍ତି । କୌଣସି ବ୍ୟକ୍ତି ଅକସ୍ମାତ୍ ଅପରାଧ କରି ଥରେ କ୍ଷମା ପାଇଲେ ବଡ଼ ଲଜ୍ଜିତ ହୁଏ, ପୁନଶ୍ଚ ସେପରି ଦୋଷ କରିବା ବିଷୟରେ ବିଶେଷ ସାବଧାନ ହୁଏ । ସାଧାରଣତଃ ଦୁଷ୍ଟମାନେ ମହାତ୍ମାଙ୍କର ଧର୍ମ ତେଜରେ ଓ ଅଭିଶାପ ଭୟରେ ଅପରାଧ କରିବାକୁ ସାହସୀ ହୁଅନ୍ତି ନାହିଁ । ଚନ୍ଦ୍ରଶେଖର କ୍ଷମା

ଭିନ୍ନ ଜୀବନରେ କାହାକୁ ଦଣ୍ଡ ଦେଇନାହାନ୍ତି । କୌଣସି ଭୃତ୍ୟ ଦୋଷ କଲେ ତାହାକୁ ଦଣ୍ଡ ଦେବା ଦୂରେ ଥାଉ ମୁଖରେ ତିରସ୍କାର ସୁଦ୍ଧା କରନ୍ତି ନାହିଁ, କେବଳ ସାବଧାନ କରିଦିଅନ୍ତି । ଏପରି ଦେଖାଯାଇଅଛି ଯେଉଁ ଭୃତ୍ୟ ସାମନ୍ତଙ୍କଠାରୁ ଥରେ ତାଡ଼ନା ପାଇଥାଏ ସେ ପୁନର୍ବାର କଦାପି ସେପରି ଅପରାଧ କରିନାହିଁ । ପୁନଶ୍ଚ ଆତ୍ମୀୟସ୍ୱଜନମାନେ କୌଣସି ଦୋଷ କଲେ ସେ ସେମାନଙ୍କୁ କହନ୍ତି, "ତେମେ ତ ଜାଣିବା ଲୋକ ହୋଇ ଏପରି କାର୍ଯ୍ୟ କରୁଛ, ଅଜ୍ଞ ଲୋକମାନେ ଅଉ କ'ଣ ନ କରିବେ ?"

ଯେତେବେଳେ ଚନ୍ଦ୍ରଶେଖରଙ୍କର କଟକ ଦରବାରକୁ ଗମନ କରିବାର ପ୍ରସ୍ତାବ ହେଲା ସେତେବେଳେ ନଟବର ସିଂହ ପ୍ରକାରାନ୍ତରରେ ସାମନ୍ତଙ୍କୁ ନିଷେଧ କରିବାରୁ ତାହାଙ୍କର ଯାତ୍ରା ବନ୍ଦ ହୋଇଗଲା । ସେହି ସମୟରେ ପଣ୍ଡିତ ରାଜବଲ୍ଲଭ ମିଶ୍ର ହଠାତ୍ କମିସନର ସାହେବଙ୍କ ନିକଟକୁ ପତ୍ରଦ୍ୱାରା ସେ ବିଷୟ ଜଣାଇ ଦେବାରୁ ରାଜାଙ୍କ ନାମରେ ୱାରେଣ୍ଟ କରାଯିବାର ହୁକୁମ ହୋଇଗଲା । ସେହି ୱାରେଣ୍ଟ ବନ୍ଦ କରିବାପାଇଁ ସାମନ୍ତଙ୍କୁ କେତେ କଷ୍ଟ ସ୍ୱୀକାର କରିବାକୁ ହୋଇଥିଲା । ପତ୍ରପ୍ରେରଣ ବିଷୟ ସାମନ୍ତ କଟକରୁ ଶୁଣିଯାଇ ରାଜବଲ୍ଲଭ ମିଶ୍ରଙ୍କୁ ଗୋପନରେ ଡକାଇ କହିଲେ, "ତେମେ ଖଣ୍ଡପଡ଼ାର ସର୍ବନାଶ କରିବାକୁ ଚେଷ୍ଟା କରିଥିଲ, ଏହା ରାଜା ଜାଣିଲେ ତମର ଚେରପାରୁ ରହିବ ନାହିଁ । ଯାହାହେଉ ଭବିଷ୍ୟତରେ ନ ବିଚାରି ହଠାତ୍ ଏପରି କାର୍ଯ୍ୟ କରିବ ନାହିଁ । ତେମେ ତ ଭାରବିରେ ପଢ଼ିଛ "ସହସା ବିଦଧୀତ ନ କ୍ରିୟାମବିବେକଃ ପରମାପଦାଂ ପଦଂ ।"

ତେଣେ ରାଜା ଅନୁମାନରେ ବୁଝିଲେ ଯେ ସାମନ୍ତଙ୍କ ପୁତ୍ର ଏକଥା କମିସନରଙ୍କୁ ଜଣାଇଅଛନ୍ତି, ସୁତରାଂ କୋପପ୍ରଜ୍ୱଳିତ ହୋଇ ରହିଲେ ।

ନିଜ ପୁତ୍ରପ୍ରତି ରାଜାଙ୍କର କୋପ ହୋଇଥିବା ସାମନ୍ତ ଶୁଣି ମଧ୍ୟ ରାଜବଲ୍ଲଭ ମିଶ୍ରଙ୍କ ନାମ ପ୍ରକାଶ ନ କରି ତାହାଙ୍କୁ କ୍ଷମା ଦେଲେ ।

ପରୋପକାରିତା ଜୀବନର ଗୋଟିଏ ମୁଖ୍ୟ କାର୍ଯ୍ୟ । ଉକ୍ତ ଅଛି:— "ପରୋପକାରଃ ସ୍ୱର୍ଗାୟ ପାପାୟ ପରପୀଡ଼ନଂ ।" ଜଗଦୀଶ୍ୱର ମନୁଷ୍ୟକୁ ଜ୍ଞାନଧନାଦି ଯାହା କିଛି ପ୍ରଦାନ କରିଅଛନ୍ତି ସେ ସମସ୍ତ କେବଳ ନିଜର ସୁଖ ନିମନ୍ତେ ନୁହେଁ । ପରାର୍ଥେ ସେ ସବୁର ବ୍ୟବହାର କରିବା ଈଶ୍ୱରଙ୍କର ଅଭିଳଷିତ । ଚନ୍ଦ୍ରଶେଖର ଜୀବନରେ ଅନେକ ଲୋକର ଉପକାର କରି ଯାଇଅଛନ୍ତି । ସେ ପରାର୍ଥକୁ ସ୍ୱାର୍ଥ ବୋଲି ମନେ କରୁଥିଲେ । ସେ ଯଥାର୍ଥ ବୁଝିଥିଲେ ଯେ;—

କ୍ଷୁଦ୍ରାଃ ସନ୍ତି ସହସ୍ରଶଃ ସ୍ୱଭରଣବ୍ୟାପାରପୂର୍ଣ୍ଣୋଦରାଃ
ସ୍ୱାର୍ଥୋ ଯସ୍ୟ ପରାର୍ଥଏବ ସ ପୁମାନେକଃ ସତାମଗ୍ରଣୀଃ ।
ଦୁଷ୍ପୂରୋଦରପୂରଣାୟ ପିବତି ସ୍ରୋତଃପତିଂ ବାଡ଼ବୋ
ଜୀମୂତସ୍ତୁ ନିଦାଘସମ୍ଭୃତଜଗତ୍‌ସନ୍ତାପବିଚ୍ଛିତ୍ତୟେ ।

ଅର୍ଥାତ୍ ସ୍ୱୀୟ ଭରଣ ପୋଷଣ ବ୍ୟାପାରଦ୍ୱାରା ଉଦର ପୂର୍ଣ୍ଣ କରୁଥିବା ହଜାର ହଜାର କ୍ଷୁଦ୍ର ପ୍ରାଣୀ ଅଛନ୍ତି । ମାତ୍ର ଯେ ପରାର୍ଥକୁ ସ୍ୱାର୍ଥ ବୋଲି ମନେକରେ ସେ ଏକା ସାଧୁମାନଙ୍କର ଅଗ୍ରଣୀ ଅଟେ । ଯେମନ୍ତ ବାଡ଼ବାଗ୍ନି ସ୍ୱୀୟ ବିଶାଳୋଦରର ପୂରଣ ନିମନ୍ତେ ସମୁଦ୍ରକୁ ପାନକରେ, କିନ୍ତୁ ମେଘ ନିଦାଘପୀଡ଼ିତ ଜଗଦ୍‌ବାସୀମାନଙ୍କର ସନ୍ତାପ ବିନାଶ ନିମନ୍ତେ ଅର୍ଥାତ୍ ବୃଷ୍ଟିକରିବା ସକାଶେ ସମୁଦ୍ରର ଜଳ ଶୋଷଣକରେ ।

ଚନ୍ଦ୍ରଶେଖର ଯଥାଶକ୍ତି ଅନେକଙ୍କୁ ଧନବସ୍ତ୍ର ଦାନ ତ କରୁଥିଲେ, ବିନା ପାରିଶ୍ରମିକରେ ଅସଂଖ୍ୟ କୋଷ୍ଠୀ ନିର୍ମାଣ କରି ଫଳ କଥନରେ ନିଜର ବହୁମୂଲ୍ୟ ସମୟ ବ୍ୟୟ କରୁଥିଲେ । କୌଣସି ବ୍ୟକ୍ତି ରୁହିବାମାତ୍ରେ

ରାଜାମାନଙ୍କ ନିକଟକୁ ସାମନ୍ତ ସୁପାରିଶ ପତ୍ର ଲେଖି ଦେଉ ଥିଲେ । ପରସ୍ପର କଳହବଶତଃ କାହାର ଶବ ସତ୍କାର ହୋଇପାରୁ ନ ଥିବାର ସମ୍ବାଦ ପାଇଲାମାତ୍ରେ ରାତିରେ ଉଠି ଗୋଳମାଳ ସମାଧାନପୂର୍ବକ ଶବଦାହର ବନ୍ଦୋବସ୍ତ କରି ଦେଉଥିଲେ । କୌଣସି ଦୁଃସ୍ଥ ବ୍ୟକ୍ତିର ରୋଗ ହୋଇଥିବାର ଶୁଣିଲେ ସେ ନିଜ ବ୍ୟୟରେ ଔଷଧ ପ୍ରସ୍ତୁତ କରି ପ୍ରଦାନ କରୁଥିଲେ । ନିଜଗଡ଼ବାସୀ କୌଣସି ସ୍ତ୍ରୀ ବ୍ୟକ୍ତିର ପ୍ରସବରେ ବ୍ୟାଘାତ ହେଲେ ସ୍ୱୀୟ ଧାତ୍ରୀକୁ ପଠାଇ ପ୍ରାଣୀର କ୍ଲେଶ ମୋଚନ କରାଉଥିଲେ । ନିଜର ସବାରି ପାଲ୍କୀ ପ୍ରଭୃତି ଆବଶ୍ୟକ ପଦାର୍ଥ ସର୍ବଦା ପରୋପକାରରେ ବ୍ୟବହୃତ ହେଉଥିଲା । ଏପରି କି ତାଙ୍କ ନିଜ କଳତ୍ରାଦିଙ୍କର ଅଳଙ୍କାର ମଧ୍ୟ ଲୋକେ ମାଗି ନେଇ କାର୍ଯ୍ୟ ଚଳାଉଥିଲେ । ଉପସ୍ଥିତ ଯୁଗରେ ବିନା ବେତନରେ ଶିଷ୍ୟମାନଙ୍କୁ ଶିକ୍ଷା ଦେବା କ୍ୱଚିତ୍ ଦେଖାଯାଏ । କିନ୍ତୁ ଅଧିକାଂଶଙ୍କର ନିଜ ଜ୍ଞାନ ପରକୁ ପ୍ରଦାନ କରିବା ଅର୍ଥସାପେକ୍ଷ । ଚନ୍ଦ୍ରଶେଖର ବିନା ପାରିଶ୍ରମିକରେ ନିଜର ବହୁମୂଲ୍ୟ ସମୟ ନଷ୍ଟ କରି ଅନେକ ଶିଷ୍ୟଙ୍କୁ ଜ୍ଞାନ ପ୍ରଦାନ କରିଅଛନ୍ତି । ତାହାଙ୍କର ଅଧିକାଂଶ ଶିଷ୍ୟ ସାମନ୍ତଙ୍କ ଗୃହରେ ଖାଦ୍ୟପେୟ ଲାଭପୂର୍ବକ ପୁତ୍ରବତ୍ ପ୍ରତିପାଳିତ ହୋଇ ବିଦ୍ୟାଧ୍ୟୟନ କରୁଥିଲେ । ଅତ୍ୟନ୍ତ ଗୂଢ଼ ବିଷୟ ହେଲେହେଁ ସେ ଅନ୍ୟକୁ ଶିକ୍ଷାଦେବା ସକାଶ ଲବମାତ୍ର କୁଣ୍ଠିତ ହେଉ ନ ଥିଲେ । ଏହିପରି ନାନା ଭାବରେ ସାମନ୍ତ ପରୋପକାର ସାଧନ କରି ଯାଇଅଛନ୍ତି ।

**କଷ୍ଟସହିଷ୍ଣୁତା ଓ ଧୈର୍ଯ୍ୟ**

କଷ୍ଟସହିଷ୍ଣୁତା ମହାପୁରୁଷମାନଙ୍କର ଗୋଟିଏ ଲକ୍ଷଣ । ଚନ୍ଦ୍ରଶେଖର ଘୋର କଷ୍ଟସହିଷ୍ଣୁ ଥିଲେ । ସେ ଶାରୀରିକ କ୍ଲେଶ ପ୍ରତି ଭ୍ରୂକ୍ଷେପ ନ କରି ନାନାପ୍ରକାର କଷ୍ଟସାଧ୍ୟ ବ୍ରତୋପବାସ ପାଳନ

କରୁଥିଲେ । ଦୁର୍ନାମ *, ଅଲ୍ପବୁଦ୍ଧି ଓ ଅଗ୍ନିମାନ୍ଦ୍ୟ ପ୍ରଭୃତି ରୋଗର ଯାତନାରେ ସେ କଦାପି ଅଧୀର ହୋଇ ନ ଥିଲେ, ମାତ୍ର ଉପଯୁକ୍ତ ଚିକିତ୍ସା କରାଇ ରୋଗୋପଶମନ ନିମିତ୍ତ ଚେଷ୍ଟା କରୁଥିଲେ । ତାହାଙ୍କର ଅଲ୍ପବୁଦ୍ଧିର ଶାନ୍ତି ନିମନ୍ତେ ଚିକିତ୍ସା ବ୍ୟବସାୟୀ ଗିରି ନାମକ ବୈଦ୍ୟ ଯେତେବେଳେ ଦୋହର ପଇସା ତଳ୍କୁ ଦେଇ ତେତେବେଳେ ସମସ୍ତେ ବିସ୍ମିତ ହୋଇଗଲେ । ବୈଦ୍ୟ ଘଷିନିଅଁ ମଧ୍ୟରେ ଦୋହର ପଇସାକୁ ତତାଇ ତାହା ନାଲି ହୋଇଯାଅନ୍ତେ ସାମନ୍ତଙ୍କୁ ଧରିବା ସକାଶେ ଦୁଇ ଜଣ ଲୋକ ଅବଶ୍ୟକ ବୋଲି ଜଣାଇବାରୁ ସାମନ୍ତ କହିଲେ, "ଲୋକ କ'ଣ କରିବେ; ମୁଁ କ'ଣ ଜାଣୁନାହିଁ କାଟିବ ବୋଲି, ତେମେ ଯାହା କରିବାର କରିଯାଅ । ମୁଁ କିଛି ହଲଚଲ ହେବି ନାହିଁ ।" ତହୁଁ ବୈଦ୍ୟ ସେହି ଉତ୍ତପ୍ତ ପଇସାକୁ ଚିମୁଟାରେ ଧରି ବୁଦ୍ଧି-ଶିରର ଛେଦନ ନିମନ୍ତେ ଜଙ୍ଘ ଓ ତଳପେଟର ସନ୍ଧି ସ୍ଥଳରେ ଠିଆଭାବରେ ପ୍ରବେଶ କରାଇଦେବାରୁ ଚଡ଼ଚଡ଼ ହୋଇ ପୋଡ଼ିଗଲା ଓ ଗୃହରେ ଧୂମ ପୂର୍ଣ୍ଣ ହୋଇଗଲା ଏବଂ ପୋଡ଼ା ଦୁର୍ଗନ୍ଧ ଉତ୍ଥିତ ହେଲା । ଏହିପରି ଦୁଇବାର କରାଗଲା । ସେତେବେଳେ ସାମନ୍ତଙ୍କ ଗୃହରେ କନ୍ଦନର ରୋଳ ଜାତ ହୋଇଗଲା ଓ ସମସ୍ତେ ହାହାକାର କରିବାକୁ ଲାଗିଲେ । ମାତ୍ର ଚନ୍ଦ୍ରଶେଖର ପର୍ବତବତ୍ ଅଟଳ ରହି ନିସ୍ପନ୍ଦଭାବରେ ସେହି ମର୍ମନ୍ତୁଦ କଷ୍ଟ ସହ୍ୟ କରିଥିଲେ । କି ଅମାନୁଷିକ ଧୈର୍ଯ୍ୟ ! ଗୋଟିଏ ପିପୀଲିକା ଦଂଶନରେ ମନୁଷ୍ୟ ଅସ୍ଥିର ହୋଇପଡ଼ୁଛି, ତାହାର ଅଗ୍ରସ୍ଥ ଗ୍ରହଣ ନ କରି ଉଦ୍ଧୃଣ ଯାତନା ସହ୍ୟ କରିବା ମନୁଷ୍ୟ ପକ୍ଷରେ ଏକାନ୍ତ ଅସମ୍ଭବ ।

ଅତ ଦୁଇଗୋଟି ଘଟନାରୁ ସାମନ୍ତଙ୍କର ଅସାଧାରଣ ଧୈର୍ଯ୍ୟର ପରିଚୟ ମିଳେ । ଗଭର୍ଣ୍ଣମେଣ୍ଟରୁ ମାସିକ ଟ ୫୦ ୯ ବୃତ୍ତି ମଞ୍ଜୁର ହୋଇଥିବାରୁ ସାମନ୍ତଙ୍କର ପୁରୀ କ୍ଷେତ୍ରବାସ ପକ୍ଷରେ ସୁବିଧା ହେବାର

* ଅର୍ଶରୋଗ

ଘଟନା କହି ଦିନେ ସାମନ୍ତ ଯାଇ ତତ୍କାଳୀନ ରାଜା ନଟବର ସିଂହଙ୍କୁ କହିଲେ, "ଗଭର୍ଣ୍ଣମେଣ୍ଟ ମୋତେ ପଞ୍ଚାଶଟଙ୍କା ବୃତ୍ତି ଦେଇ ଅଛନ୍ତି।" ନଟବର ତାହା ଶୁଣି ଉତ୍ତର ଦେଲେ, "ଗଭର୍ଣ୍ଣମେଣ୍ଟ ଯେଉଁ କରାଂଶ ଧନ ସଞ୍ଚୟ କରିଥାନ୍ତି ତାହାକୁ ଏପରିଭାବେ ଦାନ କରନ୍ତି; ତାହା କିସ୍ମା ତୁମ୍ଭ।" ମୁହଁ ଉପରେ ରାଜା ଏପରି କହିଲେ ସୁଦ୍ଧା ସାମନ୍ତ କିଛି ମାତ୍ର କ୍ଷୁବ୍ଧ ବା ବିଚଳିତ ନହୋଇ କହିଲେ, "ସେ ରାଜା, ସେ ଯାହା ଦାନ କରୁଅଛନ୍ତି ତାହା ଆମ୍ଭର ଗ୍ରାହ୍ୟ, ସେ କିପରି ଧନ ସଞ୍ଚୟ କରିଅଛନ୍ତି ତାହା ଆମ୍ଭର ବୁଝିବା ଅନାବଶ୍ୟକ।" ସାମନ୍ତ ଆସିବା ପରେ କେତେକ ଲୋକ କହିଲେ, "ଆଜ୍ଞା, ରଜା ଅକାରଣରେ ଦୋଉଙ୍କ ମନରେ କଷ୍ଟ ଦେଲେ।" ସାମନ୍ତ ଉତ୍ତର ଦେଲେ, "ସେ ଯେପରି ଲୋକ, ତାଙ୍କ ମୁହଁରୁ ସେପରି କଥା ବାହାରି ପଡ଼ିଲା"। ଶତ୍ରୁମୁଖରୁ ଏପରି ବାକ୍ୟ ଶୁଣି ଧୈର୍ଯ୍ୟ ଧରିବା ସହଜ ବ୍ୟାପାର ନୁହେ। ସାମନ୍ତ ଇଚ୍ଛା କରିଥିଲେ ସେ ବିଷୟ ସରକାରଙ୍କୁ ଜଣାଇ ପାରିଥାନ୍ତେ; ତଦ୍ଦ୍ୱାରା ନଟବର ସିଂହଙ୍କର ଅନିଷ୍ଟ ଘଟିଥାନ୍ତା। ମାତ୍ର ଚନ୍ଦ୍ରଶେଖର ନିଜର ଧୀରତା ଗୁଣରେ ନିର୍ବିକାର ଚିତ୍ତରେ ସେହି ପରୁଷ ବାକ୍ୟକୁ ସହ୍ୟ କଲେ।

ଦ୍ୱିତୀୟ ଘଟନା ଏହି ଯେ, ସାମନ୍ତଙ୍କର ବାସୁଦେବ ଓ ଯଦୁନାଥ ନାମକ ଯୁବକ ପୁତ୍ରଦ୍ୱୟ ଯେତେବେଳେ ଏକଦିନ ଅନ୍ତରରେ ବସନ୍ତ ରୋଗରେ ପରଲୋକ ଗମନ କଲେ ସେତେବେଳେ କୁଟୁମ୍ବ ମଧ୍ୟରେ ଗଭୀର ଶୋକର କୋଳାହଳ ଜାତ ହେଲା। ତାହା ଶୁଣି ସାମନ୍ତ କହିଲେ, "ଜନ୍ମ ମରଣ ତ ସଂସାରର ନିତ୍ୟ କାର୍ଯ୍ୟ, ଯେତେବେଳେ ତ ହୁଅନ୍ତା, ପୂର୍ବ ଜନ୍ମରେ କିଛି ପାପ ଥିଲା, ତେଣୁ ଏପରି ପୁତ୍ରଶୋକ ଭୋଗକରିବାକୁ ହେବ। ଏଥିପାଇଁ ଗୁଡ଼େ କାନ୍ଦିବା ଅବଶ୍ୟକ କଣ? ଶୀଘ୍ର ଶବ ସତ୍କାର କରିଯାଉ।" ଚନ୍ଦ୍ରଶେଖରଙ୍କର ଧୈର୍ଯ୍ୟ ଓ କଷ୍ଟସହିଷ୍ଣୁତା ସମ୍ବନ୍ଧରେ ଆହୁରି ଅନେକଗଳ୍ପ ଶୁଣାଯାଏ। ଗ୍ରନ୍ଥର ବାହୁଲ୍ୟଭୟରେ ସେସବୁ ପରିତ୍ୟକ୍ତ ହେଲା।

**ବିନୟ ଓ ନିରୀହତା**—ଶାସ୍ତ୍ରରେ ଅଛି, "ବିଦ୍ୟା ଦଦାତି ବିନୟଂ ।" ମାତ୍ର ଆଧୁନିକ ଯୁଗରେ ବିଦ୍ୟା ଉତ୍ପତ୍ତିରେ ଔଦ୍ଧତ୍ୟର ମାତ୍ରା ଅଧିକ ପରିଦୃଷ୍ଟ ହୁଏ । କାଳିଦାସ କହିଅଛନ୍ତି—

ଭବନ୍ତି ନମ୍ରାସ୍ତରବଃ ଫଳୋଦ୍ଗମୈ
ର୍ନବାମ୍ବୁଭିର୍ଦୂରି ବିଲମ୍ବିନୋ ଘନାଃ ।
ଅନୁଦ୍ଧତାଃ ସତ୍ପୁରୁଷାଃ ସମୃଦ୍ଧିଭିଃ
ସ୍ୱଭାବ ଏ ବୈଷ ପରୋପକାରିଣାମ୍ ।

ଅର୍ଥାତ୍ ବୃକ୍ଷମାନେ ଫଳପୂର୍ଣ୍ଣ ହେଲେ ନତ ହୁଅନ୍ତି, ମେଘସମୂହ ନୂତନ ଜଳଭାରରେ ଅବନତ ହୋଇଯାନ୍ତି ଏବଂ ସାଧୁ ବ୍ୟକ୍ତିମାନେ ଐଶ୍ୱର୍ଯ୍ୟବାନ୍ ହେଲେ ବିନୀତ ହୁଅନ୍ତି, ଏହାହିଁ ପରୋପକାରୀମାନଙ୍କର ସ୍ୱଭାବ । ଚନ୍ଦ୍ରଶେଖରଙ୍କର ବିନୟ ଗୁଣ ତଦୀୟ ପାଣ୍ଡିତ୍ୟକୁ ଭୂଷିତ କରୁଥିଲା । ଅହଙ୍କାର ତାହାଙ୍କ ହୃଦୟରେ ଲବ ମାତ୍ର ସ୍ଥାନ ପାଇ ନ ଥିଲା । କାହାରି କୌଣସି ବିଷୟରେ ଗର୍ବ ହେଲେ ସେ ତାହାକୁ ଭଲ ପାଉନଥିଲେ ଏବଂ ସୁବିଧା ପାଇଲେ ଶାସ୍ତ୍ରୋକ୍ତି ଦେଖାଇ ପ୍ରକାରାନ୍ତରେ ତାହା ପରିତ୍ୟାଗ କରିବାକୁ ବୁଝାଇ ଦେଉଥିଲେ । ସେ କହନ୍ତି, "**ଗର୍ବ**ଗଞ୍ଜନୋ ହରିଃ", ଅର୍ଥାତ୍ ପରମେଶ୍ୱର କାହାର ଗର୍ବ ଦେଖିଲେ ତାହା ଖର୍ବ କରିଦିଅନ୍ତି । ପଣ୍ଡିତମାନେ ସାମନ୍ତଙ୍କ ସଙ୍ଗେ ଶାସ୍ତ୍ରାଲାପ ପୂର୍ବକ ତଦୀୟ ପାଣ୍ଡିତ୍ୟର ପ୍ରଶଂସା କଲେ ସେ କହୁଥିଲେ, "ପୂର୍ବରେ ଯେଉଁ ସବୁ ପଣ୍ଡିତ ଥିଲେ ସେମାନଙ୍କ ତୁଳନାରେ ମୁଁ କିଛି ନୁହେଁ । ଏ ଦେଶରେ ଯେଉଁମାନେ ପ୍ରକୃତ ପଣ୍ଡିତପଦବାଚ୍ୟ ଥିଲେ ସେମାନଙ୍କ ମଧ୍ୟରୁ ପ୍ରାୟ ସମସ୍ତେ ବ୍ରାହ୍ମଣ, ମୁଁ ତ ବ୍ରାହ୍ମଣ ନୁହେଁ । ଯାହା କିଛି ସାମାନ୍ୟ ଜ୍ଞାନଲାଭ କରିଅଛି, ତାହା କେବଳ ସେହି ବ୍ରାହ୍ମଣମାନଙ୍କ ଆଶୀର୍ବାଦରୁ ।"

ଅବ୍ଧି ର୍ଲଂଘିତ ଏବ ବାନରଭଟୈଃ କିନ୍ତ୍ୱସ୍ୟ ଗମ୍ଭୀରତା—
ମାପାତାଳ ନିମଗ୍ନ ପୀବର ବପୁ ର୍ଜାନାତି ମନ୍ଥାଚଳଃ ।
ଦେବୈଂ ବାଚ ମୁପାସତେ ହି ବହବଃ ସାରଂ ଚ ସାରସ୍ୱତଂ
ଜାନୀତେ ନିତରାମସୌ ଗୁରୁକୁଲ କ୍ଳିଷ୍ଟୋ ମୁରାରିଃ କବିଃ ॥

ଚନ୍ଦ୍ରଶେଖର ଅନର୍ଘରାଘବରେ ମୁରାରି କବିଙ୍କର ଏହି ଉକ୍ତିକୁ ପସନ୍ଦ କରୁନଥିଲେ । ସେ କହନ୍ତି, "କବି ବଡ଼ ଅଧ୍ୟବସାୟୀ ଥିଲେ ସତ୍ୟ ମାତ୍ର ସେ କେବଳ ଯେ ବିଦ୍ୟାର ସାରବତ୍ତା ଜାଣିଥିଲେ, ଏକଥା କହିବା ତାହାଙ୍କର ଧୃଷ୍ଟତାର ପରିଚାୟକ ।" ଉକ୍ତ ଶ୍ଳୋକଟିର ସମ୍ପୂର୍ଣ୍ଣ ଅର୍ଥ ଏହି ଯେ—"ବାନରମାନେ ସମୁଦ୍ର ଲଂଘନ କରିଥିଲେହେଁ ତାହାର ଗମ୍ଭୀରତା ବିଷୟରେ ଅନଭିଜ୍ଞ ଥିଲେ, କିନ୍ତୁ ମନ୍ଦର ପର୍ବତ ସମୁଦ୍ର ମନ୍ଥନ ସମୟରେ ନିଜର ସମଗ୍ର ପୃଥୁଳ ଶରୀରକୁ ପାତାଳପର୍ଯ୍ୟନ୍ତ ପ୍ରବେଶ କରାଇ ଥିବାରୁ ସାଗରର ସମ୍ପୂର୍ଣ୍ଣ ଗମ୍ଭୀରତା ଉପଲବ୍ଧି କରିଥିଲା । ସେହିପରି କବିମାନେ ଦେବତାଙ୍କର ସହାୟତାବଶତଃ କେବଳ କବିତା ରଚନା କରିପାରି ଅଛନ୍ତି । ମାତ୍ର ମୁଁ ଅଧ୍ୟୟନ ନିମନ୍ତେ ଗୁରୁଗୃହରେ କ୍ଳେଶଭୋଗ କରିକରି ବିଦ୍ୟାର ସାରବତ୍ତା ସମ୍ପୂର୍ଣ୍ଣରୂପେ ଅବଗତ ହୋଇଅଛି ।" ପୁନଶ୍ଚ କବି ଉପେନ୍ଦ୍ର ଭଞ୍ଜଙ୍କର ଏହି ଉକ୍ତିରୁ ତଦୀୟ ଅହଙ୍କାର ଉପଲବ୍ଧି କରି ସାମନ୍ତ ହାସ୍ୟ ସମ୍ବରଣ କରିପାରୁନଥିଲେ । ଉକ୍ତିଟି ଏହି—"ତରଣି-କୂଳର ସାର, ଅଗସ୍ତିରୁ ନିରନ୍ତର । ବୋଲେ ଉପଇନ୍ଦ୍ର ଭଞ୍ଜ ମୁଁ ଲଭିଛି ଶବଦ-ସମୁଦ୍ର ପାର ।"

ଦୟା ଦାକ୍ଷିଣ୍ୟାଦି ଯେଉଁ ସବୁ ସଦ୍‌ଗୁଣ ସୌଜନ୍ୟ ନିମନ୍ତେ ଆବଶ୍ୟକ, ଚନ୍ଦ୍ରଶେଖରଙ୍କଠାରେ ସେ ସମସ୍ତ ଏକାଧାରରେ ପୂର୍ଣ୍ଣ ଥିଲା । ପାଣ୍ଡିତ୍ୟ ଓ ଭଗବଦ୍‌ଭକ୍ତି ସେଥିରେ ସଂଯୁକ୍ତ ହୋଇ ବିଷ୍ଣୁପ୍ରତିମାର୍ପିତ ସୁବାସିତ ପୁଷ୍ପମାଳାରେ ତୁଳସୀ ଦଳ ମିଶ୍ରଣ ତୁଲ୍ୟ ଶୋଭମାନ ହୋଇଥିଲା । ସେ

ସୌଜନ୍ୟର ସମ୍ପୂର୍ଣ୍ଣ ଅଦର୍ଶ ଥିଲେ । ଊନବିଂଶ ଶତାବ୍ଦୀରେ ତାହାଙ୍କଠାରୁ ହିଁ ସୌଜନ୍ୟ ଜନିତ ଯଶ ଏହି ପୃଥିବୀରେ ଜାତ ହୋଇଅଛି କହିଲେ ଅତିରଞ୍ଜିତ ହେବନାହିଁ । ଯେଉଁମାନେ ତଦୀୟ ସୌଜନ୍ୟ ସାକ୍ଷାତ୍ ଅନୁଭବ କରିଅଛନ୍ତି ସେମାନେ ମୁଗ୍ଧ ହୋଇଯାଇଅଛନ୍ତି । ଲେଖକ ଏହା ଅନେକ ବୃଦ୍ଧଙ୍କଠାରୁ ଶ୍ରବଣ କରିଅଛି ଏବଂ ସାମନ୍ତଙ୍କ ଦେହତ୍ୟାଗ ସମୟରୁ ଲେଖକର ବୟସ ଏକୋଇଶ ବର୍ଷ ହୋଇଥିବାରୁ ସେ ସ୍ୱୟଂ କେତେକ ଅନୁଭବ ମଧ୍ୟ କରିଅଛି । ମହେଶଚନ୍ଦ୍ର ନ୍ୟାୟରତ୍ନ, କେ. ଜି. ଗୁପ୍ତ କମିସନର, ଅଧ୍ୟାପକ ଯୋଗେଶଚନ୍ଦ୍ର, କବିବର ରାଧାନାଥ, ଗୁଣଗ୍ରାହୀ ସୁଦାମବାବୁ, କର୍ମବୀର ଗୌରିଶଙ୍କର, ବାଗ୍ମୀପ୍ରବର ପଣ୍ଡିତ ମାର୍କଣ୍ଡେୟ ତର୍କପଞ୍ଚାନନ, ପଣ୍ଡିତ ଚନ୍ଦ୍ରାମଣି ତର୍କବାଚସ୍ପତି, ମହାମହୋପାଧ୍ୟାୟ ପଣ୍ଡିତ ମଧୁସୂଦନ ମିଶ୍ର ତର୍କବାଚସ୍ପତି ପ୍ରଭୃତି ସୁଧୀବୃନ୍ଦ ବିଶେଷ ଭାବରେ ସାମନ୍ତଙ୍କର ସୌଜନ୍ୟ ଅନୁଭବ କରିଥିଲେ । ରାଜାମାନଙ୍କ ମଧ୍ୟରୁ ଆଠମଲ୍ଲିକର ମହେନ୍ଦ୍ର ଦେବ, ନୟାଗଡ଼ର ଲଡ଼ୁକେଶ୍ୱର, ମଞ୍ଜୁଷାର ଜଗନ୍ନାଥ ରାଜମଣି, ବାମଣ୍ଡାର ସୁଚଳ ଦେବ ଓ ମୟୂରଭଞ୍ଜର ରାମଚନ୍ଦ୍ର ପ୍ରଭୃତି କେତେକ ଗୁଣଜ୍ଞ ରାଜା ସାମନ୍ତଙ୍କର ସୌଜନ୍ୟରେ ମୁଗ୍ଧ ହୋଇଥିଲେ ।

**ନିର୍ଭୀକତା ବା ସତ୍ ସାହସ** — କେତେକ ପଣ୍ଡିତଙ୍କୁ ଦେଖାଯାଏ ଯେ ସେମାନେ ରାଜା, ଧନୀ ଓ ରାଜକର୍ମଚାରୀମାନଙ୍କୁ ଭୟ କରି ସେମାନଙ୍କ ମତ ବିରୋଧରେ କାର୍ଯ୍ୟ କରନ୍ତି ନାହିଁ । ମାତ୍ର ଚନ୍ଦ୍ରଶେଖର ଧନବଳ ଓ ଶାରୀରିକବଳଶୂନ୍ୟ ହେଲେହେଁ ହୃଦୟର ବଳବତ୍ତା ହେତୁରୁ କାହାକୁ ପ୍ରକୃତ କଥା କହିବା ବିଷୟରେ ଭୟ କରୁ ନ ଥିଲେ ।

ମୁଁ ପୂର୍ବରୁ କହିଅଛି ଯେ ସେ ଅନେକବାର ସ୍ୱୀୟ ରାଜା ନଟବର ସିଂହଙ୍କ ମତର ପ୍ରତିକୂଳାଚରଣ କରିବାରୁ ତାହାଙ୍କ କୋପଦୃଷ୍ଟି-ପଥରେ ପତିତ ହୋଇଥିଲେ । ନୟାଗଡ଼ ମେଳରେ ନଟବରସିଂହ ଦୋଷୀ ସାବ୍ୟସ୍ତ ହୋଇ ଭୟଙ୍କର ବିପଦରେ ପଡ଼ିଥିବା ସମୟରେ କଟକର ଓଡ଼ିଶାର ଉତ୍କଳ ବାବୁ ମଧୁସୂଦନ ଦାସଙ୍କ ଯତ୍ନରେ ସେହି ବିପଦରୁ ମୁକ୍ତିଲାଭ କରିଥିଲେ । ବିପନ୍ମୁକ୍ତିପରେ ନଟବର ସିଂହ ମଧୁବାବୁଙ୍କୁ ଖଣ୍ଡପଡ଼ାକୁ ଆମନ୍ତ୍ରଣ କରି ତାହାଙ୍କ ସମ୍ବର୍ଦ୍ଧନା ନିମିତ୍ତ ଗୋଟିଏ ସଭା କରାଇଲେ । ସେଥିରେ ଅନ୍ୟାନ୍ୟ ସ୍ଥାନୀୟ ପଣ୍ଡିତଗଣଙ୍କ ମଧ୍ୟରେ ଚନ୍ଦ୍ରଶେଖର ଉପସ୍ଥିତ ଥିଲେ । କେତେକ କବି ଓ ପଣ୍ଡିତ ମଧୁବାବୁଙ୍କର ପ୍ରଶଂସାଗର୍ଭକ କବିତା ଓ ଶ୍ଳୋକ ପାଠ କରିଥିଲେ । ସେତେବେଳେ ମଧୁବାବୁ ପଣ୍ଡିତମାନଙ୍କର ନିର୍ବୁଦ୍ଧିତା ସମ୍ବନ୍ଧରେ ଏହି ଗଳ୍ପଟି କହିଥିଲେ—"କୌଣସି ସ୍ଥାନରେ ଜଣେ ବ୍ରାହ୍ମଣ ପଣ୍ଡିତ ଥିଲେ । ତାହାଙ୍କର ପତ୍ନୀ ଚୁଲ୍ଲୀରେ ଡାଲି ବସାଇଦେଇ ଜଳାଶୟକୁ ସକାଶେ ଗଲେ ଏବଂ ସ୍ୱାମୀଙ୍କୁ କହିଲେ 'ଡାଲେ ଡାଲି ଉତୁରିପଡ଼ିବ, ଟିକିଏ ଚାହିଁଥିବ ।' ପତ୍ନୀଙ୍କର ଗମନପରେ ପ୍ରକୃତରେ ଡାଲି ଉତୁରି ପଡ଼ିଲା ! ତହୁଁ ପଣ୍ଡିତ ଅନନ୍ୟୋପାୟ ହୋଇ ଅସନଶୁଦ୍ଧି ପୂର୍ବକ ଚଣ୍ଡୀପାଠ କରି ବସିଲେ । ମାତ୍ର ଡାଲି ଉତୁରା କି ଚଣ୍ଡୀପାଠକୁ ମାନିବ ! ତାହା ଉତୁରି ଉତୁରି ଚୁଲ୍ଲୀରୁ ଜାଳ ଲିଭାଇ ଦେବା ସମୟରେ ପତ୍ନୀ ଆସି ଦେଖିଲେ ଓ ସ୍ୱାମୀଙ୍କୁ କହିଲେ 'ମଲ, ଏଠାଟାରେ ବସିଛ, ଡାଲି ଉତୁରି ପଡ଼ୁଛି ତମକୁ କ'ଣ ଦିଶୁନାହିଁ ?' ଏହା କହି ଅଟିକାରେ ପାଣିମୁଠାଏ ପକାଇଦେଲେ ଏବଂ ଜାଳ କାଢ଼ିଦେଲେ । ତହୁଁ ଉତୁରା ବନ୍ଦ ହୋଇଗଲା । ଏହା ଦେଖି ପଣ୍ଡିତେ ବିସ୍ମିତ ହୋଇ କହିଲେ 'ତୁ କି ମନ୍ତ୍ର ପଢ଼ି ପାଣି ପକାଇଦେଲୁ ଯେ ଉତୁରା ବନ୍ଦ ହୋଇଗଲା; ମୁଁ ସପ୍ତଶତୀ ଚଣ୍ଡୀ ଗୁଣିଲି ତଥାପି ସେ ମାନିଲା ନାହିଁ ।' ପଣ୍ଡିତମାନେ ସିନା ପାଠ ପଢ଼ିଥାନ୍ତି, ମାତ୍ର ସେମାନଙ୍କର ଏହିପରି ବୁଦ୍ଧି ।" ଏହା ଶୁଣି ସଭାସ୍ଥ ସମସ୍ତ ବ୍ୟକ୍ତି ନିରୁତ୍ତର ରହିଲେ; କିନ୍ତୁ ଚନ୍ଦ୍ରଶେଖର

ପଣ୍ଡିତମାନଙ୍କର ବିଶେଷତଃ ବ୍ରାହ୍ମଣମାନଙ୍କର ନିନ୍ଦା ଶ୍ରବଣ କରି ସ୍ଥିର ହୋଇ ରହିପାରିଲେ ନାହିଁ । ସେ ଜଳଦଗମ୍ଭୀର ସ୍ୱରରେ ଏହି ଶ୍ଳୋକଟି ପାଠକଲେ—

ଧୀରୋଽପ୍ୟଧୀଶ୍ୱରକୃତ ଧୀରବର୍ଗୋ
ମୂଢ଼ାତ୍ ପରିଭୂତି ମବଶ୍ୟ ମେତି ।
ହୀରୋଽପି ନୀରପ୍ରତିମାଶ୍ମ ଲୋହୋ
ମେଷସ୍ୟ ଶୃଙ୍ଗାଦପି ଯାତି ଭଙ୍ଗମ୍ ॥

ମଧୁବାବୁ ଶ୍ଳୋକର ଅର୍ଥ ଜିଜ୍ଞାସାକରନ୍ତେ ସାମନ୍ତ ବ୍ୟାଖ୍ୟାକଲେ— "ଅଧୀଶ୍ୱରକୃତ ଧୀରବର୍ଗଃ ଧୀରଃ ଅପି ମୂଢ଼ାତ୍ ପରିଭୂତିଂ ଅବଶ୍ୟଂ ଏତି । ନୀରପ୍ରତିମାଶ୍ମଲୋହଃ ହୀରଃ ଅପି ମେଷସ୍ୟ ଶୃଙ୍ଗାତ୍ ଅପି ଭଙ୍ଗଂ ଯାତି । ଅର୍ଥାତ୍ ଅନେକ ପଣ୍ଡିତଙ୍କୁ ପରାଜିତ କରିଥିବା ମହାପଣ୍ଡିତ ମଧ୍ୟ ସମୟରେ ମୂଢ଼ଠାରୁ ପରାଜୟ ଲାଭକରେ; ଯେପରି ପଥର ଓ ଲୁହାକୁ ପାଣି ଫଟାଇ ଦେଉଥିବା ହୀରା ମଧ୍ୟ ସମୟରେ ମେଣ୍ଢା ଶିଙ୍ଗରେ, ଭାଙ୍ଗିଯାଏ ।" ଶ୍ଳୋକାର୍ଥ ଶୁଣି କଟବର ଓ ମଧୁବାବୁଙ୍କର ମୁଖ ମଳିନ ହୋଇଗଲା । ସମସ୍ତ ଲୋକେ ମଧ୍ୟ ଭୟ କଲେ ଏବଂ ମନେ ମନେ ଭାବୁଥିଲେ, ସାମନ୍ତ ଏପରି କହିଦେଲେ, ପ୍ରତାପୀ ରାଜା ତାହାଙ୍କର କିଛି ଅନିଷ୍ଟ କରିପାରନ୍ତି । କିନ୍ତୁ ନିର୍ଭୀକ ସାମନ୍ତଙ୍କର ଲେଶ ମାତ୍ର ଭୟ ନାହିଁ । ତତ୍ପରଦିନ ମଧୁବାବୁ ସାମନ୍ତଙ୍କ ଗୃହକୁ ଆସି ନାନାପ୍ରକାର ମିଷ୍ଟାଲାପ କରି କହିଲେ, "କାଲି ଆପଣଙ୍କ ମନରେ ମୁଁ ବଡ଼ କଷ୍ଟ ଦେଲି, ମାତ୍ର ମୁଁ ଅପଣଙ୍କୁ କିଛି ନାହିଁ । ଅପଣ ତ ଜଙ୍ଗଲର ଚନ୍ଦ୍ରମା ସ୍ୱରୂପ ।" ତହୁଁ ସାମନ୍ତ କହିଲେ, "ମୋ ମନରେ ତ କିଛି କଷ୍ଟ ହୋଇନାହିଁ, ମୁଁ ଯେ ଅପଣଙ୍କୁ ମୁହଁ ଫୁଟି କହି ଅପଣଙ୍କ ମନରେ କଷ୍ଟ ଦେଇଛି । ଯାହାହେଉ ସମୟେ ସମୟେ ସେହିପରି ଘଟିଥାଏ. ତାହା ଧର୍ତ୍ତବ୍ୟ

କୁହେ ।” ମଧୁବାବୁ କହିଲେ, “ଆଜିକାଲି ମୋ ମନର କିଛି ଠିକ୍ ନାହିଁ, ନାନା ଚିନ୍ତା ମନରେ ରହି ତାହାକୁ ବିଚଳିତ କରିପକାଉଅଛି ।” ତାହା ଶୁଣି ସାମନ୍ତ ଟିକିଏ ହସି କହିଲେ, “ହଁ, ବିଷୟୀମାନେ ଯାହା ଖୋଜନ୍ତି, ଆପଣଙ୍କର ତ ସେହି ଭାବନା । କାହାପାଇଁ ମକଦ୍ଦମା ଲଢିଲେ କିଛି ଧନ ପାଇଯିବେ ।” ତହିଁ ମଧୁବାବୁ ଟିକିଏ ହସିଦେଇ କହିଲେ, “ମୁଁ କ’ଣ ଆପଣଙ୍କ ସଙ୍ଗେ ଯୁଦ୍ଧ କରିପାରିବ ?” ଏହିପରି କଥୋପକଥନ କରି ମଧୁବାବୁ ବସାକୁ ଫେରିଗଲେ । ଏଥିରୁ ପାଠକମାନେ ସାମନ୍ତଙ୍କର ନିର୍ଭୀକତା ବିଷୟ ବେଶ୍ ବୁଝିପାରିବେ ।

ମୁଁ ପୂର୍ବରେ ଲେଖିଅଛି ଯେ କେ. ଜି. ଗୁପ୍ତ କମିସନର ଥରେ ସାକ୍ଷାତ୍ କରିବାକୁ ସାମନ୍ତଙ୍କ ଗୃହକୁ ଆସିଥିଲେ । ସେ ଯେତେବେଳେ ଆସିଲେ ସେତେବେଳେ ସାମନ୍ତ ଦଅଁଘରେ ବସି ଜପ କରୁଥିଲେ । ଜନୈକ ପୁତ୍ର ସାହେବଙ୍କର ଆଗମନ ସମ୍ବାଦ ଦେବାରୁ କିଛିକ୍ଷଣ ପରେ ସାମନ୍ତ ଉତ୍ତର ଦେଲେ, “କ’ଣ କରିବ, ମୋର ନିତ୍ୟକର୍ମ ନ ସରିଲେ ତ ମୁଁ ଉଠିପାରିବ ନାହିଁ । ସରିଗଲାଣି ଯେ, ଆଉ ଅଧଘଣ୍ଟେ ଲାଗିବ । ସାହେବଙ୍କୁ କହ, ଯେବେ ଅଧଘଣ୍ଟେ ଅପେକ୍ଷା କରିବେ ତେବେ ମୁଁ ଦେଖା କରିବ, ନଚେତ୍ ସେ ଯାନ୍ତୁ, ନିତ୍ୟକର୍ମ ଶେଷରେ ମୁଁ ଯାଇ ତାଙ୍କ ବସାରେ ଦେଖା କରିବ ।” ତାହା ଶୁଣି ସାହେବ ଅର୍ଦ୍ଧଘଣ୍ଟା ସମୟ ଅପେକ୍ଷା କରି ସାମନ୍ତଙ୍କ ପୁତ୍ରମାନଙ୍କ ସଙ୍ଗରେ ଆଳାପ କରୁଥାନ୍ତି । ସାମନ୍ତ ନିର୍ଦ୍ଦିଷ୍ଟ ସମୟରେ ସେହି ନିତ୍ୟକର୍ମ ବେଶରେ ଯାଇ ସାହେବଙ୍କ ସଙ୍ଗେ ଆଳାପ କଲେ । ଏଥିରୁ ପାଠକେ ବୁଝିନେବେ, ସାମନ୍ତଙ୍କର କିପରି ସାହସ ଓ ଧର୍ମନିଷ୍ଠା । ଜଣେ କମିସନର ସାହେବଙ୍କୁ ଅର୍ଦ୍ଧଘଣ୍ଟା ସମୟ ନିଜଗୃହରେ ବସାଇ ରଖିବାକୁ କିଏ ସାହସ କରିପାରେ । ଜଣେ ପୋଲିସ କର୍ମଚାରୀ ଦ୍ୱାରରେ ଉପସ୍ଥିତ ହେବାର ସମ୍ବାଦ ପାଇଲେ କେବେ ଗୃହର

ସମସ୍ତ କାର୍ଯ୍ୟ ସ୍ୱଚ୍ଛ ହଠାତ୍ ତାହା ସଙ୍ଗରେ ଦେଖା କରୁଅଛନ୍ତି । ସ୍ମିଥ୍ସାହେବ ମଧ୍ୟ ତାଦୃଶ ଗୁଣଗ୍ରାହକ ଓ ଅହଙ୍କାରଶୂନ୍ୟ ଥିଲେ । ସେ ସମ୍ପ୍ରଦାୟ ଗଡ଼ଜାତର ସର୍ବେସର୍ବା ହୋଇଥିଲେହେଁ ତାହାଙ୍କର ଇଦୃଶ ବ୍ୟବହାର ପ୍ରଶଂସନୀୟ ଅଟେ ।

ପାଠକମାନେ ଜାଣନ୍ତି ଯେ ଚନ୍ଦ୍ରଶେଖର କୌଣସିପ୍ରକାର ପ୍ରଲୋଭନରେ ଭୁଲିବାର ଲୋକ ନୁହନ୍ତି କିମ୍ବା ଭୟପ୍ରଦର୍ଶନରେ ଭୀତ ହେବାର ବ୍ୟକ୍ତି ନୁହନ୍ତି । ଯେଉଁ ସମୟରେ ପାଶ୍ଚାତ୍ୟ ଜ୍ୟୋତିର୍ବିତ୍ ଥିବେଠ୍ ସାହେବ କଟକ ନର୍ମାଲ ସ୍କୁଲରେ ଯୋଗେଶବାବୁଙ୍କର ମାଧ୍ୟସ୍ଥ୍ୟରେ ପୃଥିବୀର ଗତି-ସମ୍ବନ୍ଧୀୟ ନାନା ପ୍ରଶ୍ନ କରି ପରାଜିତ ହେଲେ, ସେହି ସମୟରେ ପାଶ୍ଚାତ୍ୟ ମତ ସଙ୍ଗେ ମିଳାଇବାକୁ ସାମନ୍ତଙ୍କୁ ସେ ଅନେକ ପ୍ରଲୋଭନ ଦେଖାଇ ଥିଲେ ଏବଂ ସଙ୍କେତରେ ଭୟପ୍ରଦର୍ଶନ ମଧ୍ୟ କରିଥିଲେ । ମାତ୍ର ନିର୍ଲୋଭ ସତ୍ସାହସୀ ସାମନ୍ତ ମହୋଦୟ ପ୍ରଲୋଭନରେ ପଡ଼ିବା ଦୂରେ ଥାଉ ବରଂ କହିଲେ, "ସରକାର ଏଥିପାଇଁ ମୋତେ ଛିଡ଼ାଇ ଦିଅନ୍ତୁ ପଛକେ, ମୁଁ ମୋହର ନିଜ ମତର ପରିବର୍ତ୍ତନ କରିପାରିବି ନାହିଁ ।" ଏହା ଚନ୍ଦ୍ରଶେଖରଙ୍କର ଅନନ୍ତ ସାହସର ପରିଚୟ ନୁହେ କି ?

ଚନ୍ଦ୍ରଶେଖରଙ୍କର ଗମ୍ଭୀର ସାହସର ଆଉ ଗୋଟିଏ ଜ୍ୱଳନ୍ତ ନିଦର୍ଶନ ଏହି ଯେ, ସିଦ୍ଧାନ୍ତଦର୍ପଣ ଗ୍ରନ୍ଥର ମୁଦ୍ରଣ ପ୍ରସ୍ତାବ ହେବାରୁ ସାମନ୍ତ ଗ୍ରନ୍ଥଶେଷରେ ସନ୍ନିବିଷ୍ଟ କରିବାକୁ ଆଉ ଗୋଟିଏ ନୂତନ ଶ୍ଳୋକ ରଚନା କଲେ । ତାହାର ଅର୍ଥ ବୁଝି ଯୋଗେଶବାବୁ ସେହି ଶ୍ଳୋକ ମୁଦ୍ରିତ କରାଇବାକୁ ଭୀତ ହେଲେ । ସାମନ୍ତ କହିଲେ, "ଆପଣ ଭୀତ ହେଉଅଛନ୍ତି କାହିଁକି ? ସରକାର ମୋହର ଯୁକ୍ତି ଖଣ୍ଡନ କଲେ ତ ମୋତେ ଦଣ୍ଡ ଦେବେ ? ହଉ, ମୋର ମତ ଖଣ୍ଡନ କରନ୍ତୁ, ମୁଁ ଦଣ୍ଡିତ ହେବାକୁ ଭୀତ ନୁହେଁ ।" ସେହି ଶ୍ଳୋକଟି ଏହି—

ବ୍ରହ୍ମାଣ୍ଡାଖଣ୍ଡଖଣ୍ଡସ୍ଥିରତରଧରଣୀମଣ୍ଡଳଭ୍ରାନ୍ତିଶୌଣ୍ଡ—
ପ୍ରୋଦ୍ଦଣ୍ଡୈଂଲଣ୍ଡଦନ୍ତାବଳବଳଦଳନାଭୂଣ୍ଡକଣ୍ଠୀରବଶ୍ଚ।
ସୋଽୟଂ ମାଲାଦ୍‌ ସିଂହାନ୍ୱୟବଦନଦରୀନିର୍ଗତଃ ପ୍ରାପ୍ତଦୁର୍ଗଃ
ସ୍ଥୀତସ୍ତଖ୍ୟାତିରସ୍ତୁ ପ୍ରଥମବଗଣିତ ସ୍କନ୍ଦସାରଃ ପ୍ରବନ୍ଧଃ ॥

ଅର୍ଥାତ୍‌ "ଅଖଣ୍ଡଖଣ୍ଡସ୍ୱରୂପ ବ୍ରହ୍ମାଣ୍ଡ ମଧ୍ୟରେ ପୃଥିବୀ ସମ୍ପୂର୍ଣ୍ଣ ସ୍ଥିର ଥିଲେହେଁ ତାହାର ଭ୍ରମଣ ସମ୍ବନ୍ଧରେ ପ୍ରବଳ ଇଂଲଣ୍ଡୀୟ ଜ୍ୟୋତିର୍ବିତ୍‌-ମାନେ ବ୍ୟାକୁଳ ହୋଇଅଛନ୍ତି । ସେମାନେ ହସ୍ତୀ ସ୍ୱରୂପ ଏବଂ ସେମାନଙ୍କ ବଳ ଦଳନ ବିଷୟରେ ମୋହର ପ୍ରବନ୍ଧ ସିଂହସଦୃଶ ଅଟେ । ସିଂହ କୌଣସି ପର୍ବତ ଗୁମ୍ଫାରୁ ବାହାରି ଦୁର୍ଗାଙ୍କୁ ଆଶ୍ରୟ କରିଥାଏ ଏବଂ ଜନ୍ତୁଗଣ ମଧ୍ୟରେ ତାହାର ବଳ ଅଗ୍ରଗଣ୍ୟ ହୋଇଥାଏ । ମୋହର ଯେଉଁ ପ୍ରବନ୍ଧରୂପ ସିଂହ ମଦୀୟ ମୁଖ ଗହ୍ୱରରୁ ନିର୍ଗତ ହୋଇ ଖଣ୍ଡପଡ଼ନ ଦୁର୍ଗକୁ ଆଶ୍ରୟ କରିଅଛି ଏବଂ ଯେଉଁ ପ୍ରବନ୍ଧରେ ସ୍କନ୍ଦସାର ନାମକ ବିଷୟ ପ୍ରଥମେ ଗଣିତ ହୋଇଅଛି ସେ ସ୍ୱୀୟ ଖ୍ୟାତି ବିସ୍ତାର କରୁ ।" ଲୋକେ ମୌଖିକ କେତେ କଥା କହିଦେଇ ପାରନ୍ତି । ମାତ୍ର ଉଦ୍ଧୃତ ଶ୍ଳୋକ ମୁଦ୍ରିତ କରାଇବା ବିଷୟରେ କାହାର ଏପରି ସାହସ ହେବ ?

**ପରିହାସ-ରସିକତା ଓ ସରସତା**

ଅନେକ ତାର୍କିକ ଏବଂ ଗାଣିତିକ ପଣ୍ଡିତ ସେହି ଶୁଷ୍କ କର୍କଶ ବିଷୟର ଆଲୋଚନାରେହିଁ ଜୀବନଯାପନ କରନ୍ତି; ମାତ୍ର ଚନ୍ଦ୍ରଶେଖରଙ୍କର ମନ ଜ୍ୟୋତିଷ୍ଶାସ୍ତ୍ର ମଧ୍ୟରେ ଏବଂ ଭଗବତ୍‌ ପାଦପଦ୍ମରେ ନିହିତ ଥିଲେହେଁ ନୀରସ ନ ଥିଲା । ସେ ସମୟେ ସମୟେ ହାସ୍ୟ ପରିହାସରେ ଓ ହାବେଲି ପ୍ରଭୃତି ବାଣ ଜମୀଣରେ ବିନୋଦ କରି ହୃଦୟକୁ ସରସ ରଖୁଥିଲେ । ବାଜାପାଲି ଦେଖିବାକୁ ସେ ଭଲ

ପାଉଥିଲେ । ନିର୍ଲେଚନ ମହାପାତ୍ର ନାମକ ପାଲକାରର ଚତୁଷ୍ପଦୀ କବିତା ରଚନାରେ ପ୍ରତ୍ୟୁତ୍ପନ୍ନମତିତ୍ୱ ଦେଖି ସେ ମୁଗ୍ଧ ହୋଇଥିଲେ । ଝାମ୍ପୁ ବା ଦଣ୍ଡନାଚ, ଚୈତିଘୋଡ଼ା ନାଚ ଏପରି କି କେଳାନାଚ ପର୍ଯ୍ୟନ୍ତ ତାହାଙ୍କର ଦର୍ଶନୀୟ ଥିଲା । ସେଥିରେ ସେ ନର୍ତ୍ତକ ନର୍ତ୍ତକୀମାନଙ୍କର ଭାବଭଙ୍ଗୀ-ଦେଖି କ୍ଷଣିକ ଆନନ୍ଦ ଉପଭୋଗ କରୁଥିଲେ । ତାହାଙ୍କ ପରିହାସ-ରସିକତା ଓ ସରସତା ବିଷୟରେ କେତେକ ବିବରଣ ଶୁଣିଲେ ପାଠକବୃନ୍ଦଙ୍କର କୌତୁହଳ ଚରିତାର୍ଥ ହେବ ।

ଏକଦା ସାମନ୍ତଙ୍କ ଘରେ ବ୍ରାହ୍ମଣମାନେ ଭୋଜନ କରୁଥିବା ସମୟରେ ଜଣେ ବୟୋବୃଦ୍ଧ ବ୍ରାହ୍ମଣ ନିଜ ଦେହରେ କଣ୍ଡୁରୋଗ ହୋଇଥିବାରୁ ମିଷ୍ଟପଦାର୍ଥ ଖାଇବାକୁ ଅନିଚ୍ଛୁକ ହେବାର ଦେଖି ସାମନ୍ତ ପଚାରିଲେ, "ମହାଶ୍ରେ, ମିଠା ଜିନିଷ ଖାଇବାକୁ ନାହିଁ କରୁଛ କାହିଁକି ?" ବ୍ରାହ୍ମଣ ଉତ୍ତର ଦେଲେ, "ମୋହର ସର୍ବାଙ୍ଗରେ କଣ୍ଡୁ ହୋଇଅଛି, କାଳେ ମିଠା ଖାଇଲେ ସେ ଗୁଡ଼ାକ ପାଚିଯିବ, ସେଥିପାଇଁ ନାହିଁ କରୁଛି ।" ସାମନ୍ତ କହିଲେ, "ତମର ଏ ବୟସରେ ଗୋଟିଏ ଅଙ୍ଗରେ କଣ୍ଡୁ ନ ହୋଇ ସର୍ବାଙ୍ଗରେ କଣ୍ଡୁ ହୋଇଅଛି । ଏହା ତ ଆଶ୍ଚର୍ଯ୍ୟର କଥା ।" ତାହା ଶୁଣି ଯେଉଁମାନେ ବୁଝିପାରିଲେ ସେମାନେ ହସି ଉଠିଲେ । ସାମନ୍ତଙ୍କର ଅଧିକାଂଶ ପରିହାସ ଆଦିରସାତ୍ମକ ଥିବାରୁ ସେ ସବୁ ପାଠ୍ୟପୁସ୍ତକରେ ଲେଖନୀୟ ନୁହେଁ ।

ଚନ୍ଦ୍ରଶେଖର ଲଟାଭୋଜୀ କରିବାକୁ ବଡ଼ ଭଲ ପାଉଥିଲେ । ସେ କେତେକ ସଙ୍ଗୀ, ପଣ୍ଡିତ ଓ ସଙ୍ଗୀତଜ୍ଞ ବ୍ୟକ୍ତିଙ୍କୁ, ପୁତ୍ରମାନଙ୍କୁ ଏବଂ ଭୃତ୍ୟାଦିଙ୍କୁ ସଙ୍ଗରେ ନେଇ ବନକୁ ଯାଉଥିଲେ । ସେଠାରେ ଖେଚରାନ୍ନ, ପାୟସ, ବ୍ୟଞ୍ଜନାଦି ନାନାଦ୍ରବ୍ୟର ରନ୍ଧନ ହେଉଥିଲା ଏବଂ ସମସ୍ତେ ଏକ ସ୍ଥାନରେ ବସି ଭୋଜନ କରୁଥିଲେ । ରନ୍ଧନ ସମୟରେ ସଙ୍ଗୀତ ଚର୍ଚ୍ଚା ଓ ଭୋଜନ ସମୟରେ ହାସ ପରିହାସ ହେଉଥାଏ । ଯେତେବେଳେ ସେ

ଆକାଶ ପର୍ଯ୍ୟବେକ୍ଷଣରେ ବ୍ୟାପୃତ ଥିଲେ ସେତେବେଳେ ଅନେକବାର ବନ୍ଧୁଲୋକ ଘେନି ବନ ଭୋଜି କରିବାକୁ ଯାଉଥିଲେ । ସେଠାରେ ପର୍ବତ ଉପରେ ଆରୋହଣ କରି ଆକାଶମଣ୍ଡଳ ନିରୀକ୍ଷଣ କରୁଥିଲେ ଏବଂ ରାତ୍ରିରେ ରହି ସୂର୍ଯ୍ୟୋଦୟ ଓ ଅପରାହ୍ଣରେ ସୂର୍ଯ୍ୟାସ୍ତ ଦେଖୁଥିଲେ । ଚକ୍ରବାଳରେ ସୂର୍ଯ୍ୟଙ୍କର ଉଦୟାଦି ଦେଖି ସେ ଉଦୟାନ୍ତରଗଣନାର ସାଧନ କରିଥିଲେ । ସେଥିପାଇଁ ସେ ଖଣ୍ଡପଡ଼ାର ରାଜଗିରି, ମହୀପାଣୁଣି ଓ ଗୋସିଂଙ୍କ ପର୍ବତଉପରେ ବହୁବାର ଆରୋହଣ କରିଥିଲେ । ତାହାଙ୍କ ଶିଷ୍ୟ ପଣ୍ଡିତ ରୁଦ୍ରନାରାୟଣ ଯେଉଁସମୟରେ ଅଧ୍ୟୟନ କରୁଥିଲେ ସେହି ସମୟରେ ସେ ପାହାଡ଼ ପର୍ବତ ଦେଖିବାକୁ ଅତ୍ୟନ୍ତ ଆଗ୍ରହ ପ୍ରକାଶ କରୁଥିଲେ । ତାହାଙ୍କର ଅଭିଳାଷ ପୂରଣକରିବା ନିମନ୍ତେ ମଧ୍ୟ ଅନେକଥର ବନଭୋଜି କରାଯାଇଥିଲା ।

ଚନ୍ଦ୍ରଶେଖର ହାବେଲୀବାଣ ନିର୍ମାଣରେ ଦକ୍ଷ ଥିଲେ । ଅନ୍ୟାନ୍ୟଙ୍କ ଠାରୁ ସାମନ୍ତଙ୍କର ବାଣନିର୍ମାଣରେ ବିଶେଷତ୍ୱ ଥିଲା । ସେ ବାଣର ପ୍ରତ୍ୟେକ ମାଟିଗଣ୍ଠୀ ଓ ବାରୁଦଗଣ୍ଠୀର ମାପ ରଖୁଥିଲେ ଏବଂ ପ୍ରତ୍ୟେକଗଣ୍ଠୀରେ ସମାନଭାବରେ କେତେଥର ମାଡ଼ ଦିଆଯିବ, ତାହାର ହିସାବ ରଖି କାର୍ଯ୍ୟ କରୁଥିଲେ । ନଳୀ, କାଣ୍ଡିଅ ପ୍ରଭୃତି ସମସ୍ତ ଦ୍ରବ୍ୟର ମାପ ରହୁଥିଲା । ହାବେଲୀବାଣ ଉପରକୁ ଗଲାବେଳେ ଏକଦୃଷ୍ଟିରେ ସାମନ୍ତ ଆକାଶକୁ ଚାହିଁଥାନ୍ତି ଏବଂ ତାହା କେତେ ଉଚ୍ଚକୁ ଗଲା ଗଣନାଦ୍ୱାରା ନିଶ୍ଚୟ କରୁଥାନ୍ତି । ତତ୍ପରେ ସଙ୍ଗୀମାନଙ୍କୁ କହନ୍ତି, "ଅହେ, ଜାଣିଲ, ଏଉଣ୍ଡାରେ ଏତିକି ମାଡ଼ ଦେଇଥିଲି ଯେ ଏହା ଏତେହାତ ଉଚ୍ଚକୁ ଗଲା ।" ବାସ୍ତବିକ ତାହାଙ୍କର ହାବେଲୀ ଗୋଟିଏ ମାତ୍ର ବ୍ୟର୍ଥ ହୁଏ ନାହିଁ । ହାବେଲୀ ନିର୍ମାଣ ସମୟରେ ସେ ପ୍ରାଚୀନ କବିପ୍ରଣୀତ ହାବେଲୀ-ଶ୍ଳୋକଗୁଡ଼ିଏ ପାଠକରି ତାହାର ଅର୍ଥ ଲୋକମାନଙ୍କୁ ଶୁଣାଉଥାନ୍ତି । ସେଥିମଧ୍ୟରୁ ଗୋଟିଏ ଶ୍ଳୋକ ଏହି—

ଯସ୍ତାବତ୍ ପ୍ରତପନ୍ଲଂ ଷିତିତଳଂ ଘୋର ପ୍ରତାପାନଳୈ—
ର୍ଗର୍ଜ୍ଜଂସ୍ତର୍ଜିତ ସର୍ବବାଣ ଉଦଗାତ୍ ଯୋଦ୍ଧୁଂ ସୁରେନ୍ଦ୍ରଂ ପ୍ରତି ।
ସୋଽୟଂ ବାଣପୁରନ୍ଦରେ ଦବ ଯଦା ବଜ୍ରଂ ବ୍ୟମୁଞ୍ଚନ୍ନିଜଂ
ଛନ୍ନାସ୍ତତ୍ ପବ କୋଽୟଃ ପରମିୟଂ ନୈବାପି ନାଗାବଳୀ ।

ଏହୁପରି ଆମୋଦପ୍ରମୋଦରେ ମଧ୍ୟ ସାମନ୍ତଙ୍କର ଗଣିତ-ଚର୍ଚ୍ଚା ହେଉଥାଏ । ସର୍ବସାଧାରଣଙ୍କର ବୋଧଗମ୍ୟ ହେବା ଉଦ୍ଦେଶ୍ୟରେ ଉକ୍ତ ଶ୍ଳୋକର ଅର୍ଥ ପ୍ରକାଶିତ ହେଲା—ଯେଉଁ ହାଉଇବାଣ ଗର୍ଜ୍ଜନପୂର୍ବକ ପୃଥିବୀକୁ ଅତ୍ୟନ୍ତ ଆଲୋକିତ କରି ଏବଂ ଘୋର ପ୍ରତାପାଗ୍ନି ଦ୍ୱାରା ସମସ୍ତ ପ୍ରକାର ବାଣମାନଙ୍କୁ ତର୍ଜିତ କରି ଯୁଦ୍ଧ କରିବା ନିମନ୍ତେ ଇନ୍ଦ୍ରଙ୍କ ଆଡ଼କୁ ଊର୍ଦ୍ଧ୍ୱକୁ ଧାବିତ ହେଲା, ସେହି ବାଣଶ୍ରେଷ୍ଠ ଯେତେବେଳେ ଆକାଶରେ ନିଜର ବଜ୍ର ତ୍ୟାଗ କଲା ସେତେବେଳେ ନାଗଛଳରେ ବୋଧହୁଏ ଇନ୍ଦ୍ରଙ୍କର ଅସଂଖ୍ୟ ବଜ୍ର ଛିନ୍ନ ହୋଇଗଲା । ହାଉଇରେ ଏପରି ଭାବରେ ନାଗ ଖଞ୍ଜାଥାଏ ଯେ ତାହା ଛାଡ଼ିଲା ବେଳକୁ ଶବ୍ଦ କରି ସମସ୍ତଙ୍କୁ ସାବଧାନ କରିଦିଏ ।

ମୃତ୍ୟୁର ପ୍ରାୟ ଚାରିମାସ ପୂର୍ବରୁ ଚନ୍ଦ୍ରଶେଖର ସ୍ୱୀୟ ମଧ୍ୟମ ପୁତ୍ର ଗଦାଧର ସିଂହଙ୍କୁ କହିଲେ, "ଗଦାଧର, ଲବଣ୍ୟବତୀ ପୋଥିଖଣ୍ଡିକ ଆଣିଲ ।" ଗଦାଧର ଆଶ୍ଚର୍ଯ୍ୟାନ୍ୱିତ ହୋଇ କହିଲେ, "ଲବଣ୍ୟବତୀ କ'ଣ ହେବ ?" ସାମନ୍ତ କହିଲେ, "ଶୁଷ୍କ କର୍କଶ ଜ୍ୟୋତିର୍ବିଦ୍ୟା ଆଲୋଚନା କରି କରି ମୋହର ହୃଦୟଟା ନୀରସ ହୋଇଯାଇଛି, ମୃତ୍ୟୁ ନିକଟବର୍ତ୍ତୀ ହେଲାଣି, ରସାତ୍ମକ କବିତାର ଅନୁଶୀଳନ କରି ମନଟାକୁ ଟିକିଏ ସରସ କରି ନ ଦେଲେ ଜନ୍ମାନ୍ତରରେ ନୀରସ ହୋଇଯିବ । ଜନ୍ମାନ୍ତରୀଣ ବାସନା ରଖିବାପାଇଁ ଟିକିଏ ଲବଣ୍ୟବତୀ ଛାନ୍ଦ ପଢ଼ିବାକୁ ଇଚ୍ଛା ହେଉଅଛି ।" ଗଦାଧର କହିଲେ, "ଆପଣଙ୍କର ତ ନୈଷଧକାବ୍ୟ

ମୁଖସ୍ଥ ଅଛ, ତାକୁ ବଳି କ'ଣ ଲବଣ୍ୟବତୀ ସରସ କାବ୍ୟ ?” ସାମନ୍ତ ଉତ୍ତର ଦେଲେ, “ବାପୁ, ତୁମ୍ଭେ ଜାଣ ନାହିଁ ନୈଷଧକାବ୍ୟ ସଂସ୍କୃତଭାଷାରେ ଲିଖିତ । ମାତୃଭାଷା ଯେପରି ଆମ୍ଭମାନଙ୍କ ହୃଦୟରେ ପ୍ରବେଶ କରିପାରିବ ସଂସ୍କୃତଭାଷାରେ ସେପରି ହେବ ନାହିଁ ।”ତାହା ଶୁଣି ଗଦାଧର ଲବଣ୍ୟବତୀ ପୁସ୍ତକ ଆଣିଦେଲେ । ସାମନ୍ତ ଆମୂଳାନ୍ତ ଥରେ ପାଠକଲେ ଏବଂ ପଠନଶେଷରେ କହିଲେ, “ଏ ରସଗ୍ରନ୍ଥ, ଏହାକୁ ଶୁଣିଲେ ପୁଣ୍ୟ ନାହିଁ, ବରଂ ପାପ ହେଲା । ଏଥିର ପ୍ରାୟଶ୍ଚିତ୍ତ କିପରି କରିବାକୁ ହେବ ?” ଏହା ଭାବି ସେ ଗୌତମୀ ତନ୍ତ୍ରପାଠରେ ତହିଁର ପ୍ରାୟଶ୍ଚିତ୍ତ କରିଥିଲେ । ଏଥିରୁ ଚନ୍ଦ୍ରଶେଖରଙ୍କର ଜନ୍ମାନ୍ତରର ବିଶ୍ୱାସ ଓ ମାତୃଭାଷା ପ୍ରତି ଅନୁରାଗ ସ୍ପଷ୍ଟ ପ୍ରମାଣିତ ହେଉଅଛି । ଗ୍ରନ୍ଥର ବାହୁଲ୍ୟ ଭୟରେ ଅନ୍ୟାନ୍ୟ ବିଷୟ ଉପେକ୍ଷିତ ହେଲା ।

**ଉପସଂହାର**—ସମସ୍ତେ ଆକାଶକୁ ଦେଖୁଅଛନ୍ତି; ମାତ୍ର କବିର ଦର୍ଶନପ୍ରଣାଳୀ ସ୍ୱତନ୍ତ୍ର । ସେ ଆକାଶର ଅସୀମତା ଓ ଉଦାରତା ପ୍ରଭୃତିର ଯେପରି ଉପଲବ୍ଧି କରିପାରେ, ସାଧାରଣଙ୍କ ଦୃଷ୍ଟିରେ ତାହା ଅନୁଭୂତ ହୁଏ ନାହିଁ । ନଦୀ, ପର୍ବତ ଓ ଅରଣ୍ୟାଣି ପ୍ରଭୃତି ଚିନ୍ତକର ଦୃଷ୍ଟିରେ ଏକପ୍ରକାର ଏବଂ ସାଧାରଣ ଦୃଷ୍ଟିରେ ଅନ୍ୟ ଏକପ୍ରକାର । ଚନ୍ଦ୍ରଶେଖରଙ୍କର ଜୀବନ ଚରିତ ଜଣେ କବି କିମ୍ବା ସମାଲୋଚକଙ୍କ ହସ୍ତରେ ପଡ଼ିଥିଲେ ଗୋଟିଏ ବୃହତ୍ ଗ୍ରନ୍ଥ ହୋଇଥାନ୍ତା । ମୁଁ ପୂର୍ବରେ କହିଅଛି ଯେ ମାଦୃଶ ସ୍ୱଳ୍ପବିଦ୍ୟ ବ୍ୟକ୍ତି ପକ୍ଷରେ ମହାତ୍ମା ଚନ୍ଦ୍ରଶେଖରଙ୍କର ଜୀବନଚରିତ ପର୍ଯ୍ୟାଲୋଚନାପୂର୍ବକ ଲିପିବଦ୍ଧ କରିବାର ଚେଷ୍ଟା ଧୃଷ୍ଟତାର ପରିଚାୟକ ମାତ୍ର । ସୂର୍ଯ୍ୟ ଯେପରି ଅସାର କର୍ଦ୍ଦମରାଶି ଉପରେ ସ୍ୱୀୟ କିରଣପାତ କରି ତନ୍ମଧ୍ୟରୁ ସାରାଂଶ ଜଳ ଆକର୍ଷଣ କରନ୍ତି, ସେହିପରି ସଜ୍ଜନମାନେ ନିଜ ଗୁଣଗ୍ରାହିତାର ବଶବର୍ତ୍ତୀ ହୋଇ ମହାତ୍ମ୍ୟ ଉକ୍ତ

ଗ୍ରନ୍ଥକରେ ଯଦି କିଛି ଗୁଣ ଥାଏ ତାହାହିଁ ଗ୍ରହଣପୂର୍ବକ ଦୋଷସମୂହର ପରିହାର କରିବେ; ମୁଁ ଏତିକିମାତ୍ର ବିନୀତପ୍ରାର୍ଥନା କରେଁ । ପକ୍ଷାନ୍ତରେ ମୋହର ବାକ୍ୟନିଚୟ ସଦୋଷ ହେଲେହେଁ ପରମଭାଗବତ ମହାତ୍ମା ଚନ୍ଦ୍ରଶେଖରଙ୍କର ପବିତ୍ର ଚରିତ ବର୍ଣ୍ଣନା କରିଥିବାରୁ କିଞ୍ଚିତ୍ ବିଶୁଦ୍ଧତା ଲାଭ କରିବାର ଭରସା କରି ଅନ୍ତର କେତେକ ବିଷୟର ଉଲ୍ଲେଖ ପୂର୍ବକ ଏହି ପ୍ରକରଣର ଉପସଂହାର କରିବି ।

ଚନ୍ଦ୍ରଶେଖର ଜଣେ ମହାପୁରୁଷ ଥିଲେ । ଘୋର କଷ୍ଟସହିଷ୍ଣୁତା, ସଂସାର ପ୍ରତି ଅନାସ୍ଥା ଓ ସୁଖ ଦୁଃଖରେ ଅଚଳତା ପ୍ରଭୃତି ତାହାର ଜ୍ୱଳନ୍ତ ନିଦର୍ଶନ । ତଦ୍ଭିନ୍ନ ତାହାଙ୍କର ପାଦଦ୍ୱୟରେ ଦୁଇଗୋଟି ଊର୍ଦ୍ଧ୍ୱରେଖା ଥିବାରୁ ଜଣେ ସାମୁଦ୍ରିକବିତ୍ ସାମନ୍ତଙ୍କୁ ମହାପୁରୁଷ ବୋଲି କହିଯାଇ ଅଛନ୍ତି । ତହିଁର ପ୍ରମାଣ ବାକ୍ୟ ସାମୁଦ୍ରିକ ଗ୍ରନ୍ଥରେ ଦ୍ରଷ୍ଟବ୍ୟ । ନୀତିଶାସ୍ତ୍ରୋକ୍ତ:—

ବିପଦି ଧୈର୍ଯ୍ୟ ମଥାଭ୍ୟୁଦୟେ କ୍ଷମା,
ସଦସି ବାକ୍‌ପଟୁତା ଯୁଧିବିକ୍ରମଃ ।
ଯଶସି ଚାଭିରୁଚି ର୍ବ୍ୟସନଂ ଶ୍ରୁତୌ,
ପ୍ରକୃତି ସିଦ୍ଧମିଦଂ ହି ମହାତ୍ମନାମ୍ ॥

ଏହି ସମସ୍ତ ଗୁଣ ମଧ୍ୟରୁ କେବଳ ଯୁଦ୍ଧରେ ପରାକ୍ରମ ଗୁଣ ତାହାଙ୍କଠାରେ ନ ଥିଲା । ତେଣୁ ସେ ନିଜେ ସ୍ୱୀୟ କ୍ଷତ୍ରିୟ ଧର୍ମରେ ଅଧମ ଥିବା ନିମ୍ନୋକ୍ତ ଶ୍ଲୋକରେ ପ୍ରକାଶ କରିଅଛନ୍ତି । ଏଥିର ପୂର୍ବ ଶ୍ଲୋକଦ୍ୱୟରେ ସାମନ୍ତ ନିଜ ବଂଶର ପରିଚୟ ଦେଇଅଛନ୍ତି । ଶ୍ଲୋକଟି ଏହି:—

ତସ୍ମାତ୍ ଶ୍ରୀ ମଧୁସୂଦନାଭିଧ ମହାପାତ୍ରାଦ୍‌ଗୁରୋ ର୍ଦୀକ୍ଷିତୋ
ବିଦ୍ୟା ମୂଦ୍ୟତ ଖଡ୍‌ଗବଂଶ୍ୟ ସ୍ୱପଦାଦାନନ୍ଦମିଶ୍ରାଦ୍ ଗତଃ ।
ସୋଽହଂ ବ୍ରହ୍ମଗିରୀଶ ମାଧବ ପଦାବାସଃ ସ୍ୱଧର୍ମାଧମଃ
ସିଦ୍ଧାନ୍ତଗ୍ରଥନଂ ଚକାର ଯଦଦଂ ସ୍ୟାତ୍ କୃଷ୍ଣପାଦାର୍ପିତମ୍ ॥

ଏହି ଶ୍ଲୋକର ପୂର୍ବ ଶ୍ଲୋକରେ ଚନ୍ଦ୍ରଶେଖର ସ୍ୱୀୟ ପିତା ଶ୍ୟାମବନ୍ଧୁ ସିଂହଙ୍କର ପରିଚୟ ଦେଇଅଛନ୍ତି; ତେଣୁ ତସ୍ମାତ୍ ଅର୍ଥାତ ଶ୍ୟାମବନ୍ଧୁଙ୍କଠାରୁ ସେ ଜାତ ହୋଇଥିବାର ଉଲ୍ଲେଖ କରିଅଛନ୍ତି । ଶ୍ଲୋକର ସମ୍ପୂର୍ଣ୍ଣ ଅର୍ଥ ଏହି ଯେ, ମୁଁ ଶ୍ରୀ ମଧୁସୂଦନ ମହାପାତ୍ରଙ୍କଠାରୁ ମନ୍ତ୍ରୋପଦେଶ ପାଇଅଛି ଏବଂ ଖଡ୍‌ଗବଂଶ୍ୟୋପାଧିକ ଆନନ୍ଦ ମିଶ୍ରଙ୍କଠାରୁ ବିଦ୍ୟାଧ୍ୟୟନ କରିଅଛି । ବ୍ରହ୍ମାଦ୍ରିବାସୀ ଶ୍ରୀ ନୀଳମାଧବଦେବଙ୍କ ସ୍ଥାନରେ ଅର୍ଥାତ୍ ଖଣ୍ଡପଡ଼ାରେ ମୋହର ବାସସ୍ଥାନ ଏବଂ ମୁଁ ସ୍ୱୀୟ କ୍ଷତ୍ରିୟବୃତ୍ତିରେ ଅଧମ ଅଟେଁ । ଯେଉଁ ସିଦ୍ଧାନ୍ତଦର୍ପଣ ଗ୍ରନ୍ଥ ରଚନା କରିଅଛି, ତାହା ଶ୍ରୀକୃଷ୍ଣ ପାଦପଦ୍ମରେ ଅର୍ପଣ କଲି । ତଥାପି କେହି ଜଣେ ଦୋଷଦର୍ଶୀ ସାମନ୍ତଙ୍କଠାରେ "କ୍ଷତ୍ରିୟ ବୃତ୍ତିରେ ଅଧମ ଥିବା" ଦୋଷ ଆରୋପ କରିଥିବାର ଶୁଣି ଏହି ଶ୍ଲୋକଟି ସ୍ୱତଃପ୍ରଣୋଦିତ ହୋଇ ...

ଖଲୋଽବଲୋକତେ ଦୋଷାନ୍ ଗୁଣପୂର୍ଣ୍ଣେଷ୍ୱ ବସ୍ତୁଷୁ ।
ବନେ ପୁଷ୍ପଫଳାକୀର୍ଣ୍ଣେ ପୁରୀଷମିବ ଶୂକରଃ ।

ଅର୍ଥାତ୍ ଯେପରି ଘୁଷୁରି ନାନାପୁଷ୍ପ ଓ ଫଳପୂର୍ଣ୍ଣ ବନରେ କେବଳ ଶୁଷ୍କ ବିଷ୍ଠା ଖୋଜି ବୁଲୁଥାଏ, ସେହିପରି ଖଳଲୋକ ଗୁଣପୂର୍ଣ୍ଣ ବସ୍ତୁସମୂହରେ କେବଳ ଦୋଷଗୁଡ଼ିକର ଅନୁସନ୍ଧାନ କରୁଥାଏ । ଯତ୍ତାତ୍ ( ବିପଦଃ ) ତ୍ରାୟତି ଇତି କ୍ଷତ୍ରିୟଃ, ଏହି ବ୍ୟୁତ୍ପତ୍ତି ଅନୁସାରେ ସାମନ୍ତ

ଯୁଦ୍ଧବିଦ୍ୟାରେ ଅସମର୍ଥ ଥିଲେହେଁ ବହୁ ଲୋକଙ୍କୁ ନାନା ବିପଦରୁ ଉଦ୍ଧାର କରିଥିଲେ । ନଟବର ସିଂହ ଓ ପଣ୍ଡିତ ରାଜବଲ୍ଲଭ ମିଶ୍ର ସେଥିର ଜ୍ୱଳନ୍ତ ଉଦାହରଣ । ପୁନଶ୍ଚ ସେ ଶାସ୍ତ୍ରବିଷୟକ ବାଗ୍‌ଯୁଦ୍ଧରେ ଅସାଧାରଣ ଦକ୍ଷ ଥିଲେ ।

ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ତୁଲ୍ୟ ଚନ୍ଦ୍ରଶେଖରଙ୍କର ଜୀବନ କର୍ମମୟ ନ ଥିଲା । ସେ ଶାନ୍ତିପୂର୍ଣ୍ଣ ଚିତ୍ତରେ ଓ ଏକ ସ୍ଥାନରେ ଅବସ୍ଥାନ କରି ଜୀବନ ଅତିବାହିତ କରିଥିଲେହେଁ ଏକଦିନ ସୁଦ୍ଧା ବୃଥାରେ କାଳଯାପନ ନ କରି ନୀତିଶାସ୍ତ୍ରୋକ୍ତ ଏହି ଶ୍ଳୋକର ସାର୍ଥକତା ସମ୍ପାଦନ କରି ଯାଇଅଛନ୍ତି ।

ଅଞ୍ଜନସ୍ୟ କ୍ଷୟଂ ଦୃଷ୍ଟ୍ୱା ବଲ୍ମୀକସ୍ୟ ଚ ସଞ୍ଚୟଂ,
ଅବନ୍ଧ୍ୟଂ ଦିବସଂ କୁର୍ଯ୍ୟାଦାନାଧ୍ୟୟନକର୍ମଭିଃ ।

ଅର୍ଥାତ୍ ଯେପରି ପ୍ରତ୍ୟହ ଟିକିଏ ଟିକିଏ ଅଞ୍ଜନ ଆଖିରେ ଲଗାଇଲେହେଁ କେତେକ ଦିନ ପରେ ଡବାଟି ଶେଷ ହୋଇଯାଏ ଏବଂ କ୍ଷୁଦ୍ର କୀଟ ଉଇ ଗୁଡ଼ିକ ଅତି ସାମାନ୍ୟ ଭାବରେ ପ୍ରତ୍ୟହ ସଞ୍ଚୟ କଲେହେଁ କିଛିଦିନ ପରେ ଗୋଟିଏ ବଡ଼ ଉଇହୁଙ୍କା ଗଠିତ ହୁଏ, ସେହିପରି ପ୍ରତ୍ୟହ କିଛି କିଛି ଦାନ କରିବାଦ୍ୱାରା ପୁଣ୍ୟ ସଞ୍ଚୟ ଓ ଅଧ୍ୟୟନଦ୍ୱାରା ଜ୍ଞାନ ସଞ୍ଚୟ ଏବଂ ସତ୍‌କର୍ମଦ୍ୱାରା ଅଦୃଷ୍ଟ ସଞ୍ଚୟ କରି ଲୋକମାନଙ୍କର ଦିବସକୁ ସଫଳ କରିବା ଉଚିତ ।

ଧନଲୋଭ କିମ୍ବା କପଟତା ତାହାଙ୍କ ହୃଦୟକୁ ସ୍ପର୍ଶ କରି ନ ଥିଲା । ଗଡ଼ଜାତର ଅନେକ ରାଜା ସାମନ୍ତଙ୍କୁ ନିଜ ରାଜ୍ୟକୁ ନିମନ୍ତ୍ରଣ କରିଥିଲେହେଁ ସେ ପୁରସ୍କାରଦରେ ଲୋଭଶୂନ୍ୟତାବଶତଃ ଏବଂ ସ୍ତ୍ରୀଙ୍କୁ

ନିତ୍ୟକର୍ମରେ ବ୍ୟାଘାତ ହେବା ଭୟରେ ବିନୀତଭାବରେ ସେ ସବୁ ନିମନ୍ତ୍ରଣ ପ୍ରତ୍ୟାଖ୍ୟାନ କରିଥିଲେ । ନଟବର ସିଂହ ନିଜର ପରଶ୍ରୀକାତରତା ହେତୁରୁ ସାମନ୍ତଙ୍କର ଶତ୍ରୁ ଥିଲେହେଁ ଚନ୍ଦ୍ରଶେଖର ନିଜର ନିଷ୍କପଟତା ଗୁଣରେ ପରୋକ୍ଷରେ ତାହାଙ୍କର ହିତାଚରଣ କରିଥିଲେ । ତାହାଙ୍କର ଚିତ୍ତ ସର୍ବଦା ଜ୍ୟୋତିଷ୍କଙ୍କରେ ଭ୍ରମଣପୂର୍ବକ ଭଗବତ୍‌ପଦାରବିନ୍ଦରେ ଆସକ୍ତ ଥିବାରୁ ସାଂସାରିକ ବିଷୟରେ ଉଦାସୀନ ଥିଲା ଏବଂ ଗଙ୍ଗୋଦକବତ୍ ସ୍ୱଚ୍ଛ ଥିବାରୁ ବୈଷୟିକ ଅବିଳତା ସେଥିରେ ସ୍ଥାନ ପାଇ ନ ଥିଲା । ତାହାଙ୍କର ପୁତ୍ର କନ୍ୟା ପ୍ରଭୃତି ଏବଂ ଭୃତ୍ୟଗଣ ପ୍ରତି ଅତ୍ୟନ୍ତ ବାତ୍ସଲ୍ୟ ଥିଲେହେଁ ସେ ଅନାସକ୍ତଭାବରେ ସମସ୍ତ କାର୍ଯ୍ୟ ସମ୍ପାଦନ କରୁଥିଲେ । ସାମନ୍ତଙ୍କର ପବିତ୍ର ଦାମ୍ପତ୍ୟ ପ୍ରେମ ପ୍ରବଳ ଥିଲେହେଁ କୌଣସି ସମୟରେ ପତ୍ନୀଙ୍କର ଧର୍ମନିଷ୍ଠା ସମ୍ବନ୍ଧରେ ତ୍ରୁଟି ଦେଖିଲେ ତତ୍‌କ୍ଷଣାତ୍ ସ୍ପଷ୍ଟବାକ୍ୟ କହିବାକୁ ସଙ୍କୁଚିତ ହେଉ ନ ଥିଲେ । ସ୍ୱୟଂ ଘୋର ସଂଯମର ବଶବର୍ତ୍ତୀ ହୋଇ ଇନ୍ଦ୍ରିୟବୃତ୍ତି ଚରିତାର୍ଥ କରୁଥିଲେ ଏବଂ ଉପଦେଶଚ୍ଛଳରେ ପୁତ୍ରାଦିଙ୍କ ସମ୍ମୁଖରେ ଏହି ବାକ୍ୟଟି ସମୟେ ସମୟେ ପ୍ରକାଶ କରୁଥିଲେ—

ମାତ୍ରା ସ୍ୱସ୍ରା ଦୁହିତ୍ରା ଚ ନୈକତ୍ରାସନସଂସ୍ଥିତଃ,
ବଳବାନିନ୍ଦ୍ରିୟଗ୍ରାମୋ ବିଦ୍ୱାଂସମପି କର୍ଷତି ।

ଅର୍ଥାତ୍ ବିମାତା ( କନ୍ୟା ମା ), ଭଗିନୀ ଏବଂ ଦୁହିତା ସହ ଏକାସନରେ ଅବସ୍ଥାନ କରିବ ନାହିଁ; କାରଣ ବଳବାନ୍ ଇନ୍ଦ୍ରିୟସମୂହ ପଣ୍ଡିତବ୍ୟକ୍ତିଙ୍କୁ ସୁଦ୍ଧା ବିଚଳିତ କରିଦିଅନ୍ତି ।

ଚନ୍ଦ୍ରଶେଖର କୌଳିନ୍ୟ ପ୍ରଥାକୁ ବର୍ଜନ କରିନଥିଲେ; ବରଂ ତାହାକୁ ଭଲ ପାଉଥିଲେ । ନିଜର କୁଳପରମ୍ପରାନୁସାରେ ବୀଜଗୃହ ଏବଂ ଗୁରୁଗୃହ

ଭିନ୍ନ ଅପରଗୃହକୁ ଯାଉ ନ ଥିଲେ । ଯେ କୌଣସି ସ୍ଥାନକୁ ଗଲେହେଁ ଜଣେ ଭୃତ୍ୟ ବରାବର ସଙ୍ଗରେ ଥାଏ । ସେ ନୀଚକୁଳକୁ ଘୃଣା କରୁନଥିଲେ, ବରଂ ସେଥିରେ ଗୁଣୀ ଲୋକ ଦେଖିଲେ ତାହାଙ୍କୁ ସମାଦର କରୁଥିଲେ, ମାତ୍ର କୁଳର ଉଚ୍ଚତା ଓ ନୀଚତା ଅନୁସାରେ ଲୋକେ ତାହାଙ୍କ ନିକଟରେ ଆସନ ପାଉଥିଲେ । ବାସ୍ତବିକ କୁଳୀନତା ହୃଦୟବିତ୍ତର ସମ୍ପୂର୍ଣ୍ଣ ପରିପନ୍ଥୀ । କଥାରେ କହନ୍ତି 'ଯଥା କୁଳେ ଜନ୍ମ ତଥା ଗତେଷ୍ଟଃ ।' ସ୍ଥାନେ ସ୍ଥାନେ ଏହି ନିୟମର ବ୍ୟତିକ୍ରମ ଘଟୁଥିଲେହେଁ ପ୍ରାୟ ଶତକଡ଼ା ଊନଶତ ଭାଗ ଉକ୍ତ ବାକ୍ୟାନୁସାରେ ଘଟେ । ଜଣେ କବି ଜାତିରେ ତନ୍ତୁବାୟ ଥିବାରୁ ବିକ୍ରମାଦିତ୍ୟଙ୍କ ସଭାର ପଶ୍ଚାଦ୍‌ଭାଗରେ ତାହାଙ୍କର ଆସନ ନିର୍ଦ୍ଦେଶ କରାଯାଇଥିଲା, ତେଣୁ ସେହି କବି କହିଥିଲେ—

ପୁରୋ ବା ପଶ୍ଚାଦ୍‌ବା ଯଦିହ ନିବସାମଃ କ୍ଷିତିଭୁଜାଂ,
ତଦା କା ନୋ ହାନି ର୍ବଚନରଚନାକ୍ରୀତଜଗତାମ୍ ।
ଅଗାରେ କାନ୍ତାରେ କୁଚକଲଶହାରେ ମୃଗଦୃଶାଂ,
ମଣେର୍ମୂଲ୍ୟଂ ମୂଲ୍ୟଂ ସହଜସୁଭଗସ୍ୟ ଦ୍ୟୁତିମତଃ ।

ଅର୍ଥାତ୍ ଆମ୍ଭେମାନେ ବାକ୍‌ଚାତୁରୀରେ ଜଗତକୁ କିଣି କରିଅଛୁଁ । ରାଜାମାନଙ୍କର ସମ୍ମୁଖରେ ବା ପଶ୍ଚାଦ୍‌ଭାଗରେ ବସିଲେ ଆମ୍ଭମାନଙ୍କର କିଛି ହାନି ହେବନାହିଁ; କାରଣ ଗୃହରେ, ଅରଣ୍ୟରେ ଏବଂ ରମଣୀମାନଙ୍କ କୁଚକଲଶୋପରି ପତିତ ହାରରେ ଗ୍ରଥିତ ସ୍ୱଭାବସୁନ୍ଦର ଦୀପ୍ତିମାନ୍ ମଣିର ସମାନ ମୂଲ୍ୟ ହୁଏ । ଉକ୍ତ ଶ୍ଳୋକ ଶ୍ରବଣମାତ୍ରେ ସଭାସ୍ଥ କାଳିଦାସ କହିଥିଲେ—

ଉଚ୍ଚୌ ପଚ୍ଚୌ ଶୁକ୍ଳୌ ଦିବି ଚ ଭୁବି ଚୈବାବିରତଗତିଃ,
ସଦା ମୀନଂ ଭୃଙ୍ଗଂ ବସତି ସକଲସ୍ଥାଣୁଶିରସି ।

ବକେ ଶୁଭ୍ରଃ ସର୍ବୋଗୁଣସମୁଦୟଃ କଷ୍ଟିଦଧିକୋ,
ଗୁଣାଃ ସ୍ଥାନେ ମାନ୍ୟା ନ ତୁ ନରବରସ୍ଥାନରହିତାଃ ।

ଅର୍ଥାତ୍ ବଗର ଉଭୟ ପକ୍ଷ ଶୁକ୍ଳ, ମାତ୍ର ଚନ୍ଦ୍ରଙ୍କର କେବଳ ଗୋଟିଏ ପକ୍ଷ ଶୁକ୍ଳ, ବକ ଆକାଶରେ ଓ ପୃଥିବୀରେ ଗମନ କରେ, କିନ୍ତୁ ଚନ୍ଦ୍ର କେବଳ ଆକାଶରେ ଗତି କରନ୍ତି; ବକ ସର୍ବଦା ମୀନ ଭକ୍ଷଣକରେ, ମାତ୍ର ଚନ୍ଦ୍ର କେବେ କେବେ ମୀନରାଶି ଭୋଗ କରନ୍ତି; ବଗ ସମସ୍ତ ଥୁଣ୍ଟା ଗଛରେ ବାସ କରିପାରେ, ମାତ୍ର ଚନ୍ଦ୍ର ଏକମାତ୍ର ସ୍ଥାଣୁ ବା ମହାଦେବଙ୍କ ମସ୍ତକରେ ବାସ କରନ୍ତି; ଏହିପରି ବଗଠାରେ ଚନ୍ଦ୍ରସମ୍ବନ୍ଧୀୟ ସମସ୍ତ ଗୁଣ ଅଧିକ ଥିଲେହେଁ ବଡ଼ କିଏ ? ନିଶ୍ଚୟ ଚନ୍ଦ୍ର ଉତ୍କୃଷ୍ଟ ଅଟନ୍ତି । ଅତଏବ ଗୁଣମାନେ ଉପଯୁକ୍ତ ସ୍ଥାନରେ ଥିଲେ ମାନ୍ୟ ହୁଅନ୍ତି । ରାଜପୂଜ୍ୟ ନ ହେଲେ ସେମାନେ କଦାପି ମାନ୍ୟ ହୋଇପାରନ୍ତି ନାହିଁ । ତାହା ଶୁଣି ତନ୍ତୁବାୟ କବି ନିସ୍ତବ୍ଧ ହୋଇଗଲେ । ସୁତରାଂ କୁଳୀନତା ଯେ ଆଦରଣୀୟ ବସ୍ତୁ ଏଥିରେ ସନ୍ଦେହ ନାହିଁ ।

ଚନ୍ଦ୍ରଶେଖର ସ୍ୱୟଂ ପରମଧାର୍ମିକ ଥିଲେହେଁ ଧର୍ମପ୍ରଚାରକ ନ ଥିଲେ । ଜିଜ୍ଞାସିତ ନ ହେଲେ ସେ କାହାକୁ ଧର୍ମୋପଦେଶ ଦେଉ ନ ଥିଲେ । ସେ ଧର୍ମ ଶାସ୍ତ୍ରରେ ଅସାଧାରଣ ଜ୍ଞାନଲାଭ କରି ତଦନୁସାରେ ଜୀବନରେ କାର୍ଯ୍ୟ କରିଯାଉଥିଲେ । ଇଂରେଜୀରେ ଯାହାକୁ **Practical man** କହନ୍ତି, ଚନ୍ଦ୍ରଶେଖର ସେହିପରି ବ୍ୟକ୍ତି ଥିଲେ । ଅନେକଙ୍କୁ ଏପରି ଦେଖାଯାଏ ଯେ ସେମାନେ ବହୁଧର୍ମୋପଦେଶ ଦିଅନ୍ତି, ମାତ୍ର ସେଥିରୁ ଗୋଟିଏ ସୁଦ୍ଧା ପାଳନ କରନ୍ତି ନାହିଁ । ତାଦୃଶ ଧର୍ମୋପଦେଷ୍ଟାଙ୍କଠାରୁ ଜନସାଧାରଣ କି ଶିକ୍ଷା କରିବେ ? ଚନ୍ଦ୍ରଶେଖରଙ୍କ ବ୍ୟବହାରକୁ ବିଶ୍ୱାସ କରି ଯେଉଁମାନେ ତାହାଙ୍କର ଅନୁକରଣ କରି ପାରିଲେ ସେମାନେ ପ୍ରକୃତ ଧାର୍ମିକପଦବାଚ୍ୟ ହେବେ ।

ଅନେକ ପ୍ରାଚୀନ କବିଙ୍କ ଗ୍ରନ୍ଥରୁ ଦେଖାଯାଏ ଯେ, ସେମାନେ କେବଳ ନିଜର ପାଣ୍ଡିତ୍ୟ ପ୍ରଦର୍ଶନ ପୂର୍ବକ ବିଷୟ ବର୍ଣ୍ଣନା କରିଅଛନ୍ତି, ମାତ୍ର ଚନ୍ଦ୍ରଶେଖର ତାଦୃଶ କବି ନୁହନ୍ତି । ସେ ତଦୀୟ ଗ୍ରନ୍ଥର ଆଦ୍ୟ, ମଧ୍ୟ ଓ ପ୍ରାନ୍ତ ସର୍ବତ୍ର ଭଗବତ୍ ପ୍ରାର୍ଥନା କରି ଅଛନ୍ତି ଏବଂ ଈଶ୍ୱର କୃପାରୁ ଓ ପୂର୍ବ ବାସନାରୁ ଯତ୍‌କିଞ୍ଚିତ ଜ୍ଞାନ ଲବ୍ଧ ହୋଇଥିବାର ଉଲ୍ଲେଖ କରିଅଛନ୍ତି । ସେ ସମ୍ବନ୍ଧରେ ସିଦ୍ଧାନ୍ତ ଦର୍ପଣରେ ଅନେକ ଶ୍ଳୋକ ଲେଖି ଅଛନ୍ତି । ତନ୍ମଧ୍ୟରୁ ନିମ୍ନଲିଖିତ ଶ୍ଳୋକଦ୍ୱୟ ପାଠ କଲେ କବିଙ୍କର ଗୃଢ଼ୁସ୍ତ୍ରି ଓ ମଦୁକ୍ତିର ଯାଥାର୍ଥ୍ୟ ସହଜରେ ଉପଲବ୍ଧ ହେବ ।

ଦୃଷ୍ଟ୍ୱା ଦୃଷ୍ଟି ବିରୁଦ୍ଧ ମନ୍ୟ ଗଣିତଂ ତ୍ରାଣାୟ ଧର୍ମସ୍ୟ ବା,
ଭ୍ରାନ୍ତଂ ତଥ୍ୟତୟା ଭୁବଃ ପ୍ରବଦତାଂ ବାଂଗ୍‌ଭଙ୍ଗି ଭଙ୍ଗାୟବା ।
ବିଦ୍ୱତ୍‌ସଂସଦି ମତ୍‌ପ୍ରଳାପଜ ପରିହାସ ପ୍ରକାଶାୟ ବା,
ଯୋ ନାହଂ ହୃଦି ଚିସ୍ଥିତା ମୁଖରିତଃ କସ୍ମୈ ଚିଦସ୍ମୈ ନମଃ ।୧।
ସ୍ୱର୍ବନ୍ତେ ବାସି ସମ୍ବାଦ ବ୍ୟାଜେନାଥ ବିବଚ୍ୟତେ ।
ତତ୍ତ୍ୱଂ ଖଗୋଳ ଗୋଳାନାଂ ବାସନାବଶତୋ ଯତଃ । ୨ ।

ପ୍ରଥମ ଶ୍ଳୋକର ଅର୍ଥ ଏହି;—ଅନ୍ୟମାନଙ୍କର ଗଣିତ ଦୃଷ୍ଟି-ବିରୁଦ୍ଧ ଥିବାର ଦେଖି ଧର୍ମର ରକ୍ଷା ନିମିତ୍ତ ହେଉ,ଅଥବା ଯେଉଁମାନେ ପୃଥିବୀର ଭ୍ରମଣକୁ ପ୍ରକୃତ ବୋଲି କହନ୍ତି ସେମାନଙ୍କ ବାକ୍‌ଗୃଢ଼ୁସ୍ତିର ଖଣ୍ଡନ ସକାଶ ହେଉ, କିମ୍ବା ପଣ୍ଡିତ ସମାଜରେ ମୋହର ପ୍ରଳାପ-ଜନିତ ପରିହାସର ପ୍ରକାଶ ନିମିତ୍ତ ହେଉ, ଯେ ମୋହର ହୃଦୟରେ ଅବସ୍ଥାନ ପୂର୍ବକ ଗ୍ରନ୍ଥ ରଚନା ବିଷୟରେ ମୋତେ ମୁଖରିତ କରି ଅଛନ୍ତି, ସେହି ଅନିର୍ବଚନୀୟ ବ୍ରହ୍ମଙ୍କୁ ନମସ୍କାର କରୁଅଛି ।

ଦ୍ୱିତୀୟ ଶ୍ଳୋକର ଅର୍ଥ—ଅନନ୍ତର ମୁଁ ଗୁରୁଶିଷ୍ୟ ସମ୍ବାଦଛଳରେ ଅକାଶ ମଣ୍ଡଳ, ଭୂମଣ୍ଡଳ ଓ ନକ୍ଷତ୍ର ମଣ୍ଡଳମାନଙ୍କର ତତ୍ତ୍ୱ ବିବେଚନା କରୁଅଛି, ଯେହେତୁ ମୁଁ ପୂର୍ବ ଜନ୍ମର ବାସନାରୁ ସେ ସମ୍ବନ୍ଧରେ କିଛି ଜ୍ଞାନଲାଭ କରିଅଛି ।

ବାସ୍ତବରେ ଭଗବତ୍ କୃପାରୁ ଜନ୍ମାନ୍ତରୀଣ ବାସନା ନ ଥିଲେ ସାମନ୍ତ ବିନା ଗୁରୁ, ବିନା ଯନ୍ତ୍ର ଓ ବିନା ପୁସ୍ତକପୋଷକତାରେ ଏତାଦୃଶ ମହାପଣ୍ଡିତ ଓ ଆବିଷ୍କାରକ ହୋଇପାରି ନ ଥାନ୍ତେ । କାଳିଦାସ ରଘୁବଂଶରେ କହିଅଛନ୍ତି "ପ୍ରପେଦିରେ ପ୍ରାକ୍ତନ ଜନ୍ମ ବିଦ୍ୟାଃ" ଏବଂ ଅନ୍ୟ କବି କହିଅଛନ୍ତି "ପୂର୍ବ ଜନ୍ମନି ଯା ବିଦ୍ୟା ପୂର୍ବ ଜନ୍ମନି ଯଦ୍ଧନଂ, ପୂର୍ବ ଜନ୍ମନି ଯା କନ୍ୟା ଅଗ୍ରେ ଧାବତି ଧାବତି ।"

(ଜନ୍ମାନ୍ତର ସଂସ୍କାର ଓ ଅଧ୍ୟବସାୟ ଉଭୟ ମିଳିତ ହୋଇ କିପରି ଅସାଧ୍ୟ ସାଧନାରେ ଦକ୍ଷତା ଲାଭ କରେ ତାହାର ଚରମ ଆଦର୍ଶ ଚନ୍ଦ୍ରଶେଖର ଜନ ସମାଜରେ ଉପସ୍ଥାପିତ କରି ଯାଇଅଛନ୍ତି । ସେ ଘୋର ଅର୍ଥାଭାବ ମଧ୍ୟରେ ପତିତ ହେଲେହେଁ ଧନଲିପ୍ସାର ବଶବର୍ତ୍ତୀ ନ ହୋଇ ଏବଂ ସାଂସାରିକ ପ୍ରତିଷ୍ଠା ପ୍ରତି ଭ୍ରୂକ୍ଷେପ ନ କରି କେବଳ ଜ୍ଞାନଲିପ୍ସାବଶତଃ କଠୋର ଅଧ୍ୟବସାୟର ପରାକାଷ୍ଠା ପ୍ରଦର୍ଶନ କରି ଅଛନ୍ତି । 'ଶରୀରଂ ପାତୟେତ୍ ବା କାର୍ଯ୍ୟଂ ସାଧୟେତ୍' ଏହି ମନ୍ତ୍ରରେ ଦୀକ୍ଷିତ ହୋଇ ସେ ଦିବାରାତ୍ର ପାନ, ଭୋଜନ ଓ ଶୟନରେ ଅନାସ୍ଥା ସ୍ଥାପନପୂର୍ବକ ଜ୍ୟୋତିଷଚର୍ଚ୍ଚାରୂପ ଗଭୀର ତପସ୍ୟାରେ ନିମଗ୍ନ ରହିବାରୁ ତାହାଙ୍କ ଶରୀର ନାନା କଠିନ ରୋଗର କ୍ରୀଡ଼ାକ୍ଷେତ୍ର ହୋଇଥିଲା । ଭାରତର ଭାସ୍କର-ପ୍ରତିମ ଭାସ୍କରାଚାର୍ଯ୍ୟଙ୍କର ଗଣନାରେ ତ୍ରୁଟି ଲକ୍ଷିତ ହେବାରୁ ତାହାର ଯାଥାର୍ଥ୍ୟ ଉପଲବ୍ଧି କରିବାକୁ ସାଧନ ଆରମ୍ଭ କରୁ କରୁ ବିଂଶବର୍ଷବ୍ୟାପୀ ଅହର୍ନିଶ ଅଧ୍ୟବସାୟ ବଳରେ ଅମୂଲ୍ୟ ସିଦ୍ଧାନ୍ତ ଦର୍ପଣ ଗ୍ରନ୍ଥ ପ୍ରଣୀତ ହୋଇଗଲା ।

ପାଣ୍ଡିତ୍ୟ ଏବଂ କବିତ୍ୱଲାଭ ନିମିତ୍ତ ଏ ଦେଶରେ ଅନେକ କବି ନାନା ଦେବଦେବୀଙ୍କର ଉପାସନା କରିଥିବାର ସ୍ପଷ୍ଟ ଲେଖିଯାଇ ଅଛନ୍ତି ।

ଶ୍ରୀହର୍ଷ କବି ସ୍ୱୀୟ ନୈଷଧରେ ଲେଖିଅଛନ୍ତି,—

ଶ୍ରୀହର୍ଷଂ କବିରାଜରାଜିମୁକୁଟାଲଙ୍କାର ହୀରଃ ସୁତଂ
ଶ୍ରୀହୀରଃ ସୁଷୁବେ ଜିତେନ୍ଦ୍ରିୟଚୟଂ ମାମଲ୍ଲଦେବୀ ଚ ଯମ୍ ।
ତଚ୍ଚିନ୍ତାମଣିମନ୍ତ୍ର ଚିନ୍ତନଫଲେ ଶୃଙ୍ଗାରଭଙ୍ଗ୍ୟା ମହା—
କାବ୍ୟେ ଚାରୁଣି ନୈଷଧୀୟ ଚରିତେ ସର୍ଗୋଽୟମାଦର୍ଗତଃ ।

ଅର୍ଥାତ୍ କବିଶ୍ରେଷ୍ଠମାନଙ୍କର ମୁକୁଟମଣି ସ୍ୱରୂପ ଶ୍ରୀହୀର ( ପିତା ) ଏବଂ ମାମଲ୍ଲଦେବୀ ( ମାତା ) ଜିତେନ୍ଦ୍ରିୟ ପୁତ୍ର ଶ୍ରୀହର୍ଷଙ୍କୁ ଜନ୍ମ କରିଥିଲେ । ସେହି ଶ୍ରୀହର୍ଷ ଚିନ୍ତାମଣିମନ୍ତ୍ର ଜପ କରିଥିବାରୁ ତାହାର ଫଳସ୍ୱରୂପ ଆଦିରସ ଭଙ୍ଗୀରେ ରଚିତ ସୁନ୍ଦର ମହାକାବ୍ୟ ନୈଷଧ ଚରିତରେ ପ୍ରଥମସର୍ଗ ସମାପ୍ତ ହେଲା । ପୁନଶ୍ଚ ଅନର୍ଘ ରାଘବରେ ମୁରାରି କବି ଲେଖି ଅଛନ୍ତି "ଦୈବୀଂ ବାଚ ମୁପାସତେ ହି କବୟଃ" ଅର୍ଥାତ୍ କବିମାନେ ଦେବତାଙ୍କର ସହାୟତାରେ କବିତା ରଚନା କରନ୍ତି । କିନ୍ତୁ ଚନ୍ଦ୍ରଶେଖର ଜୀବନରେ କଦାପି କାମ୍ୟ କର୍ମ କରି ନାହାନ୍ତି କିମ୍ବା ବିଦ୍ୟାଲାଭ ନିମନ୍ତେ କେବେହେଁ କୌଣସି ଦେବତାଙ୍କର ଉପାସନା କରି ନାହାନ୍ତି । ଭଗବଦ୍ ଭକ୍ତି ଓ ଭବବନ୍ଧନରୁ ମୁକ୍ତି ନିମନ୍ତେହିଁ ଈଶ୍ୱର ଚରଣାରବିନ୍ଦରେ ତାହାଙ୍କର ସମସ୍ତ ପ୍ରାର୍ଥନା । କେହି କହି ପାରନ୍ତି— ମୁକ୍ତି ପ୍ରାର୍ଥନା ତ ଗୋଟାଏ କାମନା, କିନ୍ତୁ ମୁକ୍ତିହିଁ ଜୀବର ଚରମ ଲକ୍ଷ୍ୟ ଥିବାରୁ ତାହା କାମନା ମଧ୍ୟରେ ପରିଗଣିତ ନୁହେ । ପାରମାର୍ଥିକ ମତରେ ଭଗବତ୍ ସେବକତ୍ୱହିଁ ଜୀବର ଶ୍ରେଷ୍ଠ କାମନା । କିନ୍ତୁ ଦାସତ୍ୱ ପ୍ରାର୍ଥନା ପ୍ରକାରାନ୍ତରରେ ମୁକ୍ତି ପ୍ରାର୍ଥନା ମାତ୍ର । ଲୋକେ କାରାଗାରକୁ ଭୟ କଲାପରି ଏହି ଜୀବ ଜନନୀଗର୍ଭରେ ଓ ଭୂମିଷ୍ଠ ହୋଇ ସଂସାରରେ

ବହୁକ୍ଲେଶ ଅନୁଭବ କରିବାରୁ ପୁନର୍ଜନ୍ମକୁ ଘୋର ଭୟଙ୍କର ସେଥିରୁ ମୁକ୍ତିଲାଭ ନିମନ୍ତେ ସର୍ବଦା ବ୍ୟାକୁଳ ଥାଏ । ଜଗତରେ ଲୋକ ନିଜର ଦୁଃଖକ୍ଲେଶର ନିରାକରଣ ବିଷୟରେ ଚେଷ୍ଟାକରିବା ସ୍ୱାଭାବିକ ଏବଂ ତାହାହିଁ ନିତ୍ୟ ପ୍ରତ୍ୟକ୍ଷ ଘଟନା ।

ନୀତିଶାସ୍ତ୍ରରେ ଉକ୍ତ ଅଛି :—

ଅୟଂ ନିଜଃ ପରୋ ବେତି ଗଣନା ଲଘୁଚେତସାମ୍ ।
ଉଦାର ଚରିତାନାଂତୁ ବସୁଧୈବ କୁଟୁମ୍ବକମ୍ ॥

ଚନ୍ଦ୍ରଶେଖର ସମସ୍ତଙ୍କୁ ନିଜର କୁଟୁମ୍ବପରି ମନେ କରୁଥିଲେ । ଯେ ତାହାଙ୍କ ନିକଟରେ ବସୁଥିଲେ ସାମନ୍ତ ତାହାଙ୍କୁ ଅତ୍ୟନ୍ତ ସ୍ନେହ କରୁଥିଲେ । ମାତ୍ର କେହି ପରନିନ୍ଦା କଲେ ତାହା ସାମନ୍ତଙ୍କର ଶ୍ରୁତିକଟୁ ହେଉଥିଲା ଏବଂ ସେ ନିନ୍ଦୁକ ଲୋକପ୍ରତି ବିରକ୍ତି ପ୍ରକାଶ କରୁଥିଲେ । କାହାର ପ୍ରସଂସା ବା ଉନ୍ନତି ଶ୍ରବଣ କଲେ ସାମନ୍ତ ଅତ୍ୟନ୍ତ ଆନନ୍ଦିତ ହେଉଥିଲେ ଏବଂ ପରଶ୍ରୀକାତରତାକୁ ସମ୍ପୂର୍ଣ୍ଣ ଘୃଣା କରୁଥିଲେ । ପରୋପକାର ତାହାଙ୍କର ନିତ୍ୟବ୍ରତ ହେଲେହେଁ ବାର୍ଦ୍ଧକ୍ୟରେ ଅନେକଙ୍କ ପ୍ରଶ୍ନର ଉତ୍ତର ଦାନରେ ଅସମର୍ଥ ହୋଇ ସେ ଦୁଃଖପ୍ରକାଶ କରିଥିଲେ । ସେହି ସମୟରେ ବିଦେଶରୁ ଓ ଦୂରବର୍ତ୍ତୀ ସ୍ଥାନରୁ ଫଳସାଧନ ନିମନ୍ତେ ବହୁ କୋଷ୍ଠୀ ଆଗତ ହେବାରୁ ସାମନ୍ତ ସେ ସବୁର ବିଚାରରେ ଅସମର୍ଥ ହୋଇ ନିମ୍ନଲିଖିତ ଶ୍ଳୋକଦ୍ୱୟ ରଚନାପୂର୍ବକ ଖବର କାଗଜରେ ପ୍ରକାଶ କରିଦେବାକୁ ସ୍ୱର୍ଗୀୟ ରାଜବଲ୍ଲଭ ମିଶ୍ରଙ୍କୁ ଅନୁରୋଧ କରିଥିଲେ । ଏହି ଶ୍ଳୋକଦ୍ୱୟ ସାମନ୍ତଙ୍କର ସର୍ବଶେଷ ରଚନା ଥିଲା ।

ଅସାଧ୍ୟ ରୋଗୈ ର୍ଜରୟାଥ ଶକ୍ତ୍ୟା
ଦୁରନ୍ତୟା ସନ୍ତତ ତାପିତାତ୍ମନଃ ।
ନୈବାସ୍ତିଶକ୍ତି ର୍ନିଜ ନିତ୍ୟ କର୍ମଣି
କ୍ୱବାସ୍ତୁ ତାଦୃକ୍ କଠିନେ ପରଶ୍ରମେ । ୧ ।

ସିଦ୍ଧାନ୍ତାଧ୍ୱଗ ଚନ୍ଦ୍ରଶେଖରକବା ବେତର୍ହି ବର୍ହିଃ ଯସ୍ୟା—
ନାନା ରୋଗିଣି ଦୁର୍ବଳେ ଚରପରଶ୍ରାନ୍ତ୍ୟା କଥଞ୍ଚିଜ୍ଜନୈଃ ।
କର୍ବୂ୍ୟଢ଼ଗ୍ରହଣାଦକେ ବୁଧଗଣାଃ ପ୍ରଶ୍ନଂ ନ କୁର୍ଯ୍ୟୁ ଫଳେ
ଯଃ ସ୍ୱେଷ୍ଟକର୍ମଣି ନକ୍ଷମଃ ସତୁକଥଂ କୁର୍ଯାଦ୍ଦୁରୁହ ଶ୍ରମମ୍ ॥

ଅର୍ଥ:—ଅସାଧ ରୋଗ, ବାର୍ଦ୍ଧକ୍ୟ ଏବଂ ଦୁଶ୍ଚିନ୍ତାଦ୍ୱାରା ସନ୍ତତ ମୋହର ଅସ୍ମା ତାପିତ ହେଉଥିବାରୁ ସ୍ୱୀୟ ନିତ୍ୟକର୍ମ କରିବାକୁ ମଧ୍ୟ ଶକ୍ତ ନାହିଁ । ଏପରି ସ୍ଥଳେ ମୁଁ ତାଦୃକ୍ କଠିନ ପରିଶ୍ରମ କିପରି କରିବ ? । ୧ ।

ସିଦ୍ଧାନ୍ତ ମାର୍ଗର ପଥିକ ଚନ୍ଦ୍ରଶେଖର କବି ଅତ୍ୟନ୍ତ କଠିନ ଗ୍ରହଣାଦି ବିଷୟରେ କ୍ରମେ କ୍ରମେ କଷ୍ଟେ ସୃଷ୍ଟେ ବହୁକାଳ ପରିଶ୍ରମ କରି ଦୁର୍ବଳ ହୋଇଥିଲେ । ବର୍ତ୍ତମାନ ସେ ଅଗ୍ନିମାନ୍ଦ୍ୟ ହେତୁରୁ ନାନାରୋଗରେ ପୀଡ଼ିତ ହୋଇଅଛି । ଏପରି ସମୟରେ ତାହାକୁ ପଣ୍ଡିତମାନଙ୍କର ଫଳ ସମ୍ବନ୍ଧୀୟ ପ୍ରଶ୍ନ କରିବା ଉଚିତ ନୁହେ । ଯେ ନିଜର ନିତ୍ୟକର୍ମ କରିବାରେ ଅସମର୍ଥ ସେ ପୁଣି କିପରି ଦୁରୁହ ପରିଶ୍ରମ କରିପାରିବ ? । ୨ ।

ମୂଳତଃ ଚନ୍ଦ୍ରଶେଖରଙ୍କର ଜୀବନଚରିତ ମାନବଶିକ୍ଷାର ଆଦର୍ଶ । ସାଭିନିବେଶ ପର୍ଯ୍ୟାଲୋଚନା କଲେ ସେଥିରୁ ସଦାଚାର, ସାଧୁବ୍ୟବହାର, ସତ୍‌ସଙ୍ଗର ଉପକାରିତା, ଚରିତ୍ରବତ୍ତା, ଭକ୍ତି, ଜ୍ଞାନ, ଧର୍ମନିଷ୍ଠା, ବଦାନ୍ୟତା, ଆତିଥ୍ୟ, ସତ୍ୟବାଦିତା, ସ୍ପଷ୍ଟବାଦିତା, ଦୟା, କ୍ଷମା, ପରୋପକାରିତା, କଷ୍ଟସହିଷ୍ଣୁତା, ଧୈର୍ଯ୍ୟ, ବିନୟ, ସୌଜନ୍ୟ, ସତ୍‌ସାହସ ଓ ଅଧ୍ୟବସାୟ ପ୍ରଭୃତି ସର୍ବବିଧ ଗୁଣର ଶିକ୍ଷାଲାଭ ହୋଇପାରିବ ।

ସର୍ବଶେଷରେ ମହାତ୍ମାଙ୍କର ସଜ୍ଜନମାନଙ୍କ ନିକଟରେ ବିନୟପୂର୍ଣ୍ଣ ଯେଉଁ ପ୍ରାର୍ଥନା ହୋଇଅଛି ସେହି ଶ୍ଳୋକଟି ଉଦ୍ଧୃତ କରି ଏହି ପ୍ରକରଣର ଉପସଂହାର କରୁଅଛୁ ।

ଶ୍ରୀମସ୍ୟାପି ପରାକ୍ରମ୍ୟୋ ଯୁଦ୍ଧେଭବେଦ୍ ବୁଦ୍ଧିଭ୍ରମ ସ୍ୟାନ୍ମୁନେଃ
କଦାଚିତ୍‌କ୍ଵଚିତ୍ୟାପ୍ୟତୋଽଲ୍ପବିଦୁଷାମସ୍ମା ଦୃଶାଂକାକଥା ।
ତସ୍ମାଦ୍ ଯଦ୍ ଯଦଶୁଦ୍ଧମତ୍ର ଗଣିତଂ ଯଦ୍‌ବାସହାର୍ଥଂ ପଦଂ,
ତତ୍ସର୍ବଂ ପରିଶୋଧୟନ୍ତୁ ସୁଧିୟଃ କୃତ୍ଵାନୁକମ୍ପାଂ ମୟି ।

ଅର୍ଥାତ୍ ଯୁଦ୍ଧରେ ଶ୍ରୀମଙ୍କର ମଧ୍ୟ ପରାକ୍ରମ୍ୟ ହୁଏ ଏବଂ ମୁନିଙ୍କର ବୁଦ୍ଧି କେତେ କେତେ ବେଳେ ମତିଭ୍ରମ ହୋଇଥାଏ । ଏଣୁ ମାଦୃଶ ଅଳ୍ପବିଦ୍ୟ ବ୍ୟକ୍ତିମାନଙ୍କର କଥା ଅବା କ'ଣ କହିବା ? ଅତଏବ ଏହି ସିଦ୍ଧାନ୍ତ ଦର୍ପଣରେ ଯାହା ଯାହା ଅଶୁଦ୍ଧ ଗଣିତ ହୋଇଅଛି କିମ୍ବା ଅସଙ୍ଗତ ପଦର ସନ୍ନିବେଶ ହୋଇଅଛି, ସୁଧୀବୃନ୍ଦ ମୋହଠାରେ ଅନୁକମ୍ପା କରି ସେ ସମସ୍ତର ସଂଶୋଧନ କରି ଦିଅନ୍ତୁ ।

ମହାତ୍ମା ଚନ୍ଦ୍ରଶେଖରଙ୍କ ଜୀବନର କାର୍ଯ୍ୟାବଳୀ ଅତି ସଂକ୍ଷିପ୍ତଭାବରେ ଆଲୋଚିତ ହେଲା । ତାହାଙ୍କର ଦେହତ୍ୟାଗ ପରେ ତଦୀୟ ଜ୍ୟେଷ୍ଠ ଓ ମଧ୍ୟମ ପୁତ୍ରଦ୍ଵୟ ଓଡ଼ିଆ ଓ ସଂସ୍କୃତଭାଷାରେ ଶୋକବିଳାପ ଓ ଶୋକଶତକ ପ୍ରଭୃତି ଯେଉଁସବୁ ରଚନା କରିଅଛନ୍ତି ସେ ସମସ୍ତ ଏବଂ ଅନ୍ୟାନ୍ୟ ବିଷୟମାନ ସ୍ଵତନ୍ତ୍ର ଭାବରେ ପରିଶିଷ୍ଟ ଅଧ୍ୟାୟରେ ପ୍ରକାଶିତ ହୋଇଅଛି ।

ଇତି ଶମ୍



# ଦ୍ୱିତୀୟ ଭାଗ

## କାର୍ଯ୍ୟ

ମହାତ୍ମା ଚନ୍ଦ୍ରଶେଖର ସିଂହ ସାମନ୍ତଙ୍କ ଜୀବନର ପ୍ରଧାନ କାର୍ଯ୍ୟ ଅମୂଲ୍ୟ "ସିଦ୍ଧାନ୍ତ-ଦର୍ପଣ" ଗ୍ରନ୍ଥର ପ୍ରଣୟନ । ଏହି ଗ୍ରନ୍ଥର ରଚନା ନିମିତ୍ତ ମହାତ୍ମାଙ୍କୁ ୨୦ ବର୍ଷ କାଳ କଠୋର ଅଧ୍ୟବସାୟ କରିବାକୁ ହୋଇଥିଲା । ୧୮୫୦ ସାଲଠାରୁ ଗ୍ରନ୍ଥରଚନା ଆରମ୍ଭ ହୋଇଥିଲା ଏବଂ ୧୮୭୦ ସାଲରେ ଶେଷ ହୋଇଥିଲା । ୧୮୯୪ରେ ପୁସ୍ତକର ମୁଦ୍ରଣ ଆରମ୍ଭ ହୋଇ ୧୮୯୯ରେ ଶେଷ ହୋଇଥିଲା । ପୁସ୍ତକର ମୁଦ୍ରଣ କାର୍ଯ୍ୟରେ ଟ ୧୨୫୦ ବ୍ୟୟିତ ହୋଇଥିଲା । ଏହି ପୁସ୍ତକ ଓଡ଼ିଶା କରଦରାଜ୍ୟସମୂହର ଭୂତପୂର୍ବ ଆସିଷ୍ଟାଣ୍ଟ ସୁପରିଣ୍ଟେଣ୍ଡେଣ୍ଟ ବାବୁ ସୁଦାମଚନ୍ଦ୍ର ନାୟକଙ୍କ ଯତ୍ନରେ ଅଷ୍ଟମଲ୍ଲିକାଧୀଶ୍ୱର ମହେନ୍ଦ୍ର ଦେଓ ଏବଂ ମୟୂରଭଞ୍ଜାଧୀଶ ରାମଚନ୍ଦ୍ର ଭଞ୍ଜଙ୍କର ଆନୁକୂଲ୍ୟରେ କଟକ ରେଭେନ୍‌ସା କଲେଜର ଭୂତପୂର୍ବ ବିଜ୍ଞାନାଧ୍ୟାପକ ରାୟବାହାଦୁର ଯୋଗେଶଚନ୍ଦ୍ର ରାୟ M. A ବିଦ୍ୟାନିଧିଙ୍କ ଦ୍ୱାରା କଲିକତା ଗିରୀଶ ବିଦ୍ୟାରତ୍ନ ପ୍ରେସରେ ମୁଦ୍ରିତ ହୋଇଅଛି । ସିଦ୍ଧାନ୍ତ-ଦର୍ପଣ ଗ୍ରନ୍ଥ ମଧ୍ୟମାଧିକାର, ସ୍ପଷ୍ଟାଧିକାର, ତ୍ରିପ୍ରଶ୍ନାଧିକାର, ଗୋଳାଧିକାର ଓ କାଳାଧିକାର ଏହି ଅଧିକାରପଞ୍ଚକରେ ବିଭକ୍ତ ଏବଂ ଚତୁର୍ବିଂଶତି ପ୍ରକାଶରେ ସମାପ୍ତ ।

ପ୍ରଥମ ପ୍ରକାଶରେ କାଳବର୍ଣ୍ଣନ ବିଷୟରେ ୫୫ ଶ୍ଳୋକ, ଦ୍ୱିତୀୟରେ ଭଗଣାଦିର ବର୍ଣ୍ଣନ ନିମିତ୍ତ ୨୫, ତୃତୀୟରେ ଗ୍ରହାନୟନ ବର୍ଣ୍ଣନ ଉଦ୍ଦେଶ୍ୟରେ ୭୭, ଚତୁର୍ଥରେ ନାନାବିଧ ସଂସ୍କାର ବର୍ଣ୍ଣନ ସକାଶ ୫୭,

ପଞ୍ଚମରେ ଗ୍ରହସ୍ପଷ୍ଟୀକରଣ ପ୍ରସଙ୍ଗରେ ୨୧୧, ଷଷ୍ଠରେ ସୂକ୍ଷ୍ମପଞ୍ଜିକା କ୍ରାନ୍ତ୍ୟାଦିବର୍ଣ୍ଣନ ସମ୍ପର୍କରେ ୧୬୧, ସପ୍ତମରେ ଶଙ୍କୁଚ୍ଛାୟାଦି ବର୍ଣ୍ଣନ ସମ୍ବନ୍ଧରେ ୯୫, ଅଷ୍ଟମରେ ଚନ୍ଦ୍ରଗ୍ରହଣ ବର୍ଣ୍ଣନ ନିମନ୍ତେ ୮୭, ନବମରେ ସୂର୍ଯ୍ୟଗ୍ରହଣ ବର୍ଣ୍ଣନପାଇଁ ୭୮, ଦଶମରେ ପରିଲେଖ ବର୍ଣ୍ଣନ ସମ୍ବନ୍ଧରେ ୩୭, ଏକାଦଶରେ ଗ୍ରହଯୁତି ବର୍ଣ୍ଣନ ସମ୍ପର୍କରେ ୧୧୧, ଦ୍ୱାଦଶରେ ଭଗ୍ରହ ଯୋଗବର୍ଣ୍ଣନ ବିଷୟରେ ୯୩, ତ୍ରୟୋଦଶରେ ଗ୍ରହର୍କ୍ଷୋଦୟାସ୍ତମୟ ବର୍ଣ୍ଣନ ଉଦ୍ଦେଶ୍ୟରେ ୮୫, ଚତୁର୍ଦ୍ଦଶରେ ଚନ୍ଦ୍ରଶୃଙ୍ଗୋନ୍ନତି ବର୍ଣ୍ଣନ ପ୍ରସଙ୍ଗରେ ୬୮, ପଞ୍ଚଦଶରେ ମହାପାତ ବର୍ଣ୍ଣନ ସକାଶ ୭୨, ଷୋଡ଼ଶରେ ପ୍ରଶ୍ନବର୍ଣ୍ଣନ ନିମନ୍ତେ ୮୦, ସପ୍ତଦଶରେ ଭୂଗୋଳସ୍ଥିତିବର୍ଣ୍ଣନ ନିମିତ୍ତ ୧୬୦, ଅଷ୍ଟାଦଶରେ ଭୂଗୋଳ ବିବରଣ ପ୍ରସଙ୍ଗରେ ୧୭୬, ଊନବିଂଶରେ ଭୂଗୋଳ, ଖ ଗୋଳ ବର୍ଣ୍ଣନ ସମ୍ପର୍କରେ ୧୨୪, ବିଂଶରେ ଗୋଳାଦି ଯନ୍ତ୍ର ବର୍ଣ୍ଣନ ସମ୍ବନ୍ଧରେ ୧୧୨, ଏକବିଂଶରେ ବାସନା ଶେଷ ରହସ୍ୟ ବର୍ଣ୍ଣନ ଉଦ୍ଦେଶ୍ୟରେ ୨୫୧, ଦ୍ୱାବିଂଶରେ ସମ୍ବତ୍ସରାଦି ବର୍ଣ୍ଣନ ବିଷୟରେ ୭୭, ତ୍ରୟୋବିଂଶରେ ପୁରୁଷୋତ୍ତମ ସ୍ତବ ବର୍ଣ୍ଣନ ପ୍ରସଙ୍ଗରେ ୫୬ ଏବଂ ଚତୁର୍ବିଂଶ ପ୍ରକାଶରେ ଉପସଂହାର ବର୍ଣ୍ଣନ ଉଦ୍ଦେଶ୍ୟରେ ୧୫୪ ଶ୍ଲୋକ ରଚିତ ହୋଇଅଛି । ଏହି ଗ୍ରନ୍ଥର ଶ୍ଲୋକ ସଂଖ୍ୟା ୨୫୦୦ । ସେଥିମଧ୍ୟରୁ ୨୨୮୪ଟି ସାମନ୍ତଙ୍କର ସ୍ୱରଚିତ ଏବଂ ୨୧୬ଟି ଶ୍ଲୋକ ଗ୍ରନ୍ଥାନ୍ତରରୁ ଉଦ୍ଧୃତ ହୋଇଅଛି । ସେ ସମ୍ବନ୍ଧରେ ସିଦ୍ଧାନ୍ତ-ଦର୍ପଣସ୍ଥ ୨୪ଶ ପ୍ରକାଶର ୧୫୬ ଶ୍ଲୋକ ଏହି—

ଶ୍ଲୋକାଃ ସ୍ୱକ୍ଲୃପ୍ତା ଇହ ବେଦନାଗ—
ପକ୍ଷାକ୍ଷି ସଂଖ୍ୟା ୨୨୮୪ ଅଥ ଭୂପପକ୍ଷାଃ ।

ଗ୍ରନ୍ଥାନ୍ତରେଭ୍ୟଃ ଖଖବାଣପକ୍ଷାଃ ୨୫୦୦
ସମ୍ଭୂୟ ଭବ୍ୟାୟ ଭବନ୍ତୁ ଦକ୍ଷାଃ ॥

ସିଦ୍ଧାନ୍ତ ଦର୍ପଣ ଗ୍ରନ୍ଥ ମଧ୍ୟରେ ସାମନ୍ତ ମହୋଦୟ ଦଶକୋଟି ଦିନ ନିମନ୍ତେ ରବିଙ୍କର ପଦକ ନିର୍ଣ୍ଣୟ କରି ଦେଇଅଛନ୍ତି । ଏହାଦ୍ୱାରା ଗ୍ରହ ସାଧନରେ ସମୟର ଲାଘବ ହୁଏ । ଏହି ପଦକାନୁସାରେ ଦଶକୋଟି ଦିନ ପର୍ଯ୍ୟନ୍ତ ପଞ୍ଜିକା ଗଣନା ଅଭ୍ରାନ୍ତ ହେବ । ସିଦ୍ଧାନ୍ତ ଦର୍ପଣରେ ଯେଉଁ ସବୁ ବିଷୟ ବର୍ଣ୍ଣିତ ହୋଇଅଛି ତହିଁର କିଞ୍ଚିତ୍ ସମାଲୋଚନା କରିବା ମଧ୍ୟ ଲେଖକର ସାଧ୍ୟାତୀତ ଅଟେ । କେବଳ ସପ୍ତଦଶ ପ୍ରକାଶରେ ପୃଥିବୀର ସ୍ଥିରତା ସମ୍ବନ୍ଧରେ ଯେଉଁ ଶୋକଗୁଡ଼ିକ ରଚିତ ହୋଇଅଛି ପାଠକଗଣର କୌତୂହଳ ଚରିତାର୍ଥ କରିବା ଉଦ୍ଦେଶ୍ୟରେ ସେଥିମଧ୍ୟରୁ କେତେକ ଶ୍ଳୋକର ଅନୁବାଦ ମାତ୍ର ଲେଖୁଅଛି । ଏହି ଅନୁବାଦ ପ୍ରକାଶ କରିବାରେ ମୁଁ ଯଥାସାଧ୍ୟ ପରିଶ୍ରମ କରିଥିଲେହେଁ ତାହା ଅଭ୍ରାନ୍ତ ଥିବାର କୁହାଯାଇ ନ ପାରେ । ସୁତରାଂ ପ୍ରାର୍ଥନା ଯେ, ପାଠକମାନେ ଯଦି କୌଣସି ସ୍ଥାନରେ ଭ୍ରମ ପ୍ରମାଦ ଅବଲୋକନ କରିବେ ତେବେ ଦୟା- ପୂର୍ବକ ମୋତେ ଜଣାଇ ଦେଲେ ପରବର୍ତ୍ତୀ ସଂସ୍କରଣରେ ତହିଁର ସଂଶୋଧନ ହୋଇ ପାରିବ ।

## ସପ୍ତଦଶ ପ୍ରକାଶ

### ଭୂଗୋଳ ସ୍ଥିତି ବର୍ଣ୍ଣନ

ଉତ୍ତମ ଛନ୍ଦର ପ୍ରଶ୍ନଛଳରେ ସତ୍ ଶାସ୍ତ୍ର ସମୂହରୁ କେତେକ ବିଶେଷତ୍ୱ ପ୍ରଦର୍ଶନ କରି ତହିଁର ସାରଭୂତ ଉତ୍ତର ସ୍ପଷ୍ଟ ଭାଷାରେ ଦେଉଅଛି । ହେ ବତ୍ସ, ଭୂମି ଥିରେ ଅବହିତ ହୁଅ । ୧ ।

ପ୍ରତ୍ୟକ୍ଷ, ଶବ୍ଦ, ଅନୁମାନ ଓ ପ୍ରମାଣଦ୍ୱାରା ବ୍ୟବସ୍ଥା ପ୍ରସ୍ତୁତ କରି ସେଥିରେ ଧରଣୀର ସ୍ଥିରତା, ସୂର୍ଯ୍ୟାଦିଙ୍କର ଗତିଶୀଳତା ଏବଂ ସମସ୍ତ ଗ୍ରହଙ୍କର ଗୋଲତ୍ୱ ଏଠାରେ ପ୍ରତିପାଦନ କରୁଅଛି । ୨

ପୃଥିବୀ ବୁଧ, ଶୁକ୍ର, ମଙ୍ଗଳ, ବୃହସ୍ପତି ଏବଂ ଶନି, ଏହି ଗ୍ରହମାନଙ୍କର ଭ୍ରମଣମାର୍ଗ ବା କକ୍ଷାଦ୍ୱାରା ଆବୃତ ହୋଇଥିବା ଅସ୍ଫୁଟ ସୂର୍ଯ୍ୟଙ୍କର କକ୍ଷାଦ୍ୱାରା ବେଷ୍ଟିତ ହୋଇ ଏବଂ ମଧ୍ୟରେ ସ୍ଫୁଟ ରବିଙ୍କର ଦୂରରେ ନକ୍ଷତ୍ରମାନଙ୍କର ଓ ନିକଟରେ ଚନ୍ଦ୍ରଙ୍କର ଭ୍ରମଣ ମାର୍ଗଦ୍ୱାରା ବେଷ୍ଟିତ ହୋଇ ସର୍ବଦା ଆଧାରଶୂନ୍ୟ ଭାବରେ ନିଜ ଶକ୍ତିବଳରେ ବ୍ରହ୍ମାଣ୍ଡ ମଧ୍ୟରେ ଆକାଶରେ ଅବସ୍ଥାନ କରୁଅଛି । ୩ ।

**୩ୟ ଶ୍ଲୋକର ଚିତ୍ର**



୪ର୍ଥ ଶ୍ଳୋକଠାରୁ ୩୮ ଶ ଶ୍ଳୋକ ପର୍ଯ୍ୟନ୍ତ ପୃଥିବୀର ଗୋଲତ୍ୱ ଓ ସୂର୍ଯ୍ୟଙ୍କର ଅଦ୍ୱିତୀୟତ୍ୱ ପ୍ରମାଣିତ ହୋଇଅଛି । ସେ ସବୁ ଏଠାରେ ଉଦ୍ଦିଷ୍ଟ ବିଷୟ ନ ଥିବାରୁ ପୋକ୍ତ ଶ୍ଳୋକମାନଙ୍କର ଅନୁବାଦ ଅବଶ୍ୟକ ହେଲାନାହିଁ ।

ନିମ୍ନଲିଖିତ ଶ୍ଳୋକମାନଙ୍କରେ ପୃଥିବୀର ସ୍ଥିରତା ପ୍ରମାଣିତ ହେବାପାଇଁ ପ୍ରଶ୍ନକର୍ତ୍ତା ଓ ଉତ୍ତରକର୍ତ୍ତା ରୂପରେ ଉକ୍ତ ପ୍ରତ୍ୟୁକ୍ତ ବୃନ୍ଦ ପ୍ରଦର୍ଶିତ ହୋଇଅଛି ।

ହେ ପୃଥିବୀର ଭ୍ରମଣବାଦ, ତୁମ୍ଭେ ଅତି ସୂକ୍ଷ୍ମବୁଦ୍ଧି ଅଟ ଏବଂ ନିଜ ଯୁକ୍ତିଦ୍ୱାରା ପଣ୍ଡିତମାନଙ୍କୁ ପରାଜିତ କରିଅଛ । ଯଦି ତୁମ୍ଭ ମତରେ ସୂର୍ଯ୍ୟଙ୍କର ସ୍ଥିରତା ଓ ପୃଥିବୀର ଗତିଶୀଳତା ପ୍ରମାଣିତ ହୋଇଅଛି ତେବେ ମୋହର ବାକ୍ୟ ଶ୍ରବଣ କର ଏବଂ ନିଜ ବାକ୍ୟ ଟିକିଏ ବନ୍ଦକର । ୩୯ ।

ଏହି ପୃଥିବୀ ସ୍ଥିର ଥିବାର ଏବଂ ସୂର୍ଯ୍ୟ ଗତି କରୁଥିବାର ସମସ୍ତେ ପ୍ରତ୍ୟକ୍ଷ କରୁଥିବା ସ୍ଥଳେ ତୁମ୍ଭର ବିପରୀତ ଭାବନାରେ ଫଳ କଅଣ ? ୪୦।

ପ୍ରଥମତଃ ଯେପରି ଚଳିତ ନୌକାରେ ବସିଥିବା ବ୍ୟକ୍ତି ନିଜକୁ ସ୍ଥିର ଏବଂ ତଟସ୍ଥ ବୃକ୍ଷାଦିଙ୍କୁ ଗତିଶୀଳ ମନକରେ, ସେହିପରି ଚଳିତ ପୃଥିବୀରେ ବାସ କରୁଥିବା ଲୋକମାନେ ଆପଣାକୁ ସ୍ଥିର ଏବଂ ସୂର୍ଯ୍ୟଙ୍କୁ ଭ୍ରମଣଶୀଳ ମନେ କରୁଅଛନ୍ତି । ଦ୍ୱିତୀୟତଃ ଯେପରି କନ୍ଦୁକ ଉତ୍କ୍ଷିପ୍ତ ହେଲେହେଁ ଗଗନରୁ ପତିତ ହୋଇ ହସ୍ତଗତ ହୁଏ, ସେହିପରି ପୃଥିବୀ ସ୍ୱୀୟ ଗୁରୁତାବଶତଃ କ୍ରମଶଃ ନିମ୍ନକୁ ଗତି କରୁଅଛି ଅର୍ଥାତ୍ ଯେ କୌଣସି ମତେ ପୃଥିବୀର ଗତି ଅଛି, ଏହା ଯେବେ କହୁଅଛ । ୪୧ । ତାହାର ଉତ୍ତର ଏହି :—

ସର୍ବ ସାଧାରଣ ମତରେ ଗ୍ରହମାନଙ୍କର ଦୁଇପ୍ରକାର ଗତି ମଧ୍ୟରୁ ପଶ୍ଚିମରୁ ପୂର୍ବକୁ ଯେଉଁ ଗତି ହୁଏ ତାହାକୁ ସ୍ୱାଭାବିକ ଗତି ଏବଂ ପୂର୍ବରୁ

ପଶ୍ଚିମକୁ ଯେଉଁ ଗତି ହୁଏ ତାହାକୁ ଦୈନନ୍ଦିନ ଗତି କହନ୍ତି । ଦୈନନ୍ଦିନ ଗତି ପ୍ରବହନାମକ ବାୟୁ ବଳରେ ଉତ୍ପନ୍ନ ହୁଏ । ଯଦି ପୃଥିବୀ ସ୍ୱାଭାବିକ ଗତି ବଳରେ ପଶ୍ଚିମରୁ ପୂର୍ବକୁ ଗତି କରୁଥାନ୍ତା ତେବେ ନିଷ୍ଟୟ ତନ୍ନିକଟସ୍ଥ ବାୟୁ ସର୍ବଦା ପୂର୍ବରୁ ପଶ୍ଚିମକୁ ଗମନ କରୁଥାନ୍ତା । କାରଣ ଜଣେ ଲୋକ ଖଣ୍ଡେ ପତାକା ଧରି ଯେଉଁ ଦିଗକୁ ଧାଏଁ, ପତାକାର ଅଗ୍ରଭାଗ ପବନ ବଳରେ ବିପରୀତ ଦିଗକୁ ହୋଇଥାଏ । ତେବେ କଣ ପୃଥିବୀରେ ସର୍ବଦା ପଶ୍ଚିମ ଦିଗକୁ ପବନ ବହୁଅଛି ? ୪୨ । *

ପ୍ରବହ ନାମକ ବାୟୁ ସର୍ବଦା ପୂର୍ବରୁ ପଶ୍ଚିମକୁ ବହେ ଏବଂ ଗ୍ରହ ଅର୍ଥାତ୍ ସୂର୍ଯ୍ୟଙ୍କୁ ସର୍ବଦା ପଶ୍ଚିମକୁ ଆକର୍ଷଣ କରେନାଏ । ସୁତରାଂ ସୂର୍ଯ୍ୟ ପ୍ରବହ ବେଗକୁ ଅତିକ୍ରମ କରି ପୂର୍ବକୁ କିପରି ଗତି କରିପାରେ ? ଏପରି ଯଦି କହ, ତେବେ ତୁମ୍ଭ ମତରେ ମଧ୍ୟ ପ୍ରବହବାୟୁ ପୃଥିବୀକୁ ପଶ୍ଚିମକୁ ଆକର୍ଷଣ କଲେ ଉଲ୍ଲିଖିତ ଯୁକ୍ତି ଅନୁସାରେ ପୃଥିବୀ ନିକଟସ୍ଥ ଭୂବାୟୁ ନିଷ୍ଟୟ ପୂର୍ବକୁ ଗତି କରିବ ଏବଂ ନିଜ ଉପରେ ଉଡ଼ୁଥିବା ପକ୍ଷୀ ପ୍ରଭୃତିଙ୍କୁ ପୂର୍ବକୁ ଉଡ଼ାଇନେବ । ମାତ୍ର ତାହା ଦେଖା ଯାଏ ନାହିଁ । କାରଣ ପକ୍ଷୀ ଓ ମେଘମାନେ ପଶ୍ଚିମ ଦିଗକୁ ମଧ୍ୟ ଉଡ଼ି ଯାଉଅଛନ୍ତି । ୪୩ । †

ପ୍ରାଚୀନ ପୌରାଣିକ ଓ ସିଦ୍ଧାନ୍ତମାନେ ପୃଥିବୀକୁ ସ୍ଥିର ବୋଲି କହିଅଛନ୍ତି । ଯଦି ତୁମ୍ଭେ ଆପ୍ତବାକ୍ୟକୁ ବିଶ୍ୱାସ ନ କର, ତେବେ ତୁମ୍ଭର ନିଜ ଧର୍ମକାର୍ଯ୍ୟରେ କିପରି ପ୍ରବୃତ୍ତି ହେଉଅଛି ? । ୪୪ ।

---

* ସାମନ୍ତଙ୍କ ମତରେ ସୂର୍ଯ୍ୟ ପ୍ରଭୃତି ସମସ୍ତ ଗ୍ରହର ଦୁଇ ପ୍ରକାର ଗତି ହୁଏ । ପ୍ରବହ ବାୟୁଦ୍ୱାରା ପଶ୍ଚିମକୁ ଏବଂ ସ୍ୱୀୟ ଦୈନିକ ଗତିଦ୍ୱାରା ପୂର୍ବକୁ ।

† ବାୟୁ ସାତପ୍ରକାର :—ଆବହ (ଭୂବାୟୁ), ପ୍ରବହ, ଉଦ୍‌ବହ, ସଂବହ, ସୁବହ, ପରିବହ ଏବଂ ପରାବହ । "ଭୂବାୟୁ ଦ୍ୱାଦଶ ଯୋଜନାଂତ୍" ଅର୍ଥାତ୍ ୯ କୋଶ ବା ମାଇଲ ଅନୁସାରେ ୧୦୦ ମାଇଲ ।

ଗଚ୍ଛତୀତି ଜଗତ୍ ଏହି ବ୍ୟୁତ୍ପତ୍ତି ବଳରେ ପ୍ରତିକ୍ଷଣ ଗମନ କରୁଥିବାରୁ ଜଗତ୍ ଶବ୍ଦ ଉତ୍ପନ୍ନ ହୋଇଅଛି ; ଏହା ଯଦି କହି ତେବେ ଜଗତ୍ତ୍ରୟ ଗୃହପ୍ରକାର ଲଯୁପ୍ରାପ୍ତ ହେଉଥିବାରୁ ସେପରି ଭାବରେ ଗମନାର୍ଥ ପ୍ରଯୁକ୍ତ ନ ହେବ କାହିଁକି ? ୪୫ ।

ଏହାର ଅନ୍ୟ ପ୍ରକାର ଅର୍ଥ ଅର୍ଥାତ୍ ଗମନ କରୁ ଥିବାରୁ ଯଦି ଜଗତ୍ ଶବ୍ଦର ଅର୍ଥ କରି ଯାଇଥାନ୍ତା ତେବେ ପୃଥିବୀ ସ୍ଥିର, ଅଚଳା ବୋଲି କିପରି କଥିତ ହୋଇଥାନ୍ତା ? ଅଥବା ଜଙ୍ଗମମାନଙ୍କର ବାସ ହେତୁରୁ ଧରିତ୍ରୀ ଜଗତ୍ ଏବଂ ସ୍ଥାବରମାନଙ୍କର ଅବସ୍ଥାନ ହେତୁରୁ ସ୍ଥିର ବୋଲି ପଣ୍ଡିତମାନେ କହି ଅଛନ୍ତି । ୪୬ ।

ଯଦି ଆପଣ ଲବମାତ୍ର ମାନବାଗୃହକୁ ସ୍ୱୀକାର ନ କରି କେବଳ ଅନୁମାନ ବଳରେ ଶବ୍ଦର ଅଙ୍ଗୀକାର ନ କରନ୍ତି ତେବେ ତହିଁର ସମାଧାନ ନିମନ୍ତେ ମୁଁ ଶୀଘ୍ର ପ୍ରମାଣର ଅବସ୍ଥାର କରି କହୁଅଛି । ୪୭ ।

ଯଦି ଭୂମି ମଧ୍ୟରେ ସୂର୍ଯ୍ୟଙ୍କଦ୍ୱାରା ଆକୃଷ୍ଟ ହୋଇ ବୁଧାଦି ଗ୍ରହମାନେ ବୁଲି ବୁଲି (ଗଡ଼ି ଗଡ଼ି) ସର୍ବଦା ଗତି କରୁଥିବା ପରି ପୃଥିବୀ ଅପକ୍ରମଯୁକ୍ତ ନିଜର କକ୍ଷାଦ୍ୱାରା ଅର୍ଥାତ୍ ଚକ୍ରାକାର ଗତିଦ୍ୱାରା ନିଜ ପଥରେ ଭ୍ରମଣ କରୁଅଛି; (ତେବେ ତାହାର ଉତ୍ତର ଶୁଣ) । ୪୮ ।

ଶକ୍ତି ଭିନ୍ନ କୌଣସି ପଦାର୍ଥର ଗତି ହୁଏ ନାହିଁ । ସେହି ଶକ୍ତି ଆକର୍ଷଣ ଓ ବିକ୍ଷେପ ବଳରେ ଦୁଇ ପ୍ରକାର । ଗୋଟିକର ନାମ କେନ୍ଦ୍ରାଭି- କର୍ଷିଣୀ ଓ ଅପରଟିର ନାମ କେନ୍ଦ୍ରାପସାରିଣୀ । ଯେଉଁ ଶକ୍ତିଦ୍ୱାରା ପଦାର୍ଥ ସବୁ କେନ୍ଦ୍ରକୁ ଆକୃଷ୍ଟ ହୁଏ ତାହା କେନ୍ଦ୍ରାଭିକର୍ଷିଣୀ ଏବଂ ଯେଉଁ ଶକ୍ତିଦ୍ୱାରା ପଦାର୍ଥମାନେ କେନ୍ଦ୍ରଠାରୁ ଅପସାରିତ ହୁଅନ୍ତି ତାହା କେନ୍ଦ୍ରାପସାରିଣୀ ଅଟେ । ୪୯ ।

ପରମାଣୁ ବାହୁଲ୍ୟଜାତ କେନ୍ଦ୍ରାଭିକର୍ଷିଣୀ ଶକ୍ତି ପୃଥିବୀର ଗୁରୁତ୍ୱ ହେତୁରୁ ତାହାଠାରେ ଦୃଷ୍ଟ ହୁଏ ଅର୍ଥାତ୍ ପୃଥିବୀର ସମସ୍ତ ପଦାର୍ଥକୁ ନିଜ ଅଙ୍ଗକୁ ଆକର୍ଷଣ କରେ । (କାରଣ ତାହାର ମାଧ୍ୟାକର୍ଷଣ ଶକ୍ତି ଅଛି ।) କୌଣସି ଗୋଲ ପଦାର୍ଥ ଆକାଶରୁ ପୃଥିବୀକୁ ପଡ଼ିଲାବେଳେ ମାର୍ଗରେ ତାହାର ପୁନଃ ପୁନଃ ଭ୍ରମଣ ଆମ୍ଭମାନଙ୍କୁ ତ କଦାପି ଦେଖା ଯାଏ ନାହିଁ । ୫୦ ।

କେନ୍ଦ୍ରାପସାରଣୀ ଶକ୍ତି ଅନୁସାରେ ଊର୍ଦ୍ଧ୍ୱକୁ ପ୍ରକ୍ଷିପ୍ତ ଗୋଲକର ମଧ୍ୟ ପୁନଃ ପୁନଃ ଭ୍ରମଣ ଉପଲବ୍ଧ ହୁଏ ନାହିଁ । କିନ୍ତୁ ସମତଳ ଭୂମିରେ ଗୋଲକଟି ପ୍ରକ୍ଷିପ୍ତ ହେଲେ ଗଡ଼ ଗଡ଼ ଯିବାର ଦେଖାଯାଏ । ୫୧ ।

ଗୋଟିଏ ଗୋଲକକୁ ରଜ୍ଜୁରେ ବାନ୍ଧି ଯଦି ହସ୍ତଦ୍ୱାରା ବାରମ୍ବାର ବୁଲାଯାଏ ତେବେ ଉକ୍ତ ଦୁଇ ଶକ୍ତିର ଆକର୍ଷଣ ହେତୁରୁ ଉକ୍ତ ଗୋଲକ ହସ୍ତରେ ଲାଗିବ ନାହିଁ କିମ୍ବା ପଳାଇ ପାରିବ ନାହିଁ, ମାତ୍ର ବୁଲୁଥିବ ।୫୨।

ଉକ୍ତ ରଜ୍ଜୁବଦ୍ଧ ଗୋଲକ ଅନୁସାରେ ତୁମ୍ଭ ମତରେ ଯଦି ପୃଥିବୀ ସୂର୍ଯ୍ୟଙ୍କର ଉଭୟ ଆକର୍ଷଣ ବଳରେ ଭ୍ରମଣ କରୁଥାଏ ତେବେ ସୂର୍ଯ୍ୟଙ୍କର ଅଭିମୁଖ୍ୟ ଭିନ୍ନ ପୃଥିବୀର ଅନ୍ୟ ଗତି ହୋଇ ନ ପାରେ ଅର୍ଥାତ୍ ଭ୍ରମଣ ସମୟରେ ପୃଥିବୀର ଗୋଟିଏ ପାଖ ସର୍ବଦା ସୂର୍ଯ୍ୟଙ୍କ ଅଙ୍ଗକୁ ନିଷ୍ଠିୟ ରହିବ । ୫୩ ।

ସୂର୍ଯ୍ୟଙ୍କର ସମ୍ମୁଖସ୍ଥ ନିରକ୍ଷଦେଶରେ (ବିଷୁବ ଦେଶରେ) ପୃଥିବୀର ସେହିପରି ଗତି ହେଉ ; ଏହା ଯଦି ତୁମ୍ଭେ କହ ତେବେ ଯେଉଁଠାରେ ଦିନ ହେବ ସେଠାରେ ରାତ୍ରି ହେବ ନାହିଁ ଏବଂ ଯେଉଁ ପ୍ରଦେଶରେ ରାତ୍ରି ହେବ ସେଠାରେ କଦାପି ଦିନ ହେବ ନାହିଁ । ୫୪ ।

କିମ୍ବା ସମତଳ ଭୂମିରେ ଗୋଲକକୁ ଗଡ଼ାଇ ଦେଲେ ତାହା ଯେପରି ଗଡ଼ ଗଡ଼ ଯାଏ ସେହିପରି ପୃଥିବୀର ଗତି ହେଉଅଛି, ଏହା

ଯଦି ତୁମ୍ଭେ କହ ତେବେ ପୃଥିବୀ ଆକାଶରେ ଚକ୍ରଭ୍ରମଣଗତି ପ୍ରାପ୍ତ ହେବ ଅର୍ଥାତ୍ ଗଡ଼ି ଗଡ଼ି ବରାବର ଆକାଶକୁ ସିଧା ଭାବରେ ଯିବ ।୫୫।

ତେବେ ଏହି ପୃଥିବୀ ସ୍ୱୀୟ ପରିଧିର ପରିମାଣ ଅନୁସାରେ ପ୍ରତ୍ୟହ ଅଗ୍ରସର ହେଉ । ସୁତରାଂ ତୁମ୍ଭ ମତରେ ପୃଥିବୀର ପ୍ରତ୍ୟହ ୧୨୦୦୦ କୋଶ ଭ୍ରମଣ ହେବ । କାରଣ ପୃଥିବୀର ପରିଧି ତୁମ୍ଭ ମତରେ ୧୨୦୦୦ କୋଶ ଅଟେ । ୫୬ ।

ମାତ୍ର ପୃଥିବୀର୍ ପ୍ରତ୍ୟହ ୮୦୦୦୦୦ ଆଠଲକ୍ଷ କୋଶ ଗତି ହୁଏ ବୋଲି ଯାହା କଳ୍ପନା କରିଅଛ ତାହା ଏଠାରେ କିପରି ସଙ୍ଗତ ହେବ ? ଅଥବା ତାହା ହେଉ । ଯଦି ପୃଥିବୀ ସମାନ ଭାବରେ ପୂର୍ବଦିଗକୁ ଭ୍ରମଣ କରି କରି ଗତି କରୁଥାଏ ତେବେ ତାହାର କାନ୍ତିପଥରେ ଗତି କିପରି ହେବ ? ୫୭ ।

ଈଶାନଦିଗକୁ ମୁଖ କରି ଯାଉଥିବା ଲୋକର ପୂର୍ବଦିଗକୁ ମୁଖ କିପରି ହେବ କହ ? ୫୮ ।

ଅଥବା କଙ୍କଡ଼ାର ଗତିପରି ଯଦି ତୁମ୍ଭେ ପୃଥିବୀର ପାର୍ଶ୍ୱଗତି ମନେ କରୁଥାଅ ତେବେ ସେହି ଯୁକ୍ତି ସଙ୍ଗତ ନୁହେଁ, କାରଣ ଈଶ୍ୱର କଙ୍କଡ଼ାକୁ କେବଳ ସେହିପରି ସୃଷ୍ଟି କରିଅଛନ୍ତି । ୫୯ ।

ଯେପରି କଙ୍କଡ଼ାର ପାର୍ଶ୍ୱଗତି ସ୍ୱାଭାବିକ ସେହିପରି ପୃଥିବୀର ମଧ୍ୟ ସୂର୍ଯ୍ୟାକର୍ଷଣ ଜନିତ ଗତି ( ପାର୍ଶ୍ୱଗତି ) ସ୍ୱାଭାବିକ ହେଉ । କାରଣ ତାହା ନ ହେଲେ କାନ୍ତି ସାମ୍ମୁଖ୍ୟଭିନ୍ନ ଅନ୍ୟଗତିର ସମ୍ଭାବନା ନାହିଁ ।୬୦।

ବିଷୁବ ମଣ୍ଡଳ ଉପରେ ଚନ୍ଦ୍ର ରହିବା ସମୟରେ ତନ୍ନିତ୍ୟ କଳଙ୍କର ମୁଖ ଦକ୍ଷିଣାୟନ ବେଳେ ଅଗ୍ନେୟ ଦିଗକୁ କିନ୍ତୁ ଉତ୍ତରାୟଣ ବେଳେ ଐଶାନ୍ୟ ଦିଗକୁ ଦୃଷ୍ଟ ହେଉଅଛି । ମାତ୍ର ପୃଥିବୀର ପାର୍ଶ୍ୱଗତି କଳ୍ପନା କଲେ ଚନ୍ଦ୍ରର କଳଙ୍କ ସର୍ବଦା ଏକଦିଗକୁ ରହୁଥାନ୍ତା । ୬୧ ।

ଭ୍ରମଣ କରୁଥିବା ଚନ୍ଦ୍ରର ଭ୍ରମଣମାର୍ଗସ୍ଥିତା ପୃଥିବୀ ଯଦି ଚନ୍ଦ୍ରପରି ଭ୍ରମଣ କରୁଥାନ୍ତା ତେବେ ଉକ୍ତ ଚିହ୍ନକୁ ସର୍ବଦା ଏକଦିଗକୁ ଦେଖାଯାଉଥାନ୍ତା । କାରଣ ଦୁଇଗୋଟି ଗୋଲକ ଏକଦିଗକୁ ବୁଲାଇଲେ ଉଭୟର ଚିହ୍ନ ସମାନ ସ୍ଥାନରେ ଦେଖାଯାଏ । ମାତ୍ର ପୃଥିବୀ ସ୍ଥିର ଥିବାରୁ ଓ ଚନ୍ଦ୍ର ବୁଲୁଥିବାରୁ ଚନ୍ଦ୍ରର କଳଙ୍କ ବିଭିନ୍ନ ସ୍ଥାନରେ ଦେଖାଯାଏ ।୭୨।

ଉତ୍ତରାୟଣ ବା ଦକ୍ଷିଣାୟନର ବିପରୀତ ଦିଗକୁ ଥିବା ଚନ୍ଦ୍ରଶରର ବୃଦ୍ଧି ହେଲେ ମଧ୍ୟ ଯଦି ଚନ୍ଦ୍ରକାନ୍ତିର ସମ୍ମୁଖତା ପରିତ୍ୟାଗ କରୁନାହିଁ ତେବେ ଶରଶୂନ୍ୟା ପୃଥିବୀ କିପରି ସେହି କାନ୍ତିର ଅଭିମୁଖତାକୁ ପରିତ୍ୟାଗ କରିବ ? ୭୩ ।

ଚତୁର ଲୋକମାନଙ୍କଦ୍ୱାରା ଉତ୍କ୍ଷିପ୍ତ ଗୋଲକ ଆକାଶରେ ଭ୍ରମଣ କରି କରି ଯାଉ, ରଥସ୍ଥ ଚକ୍ର ପୃଥିବୀରେ ଗମନ କରୁ, ଅଥବା ହସ୍ତସ୍ଥିତ ଚକ୍ର ଆକାଶରେ ଭ୍ରମଣ କରୁ କିମ୍ବା କ୍ରୀଡ଼ାବଶତଃ ଖଡ଼ୀ ଗୋଠାଳୀ ଭୂମିରେ ଗଡ଼ୁ; ନିଜ ନିଜ ମାର୍ଗରେ ଅଭିମୁଖ ଭିନ୍ନ ଦେହର ଭ୍ରମଣ ହେବ ନାହିଁ । ୭୪ ।

ଯଦି ପୃଥିବୀ ସ୍ୱୀୟ କାନ୍ତି ପଥରେ ବୁଲି ବୁଲି ଭ୍ରମଣ କରୁଥାଏ ତେବେ ନିଜ ଉପରେ ବାସ କରୁଥିବା ଲୋକମାନଙ୍କ ସହ ପୃଥିବୀ ଚନ୍ଦ୍ରଙ୍କ ତୁଲ୍ୟ ତେରଛାଭାବରେ ରହିବ ଏବଂ ନିଜର ପୂର୍ବାଦି ଦିଗମାନଙ୍କରେ ଥିବା ବୃକ୍ଷ ପର୍ବତ ସମୁଦ୍ର କୋଣକୁ ଅର୍ଥାତ୍ ତେରଛାଭାବରେ ଗମନ କଲେ ଚନ୍ଦ୍ରୋଦୟ ସମୟରେ ପ୍ରତ୍ୟକ୍ଷ ନକ୍ଷତ୍ରମାନଙ୍କର ଦିଗ ପରିବର୍ତ୍ତନ ହେବାର ଦେଖାଯିବ । ମାତ୍ର ଧ୍ରୁବାଦି ନକ୍ଷତ୍ରମାନଙ୍କର ସ୍ଥିରତା ସର୍ବବାଦିସମ୍ମତ ଅଟେ । ସେମାନେ କଦାପି ସ୍ଥାନାନ୍ତରିତ ହୁଅନ୍ତି ନାହିଁ । ୭୫ ।

ପୃଥିବୀ ନିଜର କକ୍ଷାରେ ଆବୃତ୍ତ ହେଲେ ସୂର୍ଯ୍ୟଙ୍କର ଅଭିମୁଖୀନ ହେଉ । ତାହାର କାନ୍ତି ବୃଦ୍ଧି ହେଲେ କାନ୍ତି ବୃତ୍ତର ଦୈର୍ଘ୍ୟଠାରୁ

ଗମନମାର୍ଗ ଦକ୍ଷିଣ ଓ ଉତ୍ତରଦଗରେ ରକ୍ଷପର ସରଳ ହେଉ, ଏହା ଯଦ କହ ତେବେ ସୂର୍ଯ୍ୟ ଅୟନ ସନ୍ଧରେ ଅର୍ଥାତ୍ ମାର୍ଗ ସନ୍ଧସ୍ଥଳରେ ପୃଥିବୀକୁ ଛୋଟ ଦଶିବେ ।

ସେହପର ସମଦବସରେ ପୃଥିବୀର ସମୀପବର୍ତ୍ତୀ ହେବାରୁ ସୂର୍ଯ୍ୟ ବଡ଼ ଦେଖାଯିବେ । ଏହପର ଚନ୍ଦ୍ରଙ୍କର କ୍ରାନ୍ତପଥ ଶରପର ସମ୍ପୂର୍ଣ୍ଣ ସରଳ ହେଲେ ପୃଥିବୀବାସୀ ଲୋକମାନେ ପ୍ରତ ଗ୍ରହଣରେ ଚନ୍ଦ୍ରକଳଙ୍କକୁ ସମ୍ମୁଖରେ କପର ବର୍ତ୍ତୁଳାକାର ଦେଖିପାରବେ ? ଅତଏବ ପୃଥିବୀର ଗତ ସମ୍ଭବପର ନୁହେ । ୬୭ ।

ତାହା ହେଉ, ତଥାପି କେନ୍ଦ୍ରପ୍ରତ ଆକର୍ଷଣ ଘଟନାଦ୍ୱାରା ସୂର୍ଯ୍ୟଙ୍କର ଚତୁର୍ଦ୍ଦିଗରେ ବିଧାତାଙ୍କ ଇଚ୍ଛାବଳରେ ପୃଥିବୀ ସୂର୍ଯ୍ୟ ଦିଗକୁ ଟାଣି ନ ହୋଇ ସ୍ୱୀୟ କ୍ରାନ୍ତ ପଥରେ (ତେଲ ଘଣାପର) ଭ୍ରମଣ କରୁଅଛ, ଏହା ଯଦି କହ, ତେବେ ସେହ ଈଶ୍ୱରଙ୍କ ଇଚ୍ଛାପ୍ରାମାଣ୍ୟ ଅନୁସାରେ ପୃଥିବୀକୁ ସ୍ଥିର ମନେକର । ସୂର୍ଯ୍ୟଙ୍କର ବୃହତ୍ ଆକର୍ଷଣ ଅଛ, ଏହା ଯଦି କହ; ତେବେ ସେପର ଆକର୍ଷଣ କ'ଣ ପୃଥିବୀର ନାହିଁ ? ୬୮ । ୬୯ ।

କ୍ଷୁଦ୍ରକାୟ ସ୍ଥିର ଚୁମ୍ବକଦ୍ୱାରା ବଡ଼ ଲୌହପିଣ୍ଡ ଆକୃଷ୍ଟ ହେଉଅଛ । ସୁତରାଂ ଆକର୍ଷଣ ବିଷୟରେ ସ୍ୱାଭାବିକ ଶକ୍ତି କାରଣ ଅଟେ, ପୃଥୁଳତା ବା ତେଜ ତହିଁର କାରଣ ନୁହେଁ । ସୂର୍ଯ୍ୟ ବଡ଼ ହେଲେହେଁ ଏବଂ ତେଜସ୍ୱାନ୍ ହେଲେ ମଧ୍ୟ ତାହାଙ୍କର ଆକର୍ଷଣ ଶକ୍ତି ପୃଥିବୀଠାରୁ ବେଶୀ ଏହା କହବାର କୌଣସି କାରଣ ନାହିଁ । । ୭୦ ।

କ୍ଷୁଦ୍ର ପଦାର୍ଥ ବୃହତ୍ ପଦାର୍ଥର ଆକର୍ଷଣ ବଳରେ ଭ୍ରମଣ କରୁଅଛ କନ୍ତୁ କ୍ଷୁଦ୍ର ପଦାର୍ଥ ବୃହତ୍ ପଦାର୍ଥର ଭ୍ରମଣୋତ୍ପାଦକ ହୁଏନାହିଁ, ଏହା ଯଦି ତୁମ୍ଭର ଉକ୍ତି ହୁଏ ତେବେ ସ୍ୱାତନ୍ତ୍ୟ ଥିଲେ ତାହା ସମ୍ଭବପର, ମାତ୍ର

ଯେଉଁ ବୁଦ୍ଧଙ୍କର ବଳ ପରାଧୀନ ତାହାଙ୍କ ପକ୍ଷରେ ସମ୍ଭବପର ନୁହେଁ । ଯେହେତୁ ଏ ବିଷୟରେ ସର୍ବକର୍ଷଣକାରିଣୀ ଭଗବାନଙ୍କର ଇଚ୍ଛା ବଳବତୀ ଅଟେ । ୭୧ ।

ଯେପରି ତଡ଼ାଗ ମଧ୍ୟରେ ନାବିକର ପରିଚାଳନାନୁସାରେ ବୃହତ୍ ନୌକା କ୍ଷୁଦ୍ର ଯଷ୍ଟି ଅର୍ଥାତ୍ ଦାଦର ଅନୁଗତା ହୁଏ ସେହିପରି ଏହି ଜଗତ୍ । ପରମେଶ୍ୱରଙ୍କର ଇଚ୍ଛାନୁସାରେ ତ୍ରିଭୁବନବାସୀ ଲୋକମାନଙ୍କର ରକ୍ଷାନିମନ୍ତେ ସୂର୍ଯ୍ୟ ବୃହତ୍ ହେଲେହେଁ ଗ୍ରହଗଣ ସହିତ ଭ୍ରମଣ କରୁଅଛନ୍ତି । ୭୨ ।

ସୂର୍ଯ୍ୟ ବା ଅନ୍ୟଗ୍ରହ ନିଜ ଦେହର ଚତୁର୍ଦ୍ଦିଗରେ ଭ୍ରମଣ କରନ୍ତୁ । ଭୂମିର ସ୍ଥିରତ୍ୱ ହେଲେ ସେହି ଭ୍ରମଣରେ କ୍ଷତି କଣ ହେଉଅଛି ? ହେ ମିତ୍ର । କହ । ଯାହାର ଯେଉଁ ସ୍ୱଭାବ ଅଛି ତାହା ଅନ୍ୟମାନଙ୍କ ଦର୍ଶନ ହେତୁରୁ କଣ ବିପରୀତ ହୁଏ ? ଆପଣ ଯନ୍ତ୍ର ସାହାଯ୍ୟ ବଳରେ ସମସ୍ତ ଗ୍ରହଙ୍କର ତ ଭ୍ରମଣ ଦେଖୁଅଛନ୍ତି । ସମୀପରେ କଣ ଚନ୍ଦ୍ରବିମ୍ବର ଭ୍ରମଣ ଦେଖୁନାହାନ୍ତି? ଦୂରବର୍ତ୍ତୀ ଗ୍ରହର ଦର୍ଶନରେ ବ୍ୟାଘାତ ଘଟିପାରେ, ମାତ୍ର ନିକଟବର୍ତ୍ତୀ ଚନ୍ଦ୍ରର ଭ୍ରମଣ ଦର୍ଶନରେ କୌଣସି ଅସୁବିଧା ନାହିଁ । ୭୩ ।

ହଁ, ଚନ୍ଦ୍ରର ଭ୍ରମଣ ଦେଖୁଅଛୁଁ; ମାତ୍ର ଚନ୍ଦ୍ରପରି ଉପଗ୍ରହମାନଙ୍କର ଭ୍ରମଣ ତୁଲ୍ୟ ବୃହତ୍ ଗ୍ରହ ସୂର୍ଯ୍ୟାଦିଙ୍କର ଭ୍ରମଣ ହେଉନାହିଁ,ଏହା ଯଦି କହ, ତେବେ ଏ ଜଗତରେ ଭୂମି ପ୍ରଭୃତିଙ୍କର ସୂର୍ଯ୍ୟଙ୍କ ସହିତ ଯେଉଁ ସମ୍ବନ୍ଧ ଅଛି ଚନ୍ଦ୍ରାଦିଙ୍କର ପୃଥିବୀ ସହିତ ସମାନ ଭାବରେ ସେହି ସମ୍ବନ୍ଧ ଅଛି । କିନ୍ତୁ ସେହି ଚନ୍ଦ୍ରାଦିଙ୍କର ସୂର୍ଯ୍ୟଙ୍କ ସହିତ ଆଲୋକ ଓ ତାପ ଗ୍ରହଣ ଭିନ୍ନ ଭ୍ରମଣ ବିଷୟକ କୌଣସି ସମ୍ବନ୍ଧ ନାହିଁ । ୭୪ ।

ଅହୁର ମଧ୍ୟ କ୍ଷୁଦ୍ରକାୟ ଓ ସୂର୍ଯ୍ୟଙ୍କର ନିକଟସ୍ଥ ଏହି ପୃଥିବୀର ଦୈନିକ ଗତି ୬୦ ଦଣ୍ଡରେ ଏବଂ ବାର୍ଷିକ ଗତି ୩୬୫ ଦିନରେ ହେଉ-ଥିବା ସ୍ଥଳେ ପୃଥିବୀଠାରୁ ବୃହତ୍ତର ଓ ସୂର୍ଯ୍ୟଠାରୁ ଦୂରତର ବୃହସ୍ପତି ଗ୍ରହଙ୍କର ୨୫ ଦଣ୍ଡରେ ଦୈନିକ ଗତି ଏବଂ ୧୨ ବର୍ଷରେ ଥରେ ସୂର୍ଯ୍ୟଙ୍କ ଚତୁଷ୍ପାର୍ଶ୍ୱରେ ବାର୍ଷିକ ଭ୍ରମଣ ହେଉଅଛି ? କ୍ଷୁଦ୍ର ଚକ୍ର ଅପେକ୍ଷା ବୃହତ୍ ଚକ୍ର ଅଳ୍ପ ସମୟରେ ବହୁଦୂର ଯିବା ସ୍ୱାଭାବିକ । ଏଠାରେ ଅନୁପାତ ଅନୁସାରେ ଗତିକ୍ରମ ଅସଙ୍ଗତ ହେଉଅଛି । ସୁତରାଂ ଏ ବିଷୟରେ ବିଧାତାଙ୍କ ପ୍ରଦତ୍ତ ସ୍ୱଭାବହିଁ ମୋହର ମତ ଅର୍ଥାତ୍ ଯାହାର ଯାହା ସ୍ୱଭାବ ଅଛି ତଦନୁସାରେ ସେ କାର୍ଯ୍ୟ କରୁଅଛି । ୭୫ ।

ବଡ଼ ବଡ଼ ପଦାର୍ଥର ସ୍ୱଦେହ ଭ୍ରମଣ କ୍ରମ ଶୀଘ୍ର ହୁଏ, କ୍ଷୁଦ୍ର ପଦାର୍ଥର ଶୀଘ୍ର ହୁଏ ନାହିଁ, ଏହା ଯଦି କହ ତେବେ ବୃହସ୍ପତି ସୂର୍ଯ୍ୟଠାରୁ କ୍ଷୁଦ୍ର ହୋଇ ୨୫ ଦଣ୍ଡରେ ସ୍ୱଦେହକୁ ଭ୍ରମଣ କରୁଥିବା ସ୍ଥଳେ ମହାନ୍ ସୂର୍ଯ୍ୟ ଧୀର ଗତିରେ ୨୫ ଦିନରେ କିପରି ସ୍ୱୀୟ ବିମ୍ବକୁ ଭ୍ରମଣ କରନ୍ତି । ଏହା ଆଶ୍ଚର୍ଯ୍ୟର ବିଷୟ । ୭୬ ।

( ସିଦ୍ଧାନ୍ତ ଶିରୋମଣିରେ ) ଯେପରି ସୂର୍ଯ୍ୟ ଓ ଅଗ୍ନିଙ୍କଠାରେ ଉଷ୍ଣତା, ଚନ୍ଦ୍ରଙ୍କଠାରେ ଶୈତ୍ୟ, ଜଳରେ ଦ୍ରବତ୍ୱ ଏବଂ ପ୍ରସ୍ତରରେ କଠିନତ୍ୱ ଅଛି ସେହିପରି ପବନ ଚଳନଶୀଳ ଓ ପୃଥିବୀ ସ୍ୱଭାବତଃ ଅଚଳା ଅଟେ ଯେହେତୁ ପଦାର୍ଥମାନଙ୍କର ଶକ୍ତିଗୁଡ଼ିକ ବିଚିତ୍ର ଅଟନ୍ତି । ୭୭ ।

ଯେପରି ଛୋଟ ମାଟିଖଣ୍ଡେ ଜଳରେ ବୁଡ଼ିଯାଏ, ମାତ୍ର କାଷ୍ଠନିର୍ମିତ ବୃହତ୍ ନୌକା ଭସେ ସେହିପରି ଏହି ପୃଥିବୀ ସ୍ଥିର ପବନରେ ସ୍ଥିର ଭାବରେ ରହିଅଛି ଏବଂ ପ୍ରକୃତରେ ହାଲ୍କା ସୂର୍ଯ୍ୟାଦି ଗ୍ରହମାନେ ଭ୍ରମଣଶୀଳ ଅଟନ୍ତି । ୭୮ ।

ଗ୍ରହମାନଙ୍କର ଭ୍ରମଣ ଅକାରଣ ହେଉ ବା ସକାରଣ ହେଉ ସୃଷ୍ଟିର ଆଦ୍ୟ ତହିଁର କାରଣ ବୋଲି ଆମ୍ଭେମାନେ କହୁଅଛୁଁ ଅର୍ଥାତ

ସୃଷ୍ଟି ସମୟରୁ ବିଧାତା ଗ୍ରହମାନଙ୍କୁ ବୁଲାଉ ଅଛନ୍ତି । ଏହା ଯଦି ତୁମ୍ଭର ମତ ହୁଏ । ୭୯ ।

ଭଲ କଥା, କିନ୍ତୁ ଯଦ୍ୟପି ଏହି ଗ୍ରହ ଭ୍ରମଣ ଅକାରଣ ବୋଲି ତୁମ୍ଭେ ମନେ କର ତଥାପି ରାଶି ଚକ୍ରର ଭୋଗ ହେତୁରୁ ସୂର୍ଯ୍ୟ ଓ ପୃଥିବୀର ଦୈନିକ ଗତି ସମାନ । ଏହା ଉଭୟ ମତରେ ସିଦ୍ଧ ହୋଇଅଛି । ଆମ୍ଭ ମତରେ ସୂର୍ଯ୍ୟଙ୍କର ଦୈନିକ ଗତି ୬୦ ଦଣ୍ଡରେ ଏବଂ ତୁମ୍ଭ ମତରେ ପୃଥିବୀର ମଧ୍ୟ ସେହି ୬୦ ଦଣ୍ଡରେ ଦୈନିକ ଗତି ହେଉଅଛି । ୮୦ ।

ଯଦି ସୂର୍ଯ୍ୟ ମଣ୍ଡଳ ସମସ୍ତ ଗ୍ରହ କକ୍ଷାର କେନ୍ଦ୍ର ହୁଏ ତେବେ ସେହି ସୂର୍ଯ୍ୟଙ୍କର ବୁଧ ଓ ଶୁକ୍ରଠାରେ ମନ୍ଦତାପାତ ଏବଂ ମଙ୍ଗଳ, ବୃହସ୍ପତି ଓ ଶନିଠାରେ ଶୀଘ୍ରତାପାତ ହେଉ, ଏହା ଯଦି ତୁମ୍ଭେ କହ, ତେବେ ସ୍ୱୀୟ ଦୃକ୍‌ସିଦ୍ଧ ଶୀଘ୍ର ମନ୍ଦଜାତ ପରିଧିମାନଙ୍କଦ୍ୱାରା ସ୍ଫୁଟୀକରଣ ସର୍ବସଂସ୍କାର-ଯୁକ୍ତ ହେଲେ ଏବଂ ସୂର୍ଯ୍ୟ କନ୍ୟା ଓ ମୀନ ରାଶିରେ ଅବସ୍ଥାନ କଲେ କେନ୍ଦ୍ର ଚକ୍ରର ନିକଟବର୍ତ୍ତୀ ମଙ୍ଗଳ ଓ ଶୁକ୍ର ଦୁହିଙ୍କର ସ୍ୱୀୟ ଅବସ୍ଥାନଠାରୁ କ୍ରମରେ ଅର୍ଥାତ ୨୫ କଳାରେ ମଙ୍ଗଳଙ୍କର ଏବଂ ୫୪ କଳାରେ ଶୁକ୍ରଙ୍କର ପ୍ରଭେଦ ଦେଖାଯିବ । ପୁନଶ୍ଚ ଏହି ମଙ୍ଗଳ ଓ ଶୁକ୍ର ଚକ୍ରାର୍ଦ୍ଧରେ ଅବସ୍ଥିତ ହେଲେ ୨୬୨ କଳାରେ ମଙ୍ଗଳଙ୍କର ଏବଂ ୩୬୫ କଳାରେ ଶୁକ୍ରଙ୍କର ପ୍ରଭେଦ ଦେଖାଯିବ । ଏହିପରି ଅନ୍ୟ ଗ୍ରହମାନଙ୍କର ମଧ୍ୟ ପରିଧି କ୍ରମରେ ପ୍ରଭେଦ ଦେଖାଯିବ । ୮୧—୮୫ ।

ଅତଏବ ତୁମ୍ଭେ ସୂର୍ଯ୍ୟଙ୍କୁ ସମସ୍ତ ଗ୍ରହର କେନ୍ଦ୍ର ବୋଲି ସ୍ୱୀକାର କଲେ ସୂର୍ଯ୍ୟ ବିମ୍ବର ମଧ୍ୟ ଶୀଘ୍ରତା କିପରି ସମ୍ଭବ ହୋଇପାରେ ? ୮୬ ।

କାକତାଳୀୟ ନ୍ୟାୟରେ କୌଣସିଠାରେ ଦୃକସିଦ୍ଧି ହେଲେହେଁ ଆମ୍ଭେମାନେ ପ୍ରମାଣକାରୀ ହୋଇଥିବାରୁ ଅକସ୍ମିକତାକୁ ସାଧୁ ମନେ କରୁନାହୁଁ, ଏହା ଯଦି କହ । ୮୭ ।

ଯେଉଁ ବୃତ୍ତ ଉତ୍ପନ୍ନ ହୁଏ ତୁମ୍ଭେ ସେହି ବୃତ୍ତକୁହିଁ ଏଠାରେ ଗ୍ରହମାନଙ୍କର ମାର୍ଗ ବୃତ୍ତାଭାସ ବୋଲି କହୁଅଛ । ପୁଣି ତୁମ୍ଭେ ପାତୋଇଗଢ ଦେଖୁଥିବାରୁ ଏହା ଠିକ୍ । ତାହାକୁହିଁ ଅମ୍ଭେ ଶରର ଅଦର୍ଶକ ଅଧିଦେବତା ବୋଲି ନିର୍ଦ୍ଦେଶ କଲୁ । ୯୪।୯୫ ।

ତୁମ୍ଭ ମତରେ ସମାନ ଗୁଣ ଥିବାରୁ ଏହି ପୃଥିବୀ ଅନ୍ୟାନ୍ୟ ଗ୍ରହମାନଙ୍କଠାରୁ ଭିନ୍ନ ନୁହେ । ସେପରି ହେଲେ ପୃଥିବୀଠାରୁ ବୃହତ୍ତର ବୃହସ୍ପତି ପ୍ରଭୃତି ଗ୍ରହମାନେ କାହିଁକି ବହୁଦୂର ପର୍ଯ୍ୟନ୍ତ ପାତଜନିତ ଶର ଲାଭ କରୁଅଛନ୍ତି ? ତେବେ ତୁମ୍ଭର କଥାନୁସାରେ ଶୁକ୍ରର ସମାକୃତି ପୃଥିବୀର କ'ଣ ଶର ଉତ୍ପାଦିତ ହେଉ ନାହିଁ ? ଶର ଗ୍ରହବିମ୍ବକୁ ଅପେକ୍ଷା କରେନାହିଁ । ଅର୍ଥାତ୍ ବିମ୍ବ ଅନୁସାରେ ଶର ଛୋଟ ବଡ଼ ହୁଏନାହିଁ; ତେଣୁ ପୃଥିବୀର ଶର ବୃହସ୍ପତି ଶରଠାରୁ କ୍ଷୁଦ୍ର, ଏହା ଯଦି କହ ତେବେ ପୃଥିବୀ କେବଳ ନିଚଳାଯୁକ୍ତ ହେଲେହେଁ ବିଷୁବ ଅର୍ଥାତ୍ ତୁଳା ଓ ମେଷ ସଂକ୍ରାନ୍ତିରେ ଏବଂ ଅୟନ ଅର୍ଥାତ୍ କର୍କଟ ଓ ମକର ସଂକ୍ରାନ୍ତିରେ କ୍ରାନ୍ତି ପ୍ରଭେଦ ବଶତଃ ଦୃକସିଦ୍ଧିର ଅଭାବରୁ ସୂର୍ଯ୍ୟଙ୍କର ଗ୍ରହ, ଗ୍ରାସ, କାଳ ଓ ଲଗ୍ନ ସିଦ୍ଧ ହେବ ନାହିଁ । ୯୬।୯୭।୯୮ ।

ସୁତରାଂ କେବଳ ଶରର ଅଭାବ ହେତୁରୁ ପୃଥିବୀର ସାକ୍ଷାତ୍ ସ୍ଥିରତା ନିଶ୍ଚିତ ହେଉଅଛି । ଯେହେତୁ ଦକ୍ଷିଣୋତ୍ତର ଗୋଲଦ୍ୱୟର ବାହୁ ଏକ ହୋଇଗଲେ ସାୟନ ସୂର୍ଯ୍ୟର କ୍ରାନ୍ତି ଭେଦ ମଧ୍ୟ ଅଳ୍ପ ହେବ ନାହିଁ ।୯୯ ।

ଯେପରି ତୁମ୍ଭ ମତରେ ସୂର୍ଯ୍ୟଙ୍କର ଶର ନାହିଁ ସେହିପରି ଅମ୍ଭ ମତରେ ପୃଥିବୀର ଶର ନାହିଁ । ଏହା ଯଦି କହ ତେବେ ଗ୍ରହମାନଙ୍କ କକ୍ଷାର ଉତ୍ତର ପାର୍ଶ୍ୱସ୍ଥ କେନ୍ଦ୍ରମାନଙ୍କର ଅବସ୍ଥାନର ମହତ୍ତ୍ୱ ହେତୁରୁ ଏବଂ ଅତି ଭାସ୍ୱରତ୍ୱ ହେତୁରୁ ବୁଧାଦି ଗ୍ରହମାନଙ୍କର ସମାନ ଧର୍ମଯୁକ୍ତ ସୂର୍ଯ୍ୟଙ୍କର ଅନ୍ୟ ଗ୍ରହମାନଙ୍କଠାରୁ ବସ୍ତୁ ପ୍ରଭେଦ ହେତୁରୁ ପ୍ରତ୍ୟକ୍ଷ ବଶତଃ

ଅମ୍ଭେ ଶରର ଅଭାବ ମାନଲୁଁ । ଯଦି ପୃଥିବୀର ସେହପରି ଶରର ଅଭାବ ହୁଏ ତେବେ ସେ ସ୍ୱଭାବତଃ ନଷ୍ଟଲା ହେଉ । ୧୦୦।୧୦୧

ଯଦି ମଙ୍ଗଳ ପ୍ରଭୃତି ଗ୍ରହମାନେ ପୃଥିବୀର ସମାନ ଧର୍ମାବଲମ୍ବୀ ହୋଇ ସମସ୍ତ ଋତୁଯୁକ୍ତ ହୁଅନ୍ତ ତେବେ ସ୍ୱୀୟ ଜଳୀୟବାଷ୍ପଜାତ ମେଘ-ସମୂହ ଏହ ଗ୍ରହମାନଙ୍କୁ ସୂର୍ଯ୍ୟଗ୍ରହଣ ସମୟରେ ଅମାବାସ୍ୟାର ଚନ୍ଦ୍ର ସୂର୍ଯ୍ୟଙ୍କୁ ଅଚ୍ଛାଦନ କଲାପରି ଅଚ୍ଛାଦନ କରୁ ନାହାନ୍ତ କାହିଁକ ? ୧୦୨ ।

ଏହ ବୃହତ୍ ପୃଥିବୀ ମୃତ୍ତିକାପୂର୍ଣ୍ଣ ଅଟେ ଏବଂ ପୃଥିବୀଠାରୁ କ୍ଷୁଦ୍ରତର ସେହ ମଙ୍ଗଳାଦି ଗ୍ରହମାନେ ଜଳମୟ ଥିବାରୁ ପୃଥିବୀର ବିରୁଦ୍ଧ ଧର୍ମାବଲମ୍ବୀ ଅଟନ୍ତି । ଅତଏବ ପୃଥିବୀ ସ୍ଥିର ଏବଂ ତାରାଗ୍ରହ ଅର୍ଥାତ ମଙ୍ଗଳ, ବୁଧ, ବୃହସ୍ପତି, ଶୁକ୍ର ଓ ଶନ ଏହ ପଞ୍ଚଗ୍ରହ ଗତିଶୀଳ ଅଟନ୍ତି । ୧୦୩ ।

ସୂର୍ଯ୍ୟ କରଣରେ ଉତ୍ତପ୍ତ ମୃତ୍ତିକାର ନିକଟବର୍ତ୍ତୀ ଜଳରୁ ବାଷ୍ପଚୟ ଉଦ୍ଭୂତ ହୋଇ ମେଘ ସୃଷ୍ଟି ହୁଏ, କେବଳ ଜଳମୟ ଗ୍ରହମାନଙ୍କରେ ମେଘୋତ୍ପତ୍ତି ହୁଏ ନାହିଁ । ଅତଏବ ମଙ୍ଗଳାଦ ଗ୍ରହମାନେ ପୃଥିବୀର ସମାନଧର୍ମୀ ନୁହନ୍ତି । ୧୦୪ ।

୧୦୫ ଶ୍ଳୋକଠାରୁ ୧୧୦ ଶ୍ଳୋକ ପର୍ଯ୍ୟନ୍ତ ଗଣିତ ସାହାଯ୍ୟରେ ସୂର୍ଯ୍ୟାଦିଙ୍କର ଭାରକେନ୍ଦ୍ର କଳ୍ପିତ ହୋଇଥିବାରୁ ତାହା ଅତ୍ୟନ୍ତ ଦୁର୍ବୋଧ ହୋଇଅଛି । ତେଣୁ ତାହା ଲେଖକଦ୍ୱାରା ଅନୁଦିତ ହୋଇପାରିଲା ନାହିଁ ।

ଭ୍ରମଣ କରୁଥିବା ପୃଥିବୀର ଉପରସ୍ଥ ଉଳତ ଗୃହ ଶିଖରର ଗୋଟିଏ ବୃହତ୍ ରେଖା ଭ୍ରମଣ ମଣ୍ଡଳରୁ ଜାତ ହୁଏ । ତେଣୁ ସେହ ଗୃହ ଉପରୁ ଖଣ୍ଡେ ପଥର ତଳକୁ ପକାଇଦେଲେ ତାହା ସିଧା ଭାବରେ ମୂଳରେ ନ ପଡ଼ି ତେରଛା ଭାବରେ କଛି ପୂର୍ବକୁ ପଡ଼େ । ପୃଥିବୀର ଭ୍ରମଣ ନ ଥିଲେ ଏଭଳ ପତନ ହୁଅନ୍ତା ନାହିଁ; ଏହା ଯଦି ତୁମ୍ଭେ କହ ତେବେ ତାହା ଅସଙ୍ଗତ ଅଟେ । ଯେହେତୁ ଅବହ ନାମକ ଭୂବାୟୁ ସର୍ବଦା

ଧୀରଭାବରେ ପଶ୍ଚିମ ଦିଗରୁ ପ୍ରବାହିତ ହୋଇଅଛି । ତାହାର ପ୍ରତିବନ୍ଧକ ପାଇ ପଥର ଖଣ୍ଡ ତେରଛା ଭାବରେ ପଡ଼େ । ପ୍ରକୃତରେ ପୃଥିବୀର ଭ୍ରମଣ ହେତୁ ସେପରି ପଡ଼େ ନାହିଁ । ୧୧୨।୧୧୩ ।

ସେହି ଅବହ ବାୟୁଦ୍ୱାରା ଗୃଳତ ହୋଇ ବଡ଼ ବଡ଼ ତୃଣବୃକ୍ଷ ସବୁ ପ୍ରାୟ ପୂର୍ବଦିଗକୁ ଟିକିଏ ନଇଁପଡ଼ିଥିବାର ଦେଖାଯାଏ । ପୁଣି ପୃଥିବୀର ଗୋଲତ୍ୱ ହେତୁରୁ ପୃଥିବୀର ମଧ୍ୟସ୍ଥ ରେଖାଠାରୁ ପୂର୍ବଦିଗର ଭୂଭାଗ ନଇଁପଡ଼ିଥିବାର ଦେଖାଯାଏ । ଅର୍ଥାତ୍ କିଛି ନିମ୍ନ ହୋଇ-ଥିବାର ଦେଖାଯାଏ । ୧୧୪ ।

ଏହି ହେତୁରୁ ପଥରଖଣ୍ଡ ପ୍ରଭୃତି କେବେ କେବେ କୌଣସି କୌଣସି ସ୍ଥାନରେ ପୂର୍ବ ଦିଗରେ ପଡ଼େ, କିନ୍ତୁ ପୃଥିବୀର ଭ୍ରମଣ ହେତୁରୁ ସେପରି ପଡ଼େ ନାହିଁ । ମାତ୍ର ଅବୃତ ହୋଇଥିବା ସମତଳ ସ୍ଥାନରେ ସେହି ପଥରଖଣ୍ଡ ପ୍ରଭୃତି ସରଳରେଖାରେ ତଳକୁ ପଡ଼େ । ୧୧୫ ।

ସୂର୍ଯ୍ୟଙ୍କଠାରୁ ଯେତେଦୂରରେ ଯେଉଁ ଯେଉଁ ଗ୍ରହର କେନ୍ଦ୍ର ଥାଏ ଏବଂ ସେହିପରି ଯେଉଁ ଯେଉଁ ଗ୍ରହ ଯେତେ ସମୟରେ ସୂର୍ଯ୍ୟବିମ୍ବକୁ ଥରେ ପୂର୍ଣ୍ଣ ପରିଭ୍ରମଣ କରେ ତାହାର ନାମ ପର୍ଯ୍ୟୟ । ୧୧୬ ।

ଭୂଗୋଳସ୍ଥିତି ବର୍ଣ୍ଣନା ପ୍ରସଙ୍ଗରେ ଏହି ପ୍ରକାଶରେ ୧୬୧ ଶ୍ଳୋକ ଲିଖିତ ହୋଇଅଛି । ୧୧୭ ଶ୍ଳୋକଠାରୁ ଗଣିତ ସାହାଯ୍ୟରେ ଘନଫଳ ପ୍ରଭୃତିଦ୍ୱାରା ବିବୃତ ହୋଇଥିବାରୁ ତାହା ନିତାନ୍ତ ଦୁର୍ବୋଧ୍ୟ ହୋଇଅଛି । ସୁତରାଂ ସେ ବିଷୟରେ ଲେଖକର ଅସାମର୍ଥ୍ୟବଶତଃ ଅବଶିଷ୍ଟ ଶ୍ଳୋକଗୁଡ଼ିକର ଅନୁବାଦ ଦିଆଯାଇ ପାରିଲା ନାହିଁ ।

ଇତି ଶମ୍ ।

---

# ଦର୍ପଣସାର

ଚନ୍ଦ୍ରଶେଖର ସିଂହ ସାମନ୍ତଙ୍କର ପ୍ରଧାନ କାର୍ଯ୍ୟ ସିଦ୍ଧାନ୍ତଦର୍ପଣ ଗ୍ରନ୍ଥ । ତତ୍ପ୍ରଣୀତ ଅନ୍ୟ କୌଣସି ବୃହତ୍ ଗ୍ରନ୍ଥ ନାହିଁ । କେବଳ ସେ ଦର୍ପଣସାର ନାମକ ଖଣ୍ଡିଏ କ୍ଷୁଦ୍ର ପୁସ୍ତକ ଉତ୍କଳଭାଷାରେ ଏବଂ ଦର୍ଣଦୀପିକା ନାମକ ୧୬ ଗୋଟି ଶ୍ଳୋକ ସଂସ୍କୃତଭାଷାରେ ପ୍ରଣୟନ କରିଅଛନ୍ତି । ଦର୍ପଣସାର ଖଣ୍ଡିକ ସ୍ୱୟଂ ସାମନ୍ତଙ୍କ କର୍ତ୍ତୃକ ପ୍ରକାଶିତ । ଏହା ୧୯୦୨ ସାଲରେ କଟକ ସ୍ୱୟଂପ୍ରେସରେ ମୁଦ୍ରିତ ହୋଇଅଛି । ଏହା ପରେ ମାତ୍ର ମୁଦ୍ରିତ ହୋଇଥିବାରୁ ବର୍ତ୍ତମାନ ଦୁର୍ଲ୍ଲଭ ହୋଇଅଛି । ଏହି ପୁସ୍ତକରେ ଯେଉଁସବୁ ବିଷୟ ଲିଖିତ ହୋଇଅଛି ସେଥିମଧ୍ୟରୁ କେତେକାଂଶ ଏଠାରେ ଉଦ୍ଧୃତ ହେଲା ।—

ମଦାବିଷ୍କୃତ ସିଦ୍ଧାନ୍ତଦର୍ପଣ ଗ୍ରନ୍ଥରେ କେବଳ ରବି, ଚନ୍ଦ୍ରଭଗଣ, ମଧ୍ୟଗତି ପଦକ ସୂର୍ଯ୍ୟସିଦ୍ଧାନ୍ତାନୁସାରେ ଲିଖିତ ଅଛି । ସେ ଦୁହିଙ୍କର ମଧ୍ୟପଦକାନ୍ତ ନ୍ୟସ୍ତ ମନ୍ଦୋଚ୍ଚ ଧ୍ରୁବହାର ଦେଶାନ୍ତର କଳାଦି ନୂତନ । ଅଉ ଏ ଦୁହିଙ୍କ ମନ୍ଦୋଚ୍ଚ ଚନ୍ଦ୍ରପାତ ଭୌମ୍ୟାଦିଭଗଣ ମନ୍ଦୋଚ୍ଚପାତ ଭଗଣଦିନ ଗତିପଦକ ଧ୍ରୁବବିକ୍ଷେପ କକ୍ଷାବିମ୍ବ ପ୍ରଭୃତି ସମସ୍ତ ବିଷୟ ପୂର୍ବ ସିଦ୍ଧାନ୍ତରୁ ଭିନ୍ନ; ଦୃକ୍‌ସିଦ୍ଧ ନୂତନ ଅବିଷ୍କୃତ ହୋଇଅଛି । ମନ୍ଦ ଶୀଘ୍ର ପରିଧି ଭିନ୍ନ ହେତୁରୁ ମାନ୍ଦ୍ୟ ଶୈର୍ଘ୍ୟ ଫଳ ନୂତନ । ଶରକଳା ପରିମାଣ ଓ ତତ୍‌ସାଧନ ପ୍ରକାର ନୂତନ; ମଙ୍ଗଳ, ବୁଧ, ଶନି, ପରୋଚ୍ଚ ହେତୁକ ବୀଜସଂସ୍କାର ନୂତନ; କଳାଦି, ସୂକ୍ଷ୍ମ୍ୟାଦି କୃତ୍ୟ ନୂତନ, ଗତ୍ୟାନୟନ, ଭଗଣଦିନସଂଖ୍ୟାନୟନ, ଦଶଧା ମଧ୍ୟ ଶୀଘ୍ର ଗତି, କଳାଦି, ଅଧିବତ୍ସର, କ୍ଷୟବତ୍ସର, ନୂତନ କଳିତାହର୍ଗଣସାଧନ, ନୂତନ ଚରକଳ୍ପନା, ଦୃକ୍‌ସିଦ୍ଧ ପୂର୍ବ ସମ୍ବାଦମିଳିତ କ୍ରାନ୍ତିପାତ, ଭଗଣପଦକ, ସିଦ୍ଧାୟନାଂଶସଂସ୍କୃତସୂର୍ଯ୍ୟରୁ ଅଗାମିଚରସିଦ୍ଧି, ସୂର୍ଯ୍ୟସିଦ୍ଧାନ୍ତରେ ନ ଥିବା ଉଦୟାନ୍ତର ସାଧନ, ଚନ୍ଦ-

ସୂର୍ଯ୍ୟଗ୍ରହଣ, ଶରଖଣ୍ଡାପରିଲେଖ, ବିଶେଷ ଗ୍ରହ ନକ୍ଷତ୍ର ଯୁଦ୍ଧ, ପଞ୍ଚବିଧ ବିମ୍ବ କଳ୍ପନା, ବିମ୍ବବେଧ ଛାୟାପଥ ସୂକ୍ଷ୍ମୋଦୟାସ୍ତ ଭଗସଂଖ୍ୟା ପ୍ରକାଶ, ଭଗପରିମାଣ, ଚନ୍ଦ୍ର ବୁଧ ଶୁକ୍ର ଶୃଙ୍ଗୋନ୍ନତି ପରିଲେଖ ସହିତ ଦୃକ୍‌ସିଦ୍ଧ ନବ୍ୟ ଚନ୍ଦ୍ରାଦି ବୃଦ୍ଧି କ୍ଷୟ ନିର୍ଣ୍ଣୟ, ମହାବ୍ୟତିପାତ ବୈଧୃତସମ୍ଭବ ଯୋଗାବିଷ୍କରଣ ସୃଷ୍ଟିକାଳ ନିର୍ଣ୍ଣୟ ବିଶେଷ, ଗୋଳ ବିଷୟେ ପ୍ରଶ୍ନୋତ୍ତର ସିଦ୍ଧ ଭୂମିସ୍ଥିରତ୍ୱ ସିଦ୍ଧି, ଗ୍ରହଗୋଳାଦି ସୃଷ୍ଟିକ୍ରମ, ପର୍ବତାଦି ଶଙ୍କୁପରିମାଣ, ଦୃଷ୍ଟିସୀମାଦି ନୂତନ କଳ୍ପନା, ସିଦ୍ଧାନ୍ତ ଭିନ୍ନ ପ୍ରତ୍ୟକ୍ଷଗ୍ରହାଦି, ବ୍ରହ୍ମାଣ୍ଡାନ୍ତ କକ୍ଷ, ଗ୍ରହଯୋଜନ ଗତି କ୍ରାନ୍ତିପାତ ଗତି, ତାପପରିମାଣସୂତ୍ର, ମେଘାଦି ଦୂରତା, ଶୀତୋଷ୍ଣ ସ୍ପର୍ଶ ସୀମା କରଣବ୍ୟାପ୍ତି, ଖ-କକ୍ଷ ନିର୍ଣ୍ଣୟ, ଭାସ୍କରମତଖଣ୍ଡନ, ନୂତନ ବହୁ କକ୍ଷ, ଯନ୍ତ୍ରାବିଷ୍କରଣ, କାଳଯନ୍ତ୍ର କଥନ, ସ୍ୱୟଂବହ ଯନ୍ତ୍ରୋପାୟ, ବିକଳ୍ପ ଭଗଣ ସଂଖ୍ୟା, ପ୍ରତି ମଣ୍ଡଳାଦି ନିର୍ଣ୍ଣୟ, ବକ୍ର ଗତ୍ୟାଦି ବାସନା, ପରଶ୍ରିତଦ୍ୱାରା ବିକ୍ଷେପ ସିଦ୍ଧି, ଲମ୍ବନାଦି ବାସନା, ଇଷ୍ଟ ନିର୍ଣ୍ଣୟ, ମେଘ ସମ୍ଭବ, ଘନମୂଳାବିଶେଷ, ସଂବତ୍ସରାଦି ବ୍ୟୁତ୍ପତ୍ତି, କାର୍ତ୍ତିକାଦି ସମାଧାନ, କୌତୁକ ପଞ୍ଜିକା, ଉପସଂହାର, ନାନାସ୍ଥାନ ଦେଶାନ୍ତର ଫଳାଂଶ କଥନ, ନିଜବଂଶ ପ୍ରକାଶନାନ୍ତ ବିଷୟ ବିବରଣ, ସମସ୍ତ ସ୍ୱ କପୋଳ-କଳ୍ପିତ ଅଟେ । ତନ୍ମଧ୍ୟରୁ ସୂକ୍ଷ୍ମ ପଞ୍ଜିକାର ପ୍ରଧାନ ଉପଯୋଗୀ ଚନ୍ଦ୍ର, ତାହାଙ୍କର ଦୃକ୍‌ସିଦ୍ଧ ସ୍ଥୂଳପଞ୍ଜିକାର୍ଥ କଳ୍ପିତ ୪୮ ଖଣ୍ଡ ମାନ୍ୟଫଳରେ ଶକାବ୍ଦ ୧୭୯୮ଠାରୁ ପାଞ୍ଜି ସିଦ୍ଧ ହେଉଥିଲା । ପୁନଶ୍ଚ ମଞ୍ଜୁଷା ରାଜାଙ୍କ ଉତ୍ତେଜନାରେ ଅସିଷ୍ଟାଣ୍ଟ ସୁପରିଣ୍ଟେଣ୍ଡେଣ୍ଟ ଶ୍ରୀ ବାବୁ ହରେକୃଷ୍ଣ ଦାସଙ୍କ ଆଦେଶରେ ଶ୍ରୀପୁରୁଷୋତ୍ତମ କ୍ଷେତ୍ର ମୁକ୍ତିମଣ୍ଡପସ୍ଥ ପଣ୍ଡିତ ବ୍ରାହ୍ମଣସଭ୍ୟମଣ୍ଡଳୀଦ୍ୱାରା ଶକାବ୍ଦ ୧୮୧୦ଠାରୁ ୧୩ ବର୍ଷ ହେଲା ରବି ସୂକ୍ଷ୍ମ ମାନ୍ୟଫଳ ସୂକ୍ଷ୍ମଚନ୍ଦ୍ର କଳ୍ପିତ ଭୁଜାନ୍ତର ପାକ୍ଷିକ ଦିଗଂଶଫଳ ସାଧିତ ସୂକ୍ଷ୍ମ ପଞ୍ଚାଙ୍ଗ ପଞ୍ଜିକା ଉତ୍କଳଦେଶରେ ପ୍ରଚଳିତ ହେଉଅଛି । ଏ ମଧ୍ୟ ଇଂରାଜ ପାଞ୍ଜି ସଙ୍ଗେ ମିଳିବାରୁ ଶିକ୍ଷାଗୃହରେ ଅବରୁଦ୍ଧ ହୋଇଅଛି ।

ଏ ନିମିତ୍ତ ଈଶ୍ୱରେଚ୍ଛା ପ୍ରେରିତ ସ୍ୱକଲ୍ପିତ ମାନଯନ୍ତ୍ରାଦିଦ୍ୱାରା କୃଷ୍ଣପକ୍ଷ ଶେଷପାଦ ଶୁକ୍ଳପକ୍ଷ ପ୍ରଥମପାଦରେ ରବି ଚନ୍ଦ୍ରାନ୍ତର ପ୍ରମାଣପୂର୍ବକ ଗ୍ରହ ନକ୍ଷତ୍ର ସମାଗମ ସାକ୍ଷାତ୍କାର, ଗ୍ରହଣ ଗ୍ରାସକଳାଦି ନିରୂପଣ କରିବାରେ ମୋହର ବୟସ ୧୪ବର୍ଷଠାରୁ ୩୪ବର୍ଷ ପର୍ଯ୍ୟନ୍ତ ୨୦ବର୍ଷ କାଳଯାପନରେ ଦିନରାତି କଠୋର ପରିଶ୍ରମ ଜନିତ ରୋଗବୃଦ୍ଧି ଦୌର୍ବଲ୍ୟଦ୍ୱାରା ଶରୀରର କ୍ଷତି ଘଟିଅଛି । ନିଜ କୃତ୍ୟ ନ ଚଳିବାରୁ ପଞ୍ଜିକା ବିକ୍ରୟ ଲବ୍ଧର ଅର୍ଦ୍ଧାଂଶ ପ୍ରାପ୍ତି ଯାହା କଳ୍ପିତ କଲି ତାହା ମଧ୍ୟ ସ୍ୱଚ୍ଛନ୍ଦକଳ୍ପିକ ସ୍ୱବିରୁଦ୍ଧ ପାଞ୍ଜି ବାହାରି ବର୍ଣ୍ଣିତ ହେଲା । ଅତଏବ ପ୍ରାର୍ଥନା ଏମନ୍ତ ଯେ, ମୋହର କିମ୍ବା ନିଜ ପୁତ୍ରଙ୍କର ଅନୁମତି ବିନା ସିଦ୍ଧାନ୍ତଦର୍ପଣ ମତ ସୂକ୍ଷ୍ମପାଞ୍ଜି ମୁଦ୍ରିତ କରାଇବା ଗଣକ ଉତ୍କଳାଧୀଶ୍ୱରଙ୍କଠାରୁ ଦଣ୍ଡ ପାଇ ନିବୃତ୍ତ ରହିବା କଥା ସିଦ୍ଧ ହୋଇ ରେଜିଷ୍ଟ୍ରୀ ଜାରିହେଲେ ଗୋଟିଏ ସୂକ୍ଷ୍ମପାଞ୍ଜିର ବ୍ୟବହାର-ଦ୍ୱାରା ମୁଁ କୃତକାର୍ଯ୍ୟ ହେବି ।

ପ୍ରକାଶ ଥାଉ କି ସ୍ଥୂଳପାଞ୍ଜିର ପ୍ରଧାନ ଶଙ୍କୁ ଦି ୫ । ୨୦ ପର୍ଯ୍ୟନ୍ତ ତିଥିବୃଦ୍ଧି ଦି ୬ । ୧୨ ପର୍ଯ୍ୟନ୍ତ ତିଥିକ୍ଷୟ ହୁଏ । ସୂକ୍ଷ୍ମ ପାଞ୍ଜିର ପ୍ରଧାନ ଶଙ୍କୁ ଦି ୬।୪୫ ପର୍ଯ୍ୟନ୍ତ ତିଥିବୃଦ୍ଧି ଦି ୯।୫୫ ପର୍ଯ୍ୟନ୍ତ ତିଥିକ୍ଷୟ । ଇତି ।

୧୦ । ୧୧ । ୧୯୦୨
ଖଣ୍ଡପଡ଼ା ଦୁର୍ଗ
} ସ୍ୱା । ଶ୍ରୀ ଚନ୍ଦ୍ରଶେଖର ସିଂହ ସାମନ୍ତ

ଦର୍ପଣ ସାର ପୁସ୍ତକ ଖଣ୍ଡି ୧୫ ପୃଷ୍ଠାରେ ସମ୍ପୂର୍ଣ୍ଣ ହୋଇଅଛି । ଉଲ୍ଲିଖିତଉଦ୍ଧୃତାଂଶ ଭିନ୍ନ ଅନ୍ୟ ପୃଷ୍ଠାଗୁଡ଼ିକ ସୂକ୍ଷ୍ମ ପଞ୍ଜିକା ସାଧନର ସାରଣୀରେ ପରିପୂର୍ଣ୍ଣ ହୋଇଅଛି । ସାରଣୀ ଅର୍ଥାତ୍ ଅଙ୍କ ତାଲିକା ଗୁଡ଼ିକ ଏଠାରେ ଅନାବଶ୍ୟକ ହେବାରୁ ପରିତ୍ୟକ୍ତ ହେଲା ।

# ତୃତୀୟ ଭାଗ

## ପରିଶିଷ୍ଟ

ଏହି ପୁସ୍ତକର ପ୍ରଥମଭାଗରେ ମହାତ୍ମା ଚନ୍ଦ୍ରଶେଖର ସିଂହଙ୍କର ଜୀବନ ଚରିତ ସଂକ୍ଷିପ୍ତ ଭାବରେ ଆଲୋଚିତ ହୋଇଅଛି ଏବଂ ଦ୍ଵିତୀୟ ଭାଗରେ ତତ୍‌ପ୍ରଣୀତ ଅନର୍ଘ ସିଦ୍ଧାନ୍ତ ଦର୍ପଣ ଗ୍ରନ୍ଥର ସ୍ଵଳ୍ପ ପରିଚୟ ପ୍ରଦତ୍ତ ହୋଇଅଛି । ସମ୍ପ୍ରତି ଏହି ତୃତୀୟ ଭାଗରେ ମହାପୁରୁଷଙ୍କ ସମ୍ବନ୍ଧରେ କେତେକ ସୁଧୀ ଗଦ୍ୟପଦ୍ୟାକାରରେ ଯେଉଁ ଅଭିମତ ବ୍ୟକ୍ତ କରିଅଛନ୍ତି ତାହାହିଁ ସନ୍ନିବେଷ୍ଟ ହେଉଅଛି ।

ପ୍ରଥମତଃ ଉତ୍କଳର ବରପୁତ୍ର କବିବର ରାୟ ବାହାଦୁର ସ୍ଵର୍ଗୀୟ ରାଧାନାଥ ରାୟ ମହୋଦୟ ସ୍ଵରଚିତ ଦରବାର କବିତାରେ ଚନ୍ଦ୍ରଶେଖର ସାମନ୍ତଙ୍କ ବିଷୟରେ ଯେଉଁ ମନ୍ତବ୍ୟ ପ୍ରକାଶ କରିଅଛନ୍ତି ତାହା ନିମ୍ନରେ ଉଦ୍ଧୃତ ହେଲା :—

| | |
|---|---|
| ମଣ୍ଡିଅଛ କପାଁ | ଅସି ସର୍ବାଧର |
| ଉତ୍କଳଶେଖର | ହେ ଚନ୍ଦ୍ରଶେଖର ? |
| ଛନ୍ଦୋପୂଜାଗାର— | ପାଯ୍ଯୀ କି ଆଶାରେ |
| ପଶିଲ କାସର— | ସେବିତ କାସାରେ ? |
| କହ ଫେଡ଼ି, ପଢ଼ | କେଉଁ ଭ୍ରମଜାଲେ |
| ସତ୍ୟଲୋକୁଁ ଖସି | ଆସିଲ ପାତାଳେ ? |

ଲୋଡୁଅଛ କି ହେ ବିଶ୍ୱପୂଜାସ୍ପଦ
ଖଦ୍ୟୋତନ ହୋଇ ଖଦ୍ୟୋତର ପଦ ?
ଏ ସମ୍ମାନେ ତୁମ୍ଭେ ହେବ କହେ ବଣା ?
ତୁମ୍ଭଙ୍କୁ ତ ଏହା ମୂଲ୍ୟ ଅଛି ଜଣା ।
ଏ ସମ୍ମାନ-ମାଳା ମାନ୍ତୁଛି କି ଗଳେ ?
ବିଶୁଦ୍ଧ ସ୍ୱର୍ଣ୍ଣେ କି ମୁଦ୍ରା ବସେ ଭଲେ ?
ଜାଣେଁ ମୁଁ ନଥିଲି ସମ୍ମାନ-ଅଶାୟୀ,
ସମ୍ମାନ ତୁମ୍ଭଙ୍କୁ ଲୋଡ଼ିନେଲା ଯାଇ ।
ତୁମ୍ଭ ମୁଖ୍ୟ କର୍ମ ତପ ଆଚରିବା
ଦୁନିଆର ଯଶେ ଯାଏ ଆସେ କିବା ?
ଧନ୍ୟ ଧନ୍ୟ ଅହେ ତପସ୍ୱି-ସତ୍ତମ,
ମର୍ତ୍ତ୍ୟଦେହେ ତୁମ୍ଭେ ପରାଜିଲ ଯମ ।
ଦେଇଛନ୍ତି ଦିବ୍ୟ— ଚକ୍ଷୁ ବାଗୀଶ୍ୱରୀ
ଦେଖିବାକୁ ମହା— ରୂତି ମାହେଶ୍ୱରୀ ।
ସବୁବେଳେ ଧ୍ୟାନ କରୁଛ ସ୍ୱସ୍ୱତୀ
ହିରଣ୍ୟ ଗର୍ଭର ମୂରତି ଶାଶ୍ୱତୀ ।
ତୁମ୍ଭ ଆଗେ ଭାସେ ପ୍ରତି ନେତ୍ରୋନ୍ମେଷେ
କୋଟି କୋଟି ବିଶ୍ୱ ସୀମାତୀତ ଦେଶେ ।
କୋଟି ଗ୍ରହ ଉପ— ଗ୍ରହ, ଧୂମକେତୁ
ତୁମ୍ଭ ତପେ ତୁଷ୍ଟ ବାଗ୍‌ଦେବୀ ସଙ୍କେତୁଁ ।
କରୁଛନ୍ତି କେତେ ଲୀଳା କୁତୁହଳେ
ଯାଦୋଗଣ ଯଥା ମହାର୍ଣ୍ଣବ ଜଳେ ।
ତୁମ୍ଭଙ୍କୁ ନିଶାରେ ନିତି ନବ ନବ
ଦେଖାନ୍ତି ନକ୍ଷତ୍ର— ପୁରୁଷେ ତାଣ୍ଡବ ।

ଜ୍ୟୋତିର୍ଲୋକବାସୀ — ମହା ମୁନିଙ୍କର
ଜ୍ୟୋତିର୍ବିଦ୍‌, ତୁମ୍ଭେ — ନିତ୍ୟ ସହଚର ।
ରହିବ ତାବତ — ଭବେ ତୁମ୍ଭ ଯଶ
ଦୀପିବେ ଯାବତ — ଏ ଜ୍ୟୋତି ଶ୍ଚନ୍ଦସ ।
ଛନ୍ଦସ ବଧୂର — ଅନୁଷ୍ଠାନ ଗୃରୁ
ସାଧ୍ୟ ହୋଇଲା ଯେଣୁ — ତୁମ୍ଭ ଗଣନାରୁ ।
ହେ ଉତ୍କଳ ମାତା— — ଯୋଗ୍ୟତମ ସୁତ
ତୁମ୍ଭଯୋଗୁଁ ଅମ୍ଭେ — ସର୍ବେ ହୋଇଲୁଁ ପୂତ ।
ଗୋଦାବରୀଠାରୁ — ଗଙ୍ଗା ଯାଏ ବ୍ୟାପି
କୀର୍ତ୍ତିମାଳା ଯାର — ବିରାଜେ ଅଦ୍ୟାପି ।
ଏକାମ୍ରେ କୋଣାର୍କେ — ଯା କୀର୍ତ୍ତି ଭାସ୍କର
ଯୋଗ୍ୟ ପୁତ୍ର ତୁମ୍ଭେ — ସେହି ଉତ୍କଳର ।
ମାତ୍ର କାଳମୁଖେ — ସେ କୀର୍ତ୍ତି ବିମଳ
ଢେଇ, ନିଜ ମୁଖେ — ଏବେ ଯେ ଉତ୍କଳ
ବୋଲି ହୋଇଅଛି — ଈଷାନର ମସୀ
ସେ ଉତ୍କଳେ ତୁମ୍ଭେ — ଶ୍ମଶାନ-ତୁଳସୀ ।
ତାରି ରୂପେ ଉଇଁ — ଉତ୍କଳ ଗଗନେ
ରହିଲ ଅଜ୍ଞାନ— — ମେଘ ଆବରଣେ ;
ଦୂରୁ ଦେଖି ତୁମ୍ଭ — ଦିବ୍ୟ ଜ୍ୟୋତିରାଶି
ଚିହ୍ନିଲେ ତୁମ୍ଭଙ୍କୁ — ଦୂରଦେଶବାସୀ ।
ଉତ୍କଳ ଉଦୟ— — ଅଚଳେ ଭାସ୍କର ।
ହୋଇଲ ଭାରତର — ଦ୍ୱିତୀୟ ଭାସ୍କର
ମାତ୍ର ହୋଇ ଯେହ୍ନେ — ତୁମ୍ଭର ପ୍ରସୂତି
ନ ଚିହ୍ନିଲା ସେ ତ — ନିଜର ବିଭୂତି ।

ଗୁଣଙ୍କ ଉତ୍କଳେ          ଜଣେ କେହି ନାହିଁ,
ଗୁଣୀନ୍ଦ୍ର, ତୁମ୍ଭର          ହେବ ଗୁଣଗ୍ରାହୀ ।
ସଲିଳ ନ ସିଞ୍ଚି          ଖାଲି ଦଣ୍ଡବତ
କରିବାକୁ ଛନ୍ତି          ଲୋକେ ଶତ ଶତ ।
ଥାଉଁ କି ଶ୍ରୀରାମ—          ଚନ୍ଦ୍ର ନରମଣି,
ବୟସେ କିଶୋର,          ଜ୍ଞାନେ ବର୍ଷୀୟାନ,
ଥାଉଁ ଥାଉଁ ବାପୁ—          ଦେବ ନୃପବର
ବିଦ୍ୱାନ-ମଣ୍ଡଳ—          କୁଳ—ପଦ୍ମାକର,
ନରେଶ ମହେନ୍ଦ୍ର,          ସ୍ୱଦେଶ-ଗୌରବ
ଗୁଣିବୃନ୍ଦ-ଅଳି—          ବନ୍ଦନ ବାନ୍ଧବ,
ତୁମ୍ଭ ପରି ଜନ—          ତରୁ ମଞ୍ଜୁଳଙ୍କ
ଏହା ଦେଖିବାକୁ          ବିଧି ଲେଖିଥିଲା ।
ଶୁଷ୍କ ବନ୍ୟ ଯଶ          ସଙ୍ଗେ ଅର୍ଦ୍ଧାଶନ
ପ୍ରତିଭାର ପଣ          ଲଲାଟ-ଲେଖନ ।
ଲକ୍ଷ୍ମୀଙ୍କ ସପତ୍ନୀ          ହେବାରୁ ବରଦା
ଦାରିଦ୍ର୍ୟ ତୁମ୍ଭର          ସଙ୍ଗୀ ହେଲା ସଦା ।
ସଦା ଅହା ରୋଗ—          ଯନ୍ତ୍ରଣାରେ କ୍ଷୀଣ
ଋଣର ଦାରୁଣ          ଚିନ୍ତାରେ ମଳିନ ।
କରତେ ତୁମ୍ଭଙ୍କୁ          ସେହି ଚିନ୍ତା ଝିଙ୍କି
ଜ୍ୟୋତିଷ୍କୁଁ ଅଣେ          ଏ କ୍ଷୁଦ୍ର ମସ୍ତିଷ୍କ ।
ଅହା ଶୀର୍ଣ୍ଣ ଅଙ୍ଗ          ଦିଶେ କେଡ଼େ ମ୍ଳାନ
ପ୍ରାତେ ଦୀପ ଯଥା          ଅସଲ-ନିର୍ବାଣ ।
ସବୁବେଳେ ଜଳ—          ଅଛ ଚିନ୍ତାନଳେ,
ଏହାପରେ ପୁଣି          କ୍ରୁର ଭାଗ୍ୟ ଫଳେ

ପ୍ରାକୃତ-ପାଣବ— ଶକ୍ତ ଅଧିକାରୀ
ତୁମ୍ଭପରେ କରେ ପ୍ରଭୁପଣ ଜାରି ।
ଅନ୍ୟ କୂଳେ ଜନ୍ମି— ଥିଲେ ଯେଉଁ ଜନ
ତୁମ୍ଭର ଅପଟ ହେବାକୁ ସ୍ୱଜନ
କୃତଘ୍ନା, ଆଜ ସେ ପାପ-ଧନ-ଶୋଥୀ
ଲଗାଇ ଦେବାକୁ ଲୋଡ଼େ ତୁମ୍ଭ ଜ୍ୟୋତି !
ଯାର ଈର୍ଷା ଯୋଗୁଁ ତୁମ୍ଭର ଏ ଦଶା,
ଦେହେ ରାଜା ହେଲେ ମନେ ସେହୁ ଚଷା ।
ରତନ କାଢ଼ି ସେ ଖୋସିବ କଣ୍ଠେ ?
ଅନାଦରେ ତାହା ଦଳେ ପାଦପୀଠେ ।
ମୋତି ମୂଲ୍ୟ କାହୁଁ ଜାଣିବ ଶବର
ମୋତି ଫିଙ୍ଗି କରେ ଗୁଞ୍ଜାରେ ଆଦର ।
ଧୀରମଣି, ଏଥି— ଲାଗି ବିଚଳିତ
ହେବାର ତୁମ୍ଭର ନୁହଇ ଉଚିତ ।
ମଳିନ କରଇ ସିନା ମୁହୂର୍ତ୍ତିକ
ଧ୍ରୁବତାର ଜ୍ୟୋତି ଉଲ୍କାର ସ୍ଫଟିକ ।
ଭୋଗ ବିଳାସର କୀଟ ଦୁଜଅର
ଅସାର ତପସ୍ୱୀ ତୁମ୍ଭେ ବଜ୍ରସାର ।
ଭୋଗ ବିଳାସୀଙ୍କ ଜୀବନ ସଞ୍ଚିତ
କୋଟି କୋଟି ମୁଦ୍ରା— ବ୍ୟୟେ ସୁଗଠିତ
ପ୍ରାସାଦ, ସଜ୍ଜିତ ସୁପରିପାଟୀରେ
ମାଟିଦ୍ରବ୍ୟ ମିଶି ଯିବ ସେ ମାଟିରେ ।
ମାତ୍ର ଉଜ୍ଜଳର ଦର୍ପ ଶତ-ପ୍ରସୂତ,
ଜ୍ୟୋତିଷ୍କ ଦର୍ପଣ, ଦରିଦ୍ରର ଦୂତ,

"ସିଦ୍ଧାନ୍ତ ଦର୍ପଣ" ହେବ ନାହିଁ ଲୟ,
ନର ଦେହେ ଥିବ ଯାବତ ହୃଦୟ ।

କଟକ ରେଭେନ୍ସା କଲେଜର ଭୂତପୂର୍ବ ବିଜ୍ଞାନାଧ୍ୟାପକ ଜ୍ଞାନବୟୋବୃଦ୍ଧ ରାୟ ବାହାଦୂର ଯୋଗେଶଚନ୍ଦ୍ର ରାୟ M. A. ବିଦ୍ୟାନିଧି ମହାଶୟ ସିଦ୍ଧାନ୍ତଦର୍ପଣ ଗ୍ରନ୍ଥର ପ୍ରାରମ୍ଭରେ ଇଂରାଜୀଭାଷାରେ ଯେଉଁ ମୁଖବନ୍ଧ ଲିପିବଦ୍ଧ କରିଅଛନ୍ତି ସେଥି ମଧ୍ୟରୁ କିୟଦଂଶର ଉତ୍କଳାନୁବାଦ ପ୍ରକାଶିତ ହେଲା । ଯୋଗେଶ ବାବୁ କହି ଅଛନ୍ତି:—

"ଚନ୍ଦ୍ରଶେଖରଙ୍କ ଆବିଷ୍କୃତ ନିୟମର ବିଶେଷତ୍ୱ ଏହି ଯେ ଯଦ୍ୟପି ପୃଥିବୀ ବ୍ରହ୍ମାଣ୍ଡର କେନ୍ଦ୍ରସ୍ଥଳରେ ଅବସ୍ଥିତ, ତଥାପି ଗ୍ରହମାନେ ଏହାର ଚତୁର୍ଦ୍ଦିଗରେ ଭ୍ରମଣ କରୁନାହାନ୍ତି । ସେମାନେ ସୂର୍ଯ୍ୟର ଚତୁର୍ଦ୍ଦିଗରେ ଭ୍ରମଣ କରୁଅଛନ୍ତି ଏବଂ ସୂର୍ଯ୍ୟ ନିଜ ସଙ୍ଗରେ ଗ୍ରହମାନଙ୍କୁ ନେଇ ପୃଥିବୀର ଚତୁର୍ଦ୍ଦିଗରେ ଭ୍ରମଣ କରୁଅଛନ୍ତି । ଚନ୍ଦ୍ର ପୃଥିବୀର ଅବଶ୍ୟ ଗୋଟିଏ ଉପଗ୍ରହ ଏବଂ ସେ ସମ୍ବନ୍ଧରେ ପ୍ରାଚୀନ ଓ ଆଧୁନିକ ଜ୍ୟୋତିଷରେ କୌଣସି ପାର୍ଥକ୍ୟ ଘଟୁନାହିଁ । କିନ୍ତୁ ଗ୍ରହମାନେ ସୂର୍ଯ୍ୟର ଚତୁର୍ଦ୍ଦିଗରେ ଡିମ୍ବାକାରରେ ଭ୍ରମଣ କରୁଥିବାର ନିୟମ ସେ କେଉଁଠାରୁ ପାଇଲେ ! ଏହି ନିୟମ ପାଶ୍ଚାତ୍ୟ ଗ୍ରନ୍ଥରୁ ସଂଗୃହୀତ ହୋଇନାହିଁ । କେବଳ ଗ୍ରହମାନଙ୍କର ପର୍ଯ୍ୟବେକ୍ଷଣରୁ ସହଜରେ ଏହା ତାହାଙ୍କୁ ମିଳିଅଛି । ଯଦି ଆମ୍ଭେମାନେ ସୂର୍ଯ୍ୟ ସହିତ ସମ୍ବନ୍ଧ ରଖି ଗ୍ରହ ଗଣନାର ପୃଥକ୍ ପୃଥକ୍ ସ୍ଥାନ ଚହ୍ନିତ କରୁଁ ତାହାହେଲେ ପ୍ରତ୍ୟେକ ପରର ଚତୁର୍ଦ୍ଦିଗରେ ଡିମ୍ବାକାରରେ ଭ୍ରମଣ କରୁଥିବାର ଦେଖିବୁଁ ।

"ପ୍ରକୃତରେ ମୁଁ ବିଶ୍ୱାସକରେଁ ଯେ ପ୍ରାଚୀନ ଜ୍ୟୋତିର୍ବିତ୍ମାନେ ସୌରଜଗତ୍ ସମ୍ବନ୍ଧରେ ଏହି ମତ ପୋଷଣ କରିଥିଲେ । ତାହା ନ ହେଲେ ସେମାନେ କ'ଣ ଏପରି ଅନ୍ଧ ଥିଲେ ଯେ ଏହି ସହଜ ଅନୁଶୀଳନ

ଜାଣି ପାରୁ ନ ଥିଲେ । ଜ୍ୟୋତିଷମାନେ ଅନୁମାନ କରନ୍ତି ଯେ 'ପୃଥିବୀ ସୂର୍ଯ୍ୟର ଗୋଟିଏ ଗ୍ରହ ।'—ଏହି ସିଦ୍ଧାନ୍ତରେ ମୁଁ ମଧ୍ୟ ଉପନୀତ ହୋଇଅଛି ଏବଂ ପଣ୍ଡିତ ବାପୁଦେବ ଶାସ୍ତ୍ରୀ ମଧ୍ୟ ପ୍ରାଚୀନ ଜ୍ୟୋତିଷ-ମାନଙ୍କର ଏହି ନିୟମର ସାହାଯ୍ୟକାରୀ ତର୍କ ସମୂହ ପ୍ରଦାନ କରିଥିଲେ ।

"କବିଙ୍କଦ୍ୱାରା ନୂତନ ସମ୍ପାଦିତ ଏହି ପ୍ରଣାଳୀ ଅସ୍ମମାନଙ୍କୁ ଟିକୋ ବାହେ ( Tycho Brahe ) ଙ୍କର ବିଷୟ ସ୍ମରଣ କରାଇଦିଏ । ଚନ୍ଦ୍ରଶେଖରଙ୍କର ଜୀବନୀ ମନରେ ଧାରଣକରି ଅମ୍ଭେମାନେ ଭାରତର ଟିକୋ ସ୍ୱରୂପ ତାହାଙ୍କୁ ଗଣନା କରିପାରୁଁ । ଟିକୋଙ୍କ ସଦୃଶ ଅସ୍ମ-ମାନଙ୍କର କବି ଜଣେ ଉଚ୍ଚବଂଶସମ୍ଭୂତ । ଟିକୋ ଲାଟିନ୍ ଭାଷାରେ ପ୍ରାଥମିକ ଶିକ୍ଷାଲାଭ କରିଥିଲେ । ଇଉରୋପରେ ଲାଟିନ୍ ଯେପରି ଭାରତ ପକ୍ଷରେ ସଂସ୍କୃତ ମଧ୍ୟ ସେହିପରି । ଯୁବକ ଚନ୍ଦ୍ରଶେଖର ବାଲ୍ୟକାଳରେ ସଂସ୍କୃତ ଭାଷା ଶିକ୍ଷା କରିଥିଲେ । ଟିକୋ ଯେପରି ଲାଟିନ୍ ଭାଷାରେ ପଦ୍ୟ ରଚନା କରିପାରୁଥିଲେ ସେହିପରି ଚନ୍ଦ୍ରଶେଖରଙ୍କର ଜ୍ଞାନ ଏପରି ଅଧିକ ବର୍ଦ୍ଧିତ ହୋଇଥିଲା ଯେ ସଂସ୍କୃତଭାଷାରେ ଉତ୍କୃଷ୍ଟ ପଦ୍ୟ ରଚନା କରିବାକୁ ସମର୍ଥ ହୋଇଥିଲେ ।

"ଇଉରୋପୀୟ ଟିକୋଙ୍କର ସମ୍ମୁଖରେ କୋପାର ନିକସ ଥିଲେ ଏବଂ ଠଲେମିଙ୍କର ଜ୍ୟୋତିଷ ଶାସ୍ତ୍ରର ବିମୋଲିତ ଲୋପ ପାଇଥିଲା । ସୂର୍ଯ୍ୟସିଦ୍ଧାନ୍ତ ଚନ୍ଦ୍ରଶେଖରଙ୍କର ଉପାଦାନର ସ୍ଥଳ ଏବଂ ଭାସ୍କରାଚାର୍ଯ୍ୟ ତାହାଙ୍କର ପଥପ୍ରଦର୍ଶକ ଥିଲେ । ଟିକୋ ଏବଂ ଚନ୍ଦ୍ରଶେଖର ବାଲ୍ୟକାଳରେ ପରିଦର୍ଶନ ଓ ଗଣନା ମଧ୍ୟରେ ପାର୍ଥକ୍ୟ ଅବଲୋକନ କରିଥିଲେ । ସୌରଜଗତ ସମ୍ବନ୍ଧରେ ଉଭୟଙ୍କର ମଧ୍ୟ ଏକ ମତ ଥିଲା । ଟିକୋଙ୍କର ସମ୍ମୁଖରେ କୋପାର ନିକସଙ୍କର ପ୍ରଣାଳୀ ଆଦର୍ଶରୂପେ ବିଦ୍ୟମାନ ଥିଲା

ଏବଂ ଚନ୍ଦ୍ରଶେଖର ଆର୍ଯ୍ୟଭଟ୍ଟଙ୍କର ପ୍ରଣାଳୀ ଅବଗତ ଥିଲେ । ସେ କେବଳ ଯେ ଆର୍ଯ୍ୟଭଟ୍ଟ ପ୍ରମାଣିତ ପୃଥିବୀର ଆହ୍ନିକ ଗତି ବିଷୟ ଅବଗତ ଥିଲେ ତାହା ନୁହେ । ଅଧିକନ୍ତୁ ମଧ୍ୟ ସେ ଆଧୁନିକ ଭୂଗୋଳରୁ ସୂର୍ଯ୍ୟଙ୍କର ଚତୁର୍ଦ୍ଦିଗରେ ପୃଥିବୀର ବାର୍ଷିକଗତି ସମ୍ବନ୍ଧରେ କେତେକ ବିଷୟ ଜାଣିଥିଲେ । କିନ୍ତୁ ତଦ୍ଦ୍ୱାରା ପ୍ରକୃତରେ ଏହି ସମସ୍ତ ଯୁକ୍ତି ଉପରେ ନିର୍ଭର କରି ସ୍ୱକୀୟ ଆଧୁନିକ ପ୍ରଣାଳୀ ଗ୍ରହଣ କଲେ ନାହିଁ ।

"ଚନ୍ଦ୍ରଶେଖର ଓ ଟିକୋଙ୍କ ମଧ୍ୟରେ ଯେ ତୁଳନା କରାଗଲା ଏ ପର୍ଯ୍ୟନ୍ତ ତାହାର ସାମ୍ୟ ରହିଅଛି । କିନ୍ତୁ ଏ ତୁଳନା ସେତିକି ବେଳେ ଅସମଞ୍ଜସ ହୁଏ ଯେତେବେଳେ ଆମ୍ଭେମାନେ ସ୍ମରଣ କରୁଁ ଯେ ଟିକୋଙ୍କର ବିଶ୍ୱବିଦ୍ୟାଳୟ ଶିକ୍ଷାର ସୁଯୋଗ ଥିଲା ଏବଂ ରାଜସାହାଯ୍ୟପୁଷ୍ଟ ଥିଲା । ଅନ୍ୟ ଏକ ବିଶେଷତ୍ୱ ଏହି ଯେ ସେ ତାହାଙ୍କର ଅଭିଳାଷାନୁଯାୟୀ ସୂକ୍ଷ୍ମ ଯନ୍ତ୍ର ମଧ୍ୟ ପାଇ ପାରିଥିଲେ । ଚନ୍ଦ୍ରଶେଖର ସ୍ୱଦେଶର ପାହାଡ଼-ମାନଙ୍କ ମଧ୍ୟରେ ନିଜର ଜୀବନ କାଳ ଯାପନ କରିଅଛନ୍ତି । ତାହାଙ୍କର ବାସସ୍ଥାନଠାରୁ କ୍ୱଚିତ୍ ୫୦ ମାଇଲ ଦୂରପର୍ଯ୍ୟନ୍ତ ଯାଇଅଛନ୍ତି ଏବଂ ସ୍ୱକୀୟ ଗ୍ରନ୍ଥର ପ୍ରଣୟନ ବିଷୟରେ କାହାରିଠାରୁ କୌଣସି ଉତ୍ସାହ ପାଇନାହାନ୍ତି । ଟିକୋଙ୍କର ଫ୍ରେଡ଼ରିକ ୨ୟ ଓ ଡେନ୍-ମାର୍କଙ୍କ ସହିତ ବନ୍ଧୁତା ଥିଲା । ସେମାନେ ତାହାଙ୍କୁ ନରବେଠାରେ ଖଣ୍ଡେ ଜମିଦାରୀ ଦେଇଥିଲେ । ଜୀବିତ ଥିବା ପର୍ଯ୍ୟନ୍ତ ସେ ୪୦୦ ପାଉଣ୍ଡ ବାର୍ଷିକ ବୃତ୍ତି ପାଉଥିଲେ । ପର୍ଯ୍ୟବେକ୍ଷଣିକା ନିମନ୍ତେ ସ୍ଥାନ ପାଇଥିଲେ ଓ ତହିଁର ନିର୍ମାଣ ନିମନ୍ତେ ୨୦୦୦୦ ପାଉଣ୍ଡ ପାଇଥିଲେ । ଦାର୍ଶନିକ, ରାଜନୈତିକ ଓ ରାଜାମାନେ ତାହାଙ୍କର ପର୍ଯ୍ୟବେକ୍ଷଣିକା ଦେଖିବାକୁ ଆସୁଥିଲେ ଏବଂ ତାହାଙ୍କ ସହିତ ପାନାହାର କରୁଥିଲେ । ମାତ୍ର ଆମ୍ଭର ଭାରତୀୟ ଟିକୋ ସ୍ୱସ୍ଥାନର ରାଜାଙ୍କଠାରୁ ବିଦ୍ରୂପ ପାଉଥିଲେ । ତଦୀୟ ଗ୍ରନ୍ଥ କାହାର ଦୃଷ୍ଟିପଥାରୂଢ଼ ହୋଇ ନ

ଥିଲ । ଅମ୍ଭମାନଙ୍କର ଶାସକ ତାହାଙ୍କୁ ଏକ ଶୁଷ୍କ ଉପାଧି ଦାନ କରିଥିଲେ । ସେ ତଦ୍ଧିର ପ୍ରତ୍ୟାଶୀ ନ ଥିଲେ । ଯାହାହେଉ ବର୍ତ୍ତମାନ ମୁଁ ଏହି ଆଶା କରୁଅଛି ଯେ ଦେଶବାସୀମାନଙ୍କର ଅତୀତ ଅବହେଳାର ଯତି ପୂରଣ ହେଉ ଏବଂ ଅମ୍ଭମାନଙ୍କର ସୁପ୍ରସିଦ୍ଧ ଗ୍ରହନକ୍ଷତ୍ରପରିଦର୍ଶକଙ୍କର ସ୍ମୃଦନର ସୁପ୍ରବୃତ୍ତ ହେଉ । ମୋହର ଏହି ନିବେଦନ ଯେ ପ୍ରାଚୀନ-ଧରଣର ସିଦ୍ଧାନ୍ତ ଅନୁକରଣରେ ଲିଖିତ ଖଣ୍ଡିଏ ସଂସ୍କୃତ ଗ୍ରନ୍ଥ ବୋଧହୁଏ କଦାପି ନୟନପଥରେ ପଡ଼ି ନ ଥାନ୍ତା । ମୁଁ ତାହା ସର୍ବସାଧାରଣଙ୍କ ସମୀପରେ ଉପସ୍ଥାପିତ କରିଅଛି । ଏହି ଇଂରାଜୀ ଶିକ୍ଷାଯୁଗରେ ଯେଉଁ ଭାଷା ପଢ଼ିବାକୁ ଅନେକେ ଅନାସ୍ଥା ପ୍ରକାଶ କରନ୍ତି, ଏହି ପୁସ୍ତକଖଣ୍ଡିକ ସେହି ସଂସ୍କୃତଭାଷାରେ ଲିଖିତ ଏବଂ ଏହା ଚନ୍ଦ୍ରଶେଖର ସିଂହ ସାମନ୍ତଙ୍କର ଜୀବନବ୍ୟାପୀ ପରିଶ୍ରମର ଫଳ ।

"ଚନ୍ଦ୍ରଶେଖରଙ୍କର ଗ୍ରନ୍ଥ ସିଦ୍ଧାନ୍ତ-ଦର୍ପଣ ବହୁ ଗଣିତଜ୍ୟୋତିଷ ଗ୍ରନ୍ଥଉପରେ ଓ ହିନ୍ଦୁ ସମାଜ ଉପରେ ପୂର୍ବରୁ ଅନେକ ପ୍ରଭାବ ବିସ୍ତାର କଲାଣି । ଗ୍ରହ ଉପଗ୍ରହମାନଙ୍କର ସଦା ପରିବର୍ତ୍ତନଶୀଳ ଅବସ୍ଥିତିର ବିଶୁଦ୍ଧ ଜ୍ଞାନ କେବଳ ହିନ୍ଦୁସମାଜର ତତ୍ତ୍ୱାନ୍ୱେଷୀମାନଙ୍କ ନିମିତ୍ତ ନୁହେଁ । ଯଦ୍ୟପି ଧର୍ମପାଳନ ଓ ପ୍ରକୃତ ପର୍ଯ୍ୟବେକ୍ଷଣର ବ୍ୟବସ୍ଥାପାଇଁ ଗ୍ରହ, ନକ୍ଷତ୍ରମାନଙ୍କର ଅବସ୍ଥିତିର ଜ୍ଞାନ ଆବଶ୍ୟକ ନ ହୁଏ ତେବେ ହିନ୍ଦୁଜୀବନ କିଛି ନୁହେ । ବାସ୍ତବିକ ପ୍ରତ୍ୟେକ ହିନ୍ଦୁଗୃହର ଖଣ୍ଡିଏ ବିଶୁଦ୍ଧ ପାଞ୍ଜି ଅତ୍ୟନ୍ତ ଆବଶ୍ୟକ ବସ୍ତୁ । ସମସ୍ତ ଧର୍ମ କର୍ମ ଓ ବ୍ରତୋପବାସାଦି ପଞ୍ଜିକାର ନିୟମାନୁବର୍ତ୍ତୀ ହୋଇଥାଏ । ଏହା ଦେଖାଯାଉଅଛି ଯେ କୌଣସି ଦୁଇଗୋଟି ପ୍ରଚଳିତ ପାଞ୍ଜି ଗଣନାରେ ଏକମତ ହୁଅନ୍ତି ନାହିଁ । ସୁତରାଂ ହିନ୍ଦୁଭାରତରେ ପଞ୍ଜିକାମାନଙ୍କର ସଂଶୋଧନ ବିଷୟରେ ସିଦ୍ଧାନ୍ତର ସତ୍ୟତା ନେଇ ରକ୍ଷଣଶୀଳ ଦଳ ଓ ଉଦାରନୈତିକ ଦଳ ମଧ୍ୟରେ ଭୀଷଣ ବାଦାନୁବାଦ ଚାଲିଛି । ପ୍ରାଚୀନ ସିଦ୍ଧାନ୍ତର ଗଣନାରେ ଭ୍ରମ ପ୍ରବେଶ

ବିଷୟରେ ଖାଣ୍ଟି ହିନ୍ଦୁସମୂହ ବିଶ୍ୱାସ କରିବାକୁ ଅସ୍ୱୀକୃତ । ହିନ୍ଦୁଧର୍ମ ପାଳନକୁ ନିୟମାନୁବର୍ତ୍ତୀ କରିବାପାଇଁ ବୈଦେଶିକ ଜ୍ୟୋତିର୍ବିଦ୍ୟା ସମ୍ବନ୍ଧୀୟ ପଞ୍ଜିକା ବ୍ୟବହାର କରିବା ତ ପ୍ରଶ୍ନର ବହିର୍ଭୂତ । କୌଣସି ଆବଶ୍ୟକ ସଂଶୋଧନ ବୈଦେଶିକ ଶିକ୍ଷାନଭିଜ୍ଞ କୌଣସି ହିନ୍ଦୁଦ୍ୱାରା ହିଁ ସାଧିତ ହୋଇପାରେ । ଶ୍ରମଲବ୍ଧବହୁକାଳୀ ଯନ୍ତ୍ରର ଅଦ୍ଭୁତ ଉଦ୍ଭାବନ ଓ ଉତ୍କୃଷ୍ଟ ବୈଜ୍ଞାନିକ ଅବସ୍ଥାର-ଦ୍ୱାରା ୟୁରୋପ ବ୍ୟାବହାରୋପଯୋଗୀ ଜ୍ଞାନର ପ୍ରତ୍ୟେକ ବିଭାଗ ସହିତ ସଂଯୁକ୍ତ ପ୍ରାଚୀନ ଋଷିମାନଙ୍କର ସ୍ଥାନ ପୂରଣ କରି ପାରିବ ନାହିଁ । ପାର୍ଥିବ ବିଷୟରେ ଇଉରୋପ ଶିକ୍ଷକ ହୋଇପାରେ, କିନ୍ତୁ ଆଧ୍ୟାତ୍ମିକ ବିଷୟରେ ସେ ଭାରତୀୟକଠାରେ ପାଠ ଶିଖାଇପାରିବ ନାହିଁ । ଚନ୍ଦ୍ରଶେଖର ଏ ପର୍ଯ୍ୟନ୍ତ ଅନୁସରଣ କରାଯାଉଥିବା ଉପାଦାନଗୁଡ଼ିକ ପ୍ରକୃତରୂପେ ପରୀକ୍ଷା କରିଅଛନ୍ତି ଏବଂ ପଞ୍ଜିକାର ସଂଶୋଧନପାଇଁ ଯୁକ୍ତି ମଧ୍ୟ ଦେଖାଇ ଅଛନ୍ତି ଏବଂ ପର୍ଯ୍ୟବେକ୍ଷଣ ସହିତ ଗଣନାର ମେଳ କରାଇବା ଉଦ୍ଦେଶ୍ୟରେ ପ୍ରୟୋଜନୀୟ ସଂଶୋଧନ କରିବାପାଇଁ ଅନୁମତି ଦାନ କରିଥିବା ଆର୍ଯ୍ୟଋଷିମାନଙ୍କ ଗ୍ରନ୍ଥରୁ ଉପଦେଶ ପାଇଅଛନ୍ତି ।

"ମୁଁ ଯେତେବେଳେ ଚନ୍ଦ୍ରଶେଖରଙ୍କୁ ପ୍ରଥମ ଥର ଦେଖିଥିଲି ସେତେବେଳେ ଅଭ୍ୟାସଲବ୍ଧ ପୁର୍ଣ୍ଣତ୍ୱର ଏକ ଉଦାହରଣ ମୋହର ନୟନଗୋଚର ହୋଇଥିଲା । ମୋହର କେତେକ ଜଣ ବନ୍ଧୁ ସାମନ୍ତଙ୍କୁ ପ୍ରକୃତ ଗଣିତ ଜ୍ୟୋତିଷର ଛଳନା କରୁଥିବାର ସନ୍ଦେହ କରୁଥିଲେ ଏବଂ ତାହାଙ୍କର ଜ୍ଞାନ ପରୀକ୍ଷା କରିବାକୁ ଇଚ୍ଛା କରୁଥିଲେ । ଦିନେ ସନ୍ଧ୍ୟାସମୟରେ ଯେତେବେଳେ ମଙ୍ଗଳ ଓ ଶୁକ୍ରଗ୍ରହ ପଶ୍ଚିମ ଆକାଶରେ ୬ଡିଗ୍ରୀ ଦୂରରେ ଥିଲେ, କୌଣସି ଉପସ୍ଥିତ ଯନ୍ତ୍ରସାହାଯ୍ୟରେ ଗ୍ରହଦ୍ୱୟର ମଧ୍ୟବର୍ତ୍ତୀ ପ୍ରକୃତ ଦୂରତ୍ୱ ନିରୂପଣ କରି ଦେଖାଇଦେବାକୁ ସାମନ୍ତଙ୍କୁ ଅନୁରୋଧ କରାଯାଇଥିଲା । ଏକ ମୁହୂର୍ତ୍ତ ପରେ ୪୨ ଅଙ୍ଗୁଳ ଲମ୍ବା ଖଣ୍ଡିଏ କାଠିରେ ସେ ତାହାଙ୍କର ମାନଯନ୍ତ୍ର ନିର୍ମାଣ କରିଥିଲେ ଓ ସାଢ଼େଚାରିଅଙ୍ଗୁଳ

ଲମ୍ବା ଖଣ୍ଡିଏ ଛେଦନକାରୀ କାଠି ଶେଷଅଡ଼କୁ ସଂଲଗ୍ନ କରିଥିଲେ । ତ୍ରିକୋଣମିତିର ଜ୍ୟା ବିଷୟସବୁ ତାହାଙ୍କର ମୁଖସ୍ଥ ଥିଲା । ଆବଶ୍ୟକ ଗଣନା ମନେ ମନେ କରିଥିଲେ ଏବଂ କେତେକ ମିନିଟ ମଧ୍ୟରେ ଯନ୍ତ୍ର ପ୍ରସ୍ତୁତ ହୋଇଥିଲା । ତାହାଙ୍କୁ ମାନଯନ୍ତ୍ର ବ୍ୟବହାର କରୁଥିବା ସମୟରେ ଦେଖିଲେ ହୃଦୟରେ ପ୍ରକୃତ ଆନନ୍ଦ ଉପଲବ୍ଧ ହୁଏ । ଅଜସ୍ର ଅଭ୍ୟାସ ତାହାଙ୍କୁ ଏପରି ସୁଯୋଗ ଆଣି ଦେଇଥିଲା । ଏହି ଘଟନାରେ ସେ ପ୍ରଥମେ ଦୂରବୀକ୍ଷଣ ଯନ୍ତ୍ର ଦେଖିଥିଲେ । ସେ ଏହାର ଅଦ୍ଭୁତ ଶକ୍ତି ବିଷୟ ଶୁଣିଥିଲେ, କିନ୍ତୁ ଏହାର କାର୍ଯ୍ୟକାରିତା ସମ୍ବନ୍ଧରେ ତାହାଙ୍କର କୌଣସି ଧାରଣା ନ ଥିଲା । ଦୂରବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ଗ୍ରହମାନଙ୍କୁ ଦେଖାଇବାପାଇଁ ସେ ମୋତେ ଅନୁରୋଧ କରିଥିଲେ । ଦୁର୍ଭାଗ୍ୟବଶତଃ ସେତେବେଳେ ୩½ ବ୍ୟାସବିଶିଷ୍ଟ ଖଣ୍ଡିଏ କ୍ଷୁଦ୍ର ଦୂରବୀକ୍ଷଣ ଯନ୍ତ୍ର ମୋହ ନିକଟରେ ଥିଲା । ୮୦ ପରିମାଣ ଶକ୍ତିରେ ଏହା ତାହାଙ୍କପ୍ରତି ଠିକ୍ ଲାଗିଥିଲା । ସେ ଅତ୍ୟନ୍ତ ଆନନ୍ଦର ସହିତ ଏହାଦ୍ୱାରା ଚନ୍ଦ୍ରର ବଳୟ ଓ ବିରାଟ ଦୃଶ୍ୟର ଅବଲୋକନରେ କିଛି ସମୟ ନିମଗ୍ନ ରହିଥିଲେ । ଯେତେବେଳେ ଏହାର ନୂତନତ୍ୱ କିଛି କମିବାକୁ ଆରମ୍ଭ କଲା ସେତେବେଳେ ସେ ଦୂରବୀକ୍ଷଣ ଯନ୍ତ୍ରର ଆୟତନ ବୃଦ୍ଧି କରିବାର ଶକ୍ତି ବିଷୟରେ ଜାଣିବାକୁ ଇଚ୍ଛା କରିଥିଲେ । ସେ ତାହା ନିଜେ ବାହାର କରିବାପାଇଁ ଯତ୍ନବାନ୍ ହେବାକୁ ଅନୁରୁଦ୍ଧ ହୋଇଥିଲେ । ଏ ପ୍ରଶ୍ନ ବଡ଼ ଜଟିଳ, ତେଣୁ ମୁଁ କୌଣସି ଉତ୍ତର ଆଶା କରି ନ ଥିଲି । ତପୂରେ ଏହି ଯନ୍ତ୍ର ପ୍ରାୟ ୧୦୦ ଗୁଣ ବ୍ୟାସର ଆୟତନ ବୃଦ୍ଧି କଲା ବୋଲି କହି ସେ ମୋତେ ଚମତ୍କୃତ କରିଥିଲେ । ଦୂରବୀକ୍ଷଣ ଯନ୍ତ୍ରରେ ଦେଖାଯାଉଥିବା ଚନ୍ଦ୍ରର ମୂର୍ତ୍ତି ବା ପ୍ରତିକୃତି ସେ ମାପିଥିଲେ ଏବଂ ତାହାକୁ ନିଜେ ପୂର୍ବରୁ ଜାଣିଥିବା ପ୍ରକୃତ ବ୍ୟାସ ସହିତ ତୁଳନା କରିଥିଲେ । ତତ୍ପରେ ଏହି ଯନ୍ତ୍ର ସାହାଯ୍ୟରେ ବୃହସ୍ପତି ଗ୍ରହପ୍ରତି ଲକ୍ଷ୍ୟ କରିଥିଲେ ଏବଂ ନିଜେ

ତାହା ଦେଖିଥିଲେ । ଗ୍ରହର ପ୍ରକୃତ ଗତି ଯନ୍ତ୍ରରେ ପ୍ରାୟ ଶତଗୁଣ ବେଗରେ ଚାଲୁଥିଲା ଏବଂ କଟିବନ୍ଧ ଓ ଉପଗ୍ରହମାନଙ୍କୁ ସନ୍ତୋଷଜନକ ଭାବରେ ଦେଖିବା ପର୍ଯ୍ୟନ୍ତ ସେ ସେହି ଗତିର ଅନୁସରଣ କରିଥିଲେ । ଯୌବନ ସମୟରେ ଏହି ଯନ୍ତ୍ର ପ୍ରାପ୍ତିର ସୁଯୋଗ ଘଟି ନ ଥିବାରୁ ସେତେବେଳେ ସେ ବଡ଼ ଦୁଃଖ ପ୍ରକାଶ କରିଥିଲେ । ତତ୍ପରଦିନ ପ୍ରଭାତରେ ଛଥି ବିଷୟରେ ଆମ୍ଭମାନଙ୍କର ଗଳ୍ପ ହୋଇଥିଲା । ମୁଁ କହିଲି ଯେ ବଙ୍ଗଳା ପାଞ୍ଜିକାରମାନେ ତଥିରେ ଗୃହୀତ ସ୍ଥାୟିତ୍ୱର କୌଣସି ପରିବର୍ତ୍ତନ ଉଶ୍ୱାସ କରନ୍ତି ନାହିଁ । ଏ କଥା ଶୁଣି ସେ ଦୁଇ ଏକ ମିନଟ ନୀରବ ରହିଥିଲେ । ସେଥିରୁ ବୋଧ ହେଲା ଯେପରି କି ସେହି ବିଷୟରେ ସେ ସନ୍ଦେହ କରିଥିଲେ । ତାହାଙ୍କର ମତ ପଚାରିବାରୁ ସେ ତଦୀୟ ଗ୍ରନ୍ଥରୁ ଗୋଟିଏ ଶ୍ଳୋକ ପାଠ କରିଥିଲେ । ତହିଁର ଅର୍ଥ ପ୍ରକୃତ ପର୍ଯ୍ୟବେକ୍ଷଣର ଫଳ ଯୁକ୍ତିଦ୍ୱାରା ଖଣ୍ଡନ କରାଯାଇ ନ ପାରେ ।”

ମହାତ୍ମା ଚନ୍ଦ୍ରଶେଖରଙ୍କର ସ୍ୱର୍ଗାରୋହଣ ପରେ ଉତ୍କଳର କେତେକ ସାପ୍ତାହିକ ଓ ମାସିକ ପତ୍ରିକା ଯେଉଁ ମନ୍ତବ୍ୟ ପ୍ରକାଶ କରିଥିଲେ ସେଥିମଧ୍ୟରୁ କେତେକ ଉଦ୍ଧୃତ ହେଲା ।

## ଉତ୍କଳଦୀପିକା—ତା ୧୮, ଜୁନ ୧୯୦୪ ମସିହା

ଗଭୀର ଶୋକର ସହିତ ପ୍ରକାଶ କରୁଅଛୁଁ କି ଉତ୍କଳର ଗୌରବଚନ୍ଦ୍ର ମହାମହୋପାଧ୍ୟାୟ ଚନ୍ଦ୍ରଶେଖର ସିଂହ ସାମନ୍ତ ଗତ ଶନିବାର ମଧ୍ୟାହ୍ନ କାଳରେ ଶ୍ରୀ ପୁରୁଷୋତ୍ତମ କ୍ଷେତ୍ରରେ ଇହଧାମ ପରିତ୍ୟାଗ କଲେ । ବ ୪।୫ ବର୍ଷ ପୂର୍ବରୁ ଅତିସାର ରୋଗରେ କ୍ରମେ ତାହାଙ୍କର ସ୍ୱାସ୍ଥ୍ୟଭଙ୍ଗ ହୋଇ ଆସୁଥିଲା । ନିଜ ଶରୀରର ଅବସ୍ଥା ଅନୁଭବଦ୍ୱାରା ଅଥବା ଜ୍ୟୋତିଷ ଶାସ୍ତ୍ରାନୁସାରେ ଆୟୁର୍ଗଣନାଦ୍ୱାରା ମୃତ୍ୟୁକାଳ ନିକଟ ହେବାର ଜାଣି ସେ ପ୍ରାୟ ୧୫ ଦିନ ପୂର୍ବରୁ ପୁରୀକୁ ଆସି ଶ୍ରୀକ୍ଷେତ୍ରବାସୀ ହୋଇଥିଲେ । ମାତ୍ର

ମୃତ୍ୟୁର ପୂର୍ବଦିନ ପର୍ଯ୍ୟନ୍ତ ପୀଡ଼ାର ବିଶେଷ ପ୍ରକୋପ ନ ଥିଲା । ହଠାତ୍ ରୋଗ ବୃଦ୍ଧି ହୋଇ ତାହାଙ୍କର ପ୍ରାଣ ଘେନିଯିବାର ଶୁଣି ଲୋକେ ଆଶ୍ଚର୍ଯ୍ୟ ହୋଇଗଲେ । ସେ ଶେଷକାଳ ପର୍ଯ୍ୟନ୍ତ ସଚେତ ଥିଲେ । ତାହାଙ୍କର ବୟସ ୭୮।୭୯ ବର୍ଷ ହୋଇଥିଲା ଓ ତାହାଙ୍କର ମଧ୍ୟମ ପୁତ୍ର ସଙ୍ଗରେ ଥିଲେ । ସାମନ୍ତ ଚନ୍ଦ୍ରଶେଖର ସିଂହଙ୍କର ପରିଚୟ ଦେବା ବାହୁଲ୍ୟ । ସେ ଖଣ୍ଡପଡ଼ା ରାଜବଂଶରେ ଜନ୍ମଗ୍ରହଣ ଓ ସେହି ଅରଣ୍ୟମୟ ରାଜ୍ୟରେ ଶିକ୍ଷାଲାଭ କରି ସ୍ୱୀୟ ଅସାଧାରଣ ବୁଦ୍ଧି ବିଚାର ଓ ଅଧ୍ୟବସାୟ ବଳରେ ଜଟିଳ ଜ୍ୟୋତିଷ ବିଦ୍ୟାରେ ଯେ ପ୍ରକାର ପାରଦର୍ଶିତା ଲାଭ କରିଥିଲେ ତାହାଙ୍କର ରଚିତ ସିଦ୍ଧାନ୍ତଦର୍ପଣ ଗ୍ରନ୍ଥ ତହିଁର କୀର୍ତ୍ତିସ୍ୱରୂପ ରହିଅଛି ଏବଂ ସେହି ଗ୍ରନ୍ଥର ମୁଦ୍ରାଙ୍କନ ଓ ପ୍ରଚାର ବିଷୟରେ ଏଠା କଲେଜର ଅଧ୍ୟାପକ ବାବୁ ଯୋଗେଶଚନ୍ଦ୍ର ରାୟ ଅନେକ ଯତ୍ନ ଓ ସାହାଯ୍ୟ କରି ଓ ଇଂରାଜୀରେ ଗୋଟିଏ ଉପକ୍ରମଣିକା ଯୋଗ କରିବାରୁ ସମସ୍ତ ଜଗତର ବିଦ୍ୱାନ୍‌ମଣ୍ଡଳୀ ତାହା ପାଠ କରି ଅଶେଷ ପ୍ରଶଂସା କରିଅଛନ୍ତି । ଚନ୍ଦ୍ରଶେଖର ବାସ୍ତବରେ ଉତ୍କଳର ଚନ୍ଦ୍ର ଥିଲେ ଏବଂ ନିଜ ଗୁଣରେ ଜଗତ ଆଲୋକିତ କରିଥିଲେ । ତାହାଙ୍କର ପ୍ରସ୍ଥାନରେ ଦେଶ ଅନ୍ଧକାରମୟ ହେଲା । କେବେ ଯେ ଏହା ଘୁଞ୍ଚିବ, ତାହା କିଏ କହିବ ? ସେ ଯେମନ୍ତ ବିଦ୍ୱାନ୍ ତେମନ୍ତ ନିଷ୍ଠାବାନ୍ ଧାର୍ମିକ ଥିଲେ । ଈଶ୍ୱର ତାହାଙ୍କର ଆତ୍ମାର ମଙ୍ଗଳ କରନ୍ତୁ ଏବଂ ତାହାଙ୍କର ଶୋକସନ୍ତାପିତ ପରିବାରବର୍ଗର ଶାନ୍ତିବିଧାନ କରନ୍ତୁ ଏହାହିଁ ଆମ୍ଭମାନଙ୍କର ପ୍ରାର୍ଥନା ।

## ଓଡ଼ିଆ ଓ ନବସମ୍ବାଦ

ତା ୧୫ ରିଖ, ଜୁନ ୧୯୦୪

ଅତ୍ୟନ୍ତ ଦୁଃଖର ସହିତ ଅଜି ଆମ୍ଭେମାନେ ମହାମହୋପାଧ୍ୟାୟ ଶ୍ରୀଯୁକ୍ତ ଚନ୍ଦ୍ରଶେଖର ସାମନ୍ତଙ୍କ ମୃତ୍ୟୁସମ୍ବାଦ ଘୋଷଣା କରୁଅଛୁଁ ।

ଚନ୍ଦ୍ରଶେଖର ଆପଣା ସିଦ୍ଧାନ୍ତରୁ ଆପଣାର ଅସନ୍ନ ମୃତ୍ୟୁକାଳ ନିକଟବର୍ତ୍ତୀ ହୋଇଥିବାର ଜାଣିପାରି ଅଳ୍ପ ଦିନ ହେବ ପୁରୀଧାମରେ ବାସ କରିଥିଲେ । ଦୁରନ୍ତ ଅତିସାର ବ୍ୟାଧି ବ ୬୮।୯ ବୟସରେ ତାଙ୍କୁ ହରଣ କରିନେଲା । ଦୁଃଖର କଥା କହିବୁଁ କଅଣ ? ତାଙ୍କର ଜୀବିତ କାଳ ମଧ୍ୟରେ ଉତ୍କଳବାସୀ ତାଙ୍କ ପ୍ରତିଭାର ପୂଜା କରି ପାରିଲେ ନାହିଁ । ଅଛି ଅନ୍ୟ କୌଣସି ଦେଶରେ ଚନ୍ଦ୍ରଶେଖର ଜନ୍ମଗ୍ରହଣ କରିଥିଲେ, ତାଙ୍କର ଆସନ କେତେ ଉଚ୍ଚରେ ନିର୍ଦ୍ଦିଷ୍ଟ ହୋଇ ଥାଆନ୍ତା ଗୁଣଗ୍ରାହୀ ବ୍ୟକ୍ତି ସେ ଚିନ୍ତା କରି ବୁଝିବେ ।

## ବାଲେଶ୍ୱର ସମ୍ବାଦ ବାହିକା

ତା ୨୩ ରିଖ, ଜୁନ ସନ ୧୯୦୪ ମସିହା

ଅମ୍ଭେମାନେ ଅତ୍ୟନ୍ତ ଦୁଃଖର ସହିତ ଦୀପିକାରୁ ପାଠକଙ୍କୁ କି "ଉତ୍କଳର ଗୌରବଚନ୍ଦ୍ର ମହାମହୋପାଧ୍ୟାୟ ଚନ୍ଦ୍ରଶେଖର ସିଂହ ସାମନ୍ତ ଗତ ପୂର୍ବ ଶନିବାର ମଧ୍ୟାହ୍ନ କାଳରେ ଶ୍ରୀ ପୁରୁଷୋତ୍ତମ କ୍ଷେତ୍ରରେ ଇହଧାମ ପରିତ୍ୟାଗ କଲେ ।" ଇତ୍ୟାଦି ଉତ୍କଳଦୀପିକାରୁ ଅବିକଳ ଉଦ୍ଧାର କରିଥିବାରୁ ପୁନରୁଲ୍ଲେଖ ଅନାବଶ୍ୟକ ।

## ଗଡ଼ଜାତ ବାସିନୀ—ଜୁନ ୧୭ ତାରିଖ, ୧୯୦୪

## ବିଷମ ଶୋକସମ୍ବାଦ

ଯାହାଙ୍କ ଯୋଗେ ଓଡ଼ିଆମାନେ ଜାତୀୟତାର ପରିଚୟ ଦେଉଥିଲେ, ଯାହାଙ୍କ ଯୋଗେ ଦରିଦ୍ର ଉତ୍କଳ ଜଗତରେ ଗଣନୀୟ ହେଉଥିଲା ସେହି ମହାମହୋପାଧ୍ୟାୟ ଚନ୍ଦ୍ରଶେଖର ସାମନ୍ତ ଆଜି ନାହାନ୍ତି । ତାଙ୍କର ଭୁବନବିଖ୍ୟାତ ପବିତ୍ର ଆତ୍ମା ଆଜି ସ୍ୱର୍ଗରେ । ଗତ ତା ୧୧ରେ ଶ୍ରୀ ପୁରୁଷୋତ୍ତମ କ୍ଷେତ୍ରରେ ନଶ୍ୱର ଦେହ ପରିତ୍ୟାଗ କଲେ । ସେ

ଅନେକଦିନରୁ ନାନା ରୋଗରେ ପୀଡ଼ିତ ଥିଲେ । ସେହି ରୋଗ ତାଙ୍କ ମୃତ୍ୟୁର କାରଣ ହୋଇ ଉଠିଲା । ସେ ଜ୍ୟୋତିର୍ବିଜ୍ଞାନରେ ମୃତ୍ୟୁର କାରଣ ଜାଣିପାରି କେତେକ ଦିନ ହେଲା ଶ୍ରୀକ୍ଷେତ୍ରରେ ବାସ କରୁଥିଲେ ।

ଜଗଦୀଶ୍ୱରଙ୍କ ବିଧାନକୁ ଅନ୍ୟଥା କରିବାର କାହାରି କ୍ଷମତା ନାହିଁ । ଯାହା ହେବାର ଥିଲା ତାହା ହେଲା ।

ଏକବର୍ଷ ମଧ୍ୟରେ ଏକ ଦିଗରେ ସାର ସ୍ତ୍ରୁଡ଼ଲ ଓ ଅନ୍ୟ ଦିଗରେ ମହାମହୋପାଧ୍ୟାୟଙ୍କ ବିୟୋଗରେ ଓଡ଼ିଆଙ୍କର ବିଶେଷ କ୍ଷତି ହୋଇଅଛି । ସ୍ୱର୍ଗରୁ କୁସୁମ ବୃଷ୍ଟି ହେଉ; ତାହାଙ୍କର ପବିତ୍ର ଆତ୍ମା ସ୍ୱର୍ଗବାସୀ ହେଉ ଓ ଶୋକସନ୍ତପ୍ତ ପରିବାର ଏବଂ ଉତ୍କଳ ମନରେ ଶାନ୍ତି ଉପସ୍ଥିତ ହେଉ, ଏହି କାମନା କରୁଅଛୁଁ ।

## ଉତ୍କଳ ସାହିତ୍ୟ ( ମାସିକ ପତ୍ରିକା )

କଟକ, ଜୁନ ୧୯୦୪ ମସିହା

### ଶୋକ-ସମ୍ବାଦ

ଉତ୍କଳଗୌରବ କ୍ଷଣଜନ୍ମାପୁରୁଷ ମହାମହୋପାଧ୍ୟାୟ ଶ୍ରୀ ଚନ୍ଦ୍ରଶେଖର ସିଂହ ସାମନ୍ତ ଆଉ ଏ ସଂସାରରେ ନାହାନ୍ତି । ରୋଗ, ଶୋକ, ଦାରିଦ୍ର୍ୟ, ହିଂସା, ଦ୍ୱେଷ ପ୍ରଭୃତିର ହସ୍ତ ଏଡ଼ାଇ ଅମରଆତ୍ମା ଅମରଧାମକୁ ଚାଲିଯାଇ ଅଛନ୍ତି । ଏ ସଂସାରରେ ଥାଇ ସୁଦ୍ଧା ସେ ଜ୍ଞାନ ଓ ଧର୍ମବଳରେ ସଂସାରର ଅତୀତ ପ୍ରଦେଶରେ ବାସ କରୁଥିଲେ । ଦେହର ସମ୍ବନ୍ଧ ରହିତ ହେଲା, ସର୍ବପ୍ରକାର ବନ୍ଧନ ଛିନ୍ନ ହେଲା, ଏବେ ସେ ନିରବଚ୍ଛିନ୍ନ ଜ୍ଞାନ-ପ୍ରେମ-ସୁଧାପାନର ଅଧିକାରୀ ହେଲେ । ଯେଉଁ ଉତ୍କଳରେ ଜନ୍ମଗ୍ରହଣ କରି ଚନ୍ଦ୍ରଶେଖର ସଭ୍ୟଜଗତ୍ ନିକଟରେ ଏହାର ମୁଖ ଉଜ୍ଜ୍ୱଳ କଲେ, ଏ ପତିତ ମାତୃଭୂମିକୁ କିଞ୍ଚିତ୍ ଉର୍ଦ୍ଧ୍ୱକୁ ଉଠାଇ

ଆଣିଲେ । ମାତ୍ର ଜଙ୍ଗଲବାସୀ ତାଙ୍କ ପ୍ରତି କି ବ୍ୟବହାର କରିଅଛନ୍ତି ? ଆଜି ତାଙ୍କର ତିରୋଧାନରେ ଦୁଇ ଗୋଟା ଶୋକ ପ୍ରକାଶକ ବାକ୍ୟ ଉଚ୍ଚାରଣ କରି ଦୁଇ ଚାରି ବିନ୍ଦୁ ଅଶ୍ରୁ ବିସର୍ଜନ କରି ଅନେକ କର୍ତ୍ତବ୍ୟ ଶେଷ କରି ବସିବେ । ଦୁର୍ଭାଗ୍ୟ, ଦେଶରେ ପ୍ରତିଭାର ପରିଣାମ ଏହି । ବୃଥା ଛଳନା—ବୃଥା ଛଦ୍ମବେଶରେ ଆଉ କିଛି ଫଳ ନାହିଁ । ଚନ୍ଦ୍ରଶେଖର ଭିନ୍ନ ଦେଶବାସୀ—ଭିନ୍ନ ଜାତୀୟ ଲୋକ—ଆମ୍ଭେମାନେ ତାହାଙ୍କର କେହି ନୋହୁଁ । ସୁତରାଂ ଆମ୍ଭମାନଙ୍କ ମୁଖରେ ତାଙ୍କ କଥା ଶୋଭା ପାଇବ ନାହିଁ । ନୀରବତା ସର୍ବାଂଶରେ ଶ୍ରେୟଃ । ତାଙ୍କ ରାଜ୍ୟରେ ଗୃହରେ ସେ ନିତ୍ୟାନନ୍ଦ ସମ୍ଭୋଗ କରନ୍ତୁ । ଆମ୍ଭେମାନେ ଧୂଳିମାଟି ଦେହ ଯେପରି ଅଛୁଁ ସେହିପରି ଥାଉଁ ।

ସ୍ୱର୍ଗୀୟ ମହାମହୋପାଧ୍ୟାୟ ଚନ୍ଦ୍ରଶେଖର ସିଂହ ସାମନ୍ତଙ୍କ ମୃତ୍ୟୁ ଉପଲକ୍ଷରେ ତଦୀୟ ଜ୍ୟେଷ୍ଠପୁତ୍ର ସ୍ୱର୍ଗୀୟ ପୀତାମ୍ବର ସିଂହ ସାମନ୍ତଙ୍କ କର୍ତ୍ତୃକ ରଚିତ—

## ପିତୃବିୟୋଗ-ବିଳାପ

( ଶଙ୍କରାଭରଣ ବୃତ୍ତ )

କମଳା-ବଲ୍ଲଭ-ପଦ-କମଳ-ପ୍ରପନ୍ନ,
କଷ୍ଟ ଦେଇ ଲୁଚିଗଲ ପ୍ରସନ୍ନ ଲପନ,
ଅହେ, କରୁଣାସାଗର,
କରୁଛ ଶରୀର ଗର ଗ୍ରାସିବ ନାଗର । ୧ ।
ଖସି ଆସିଥିଲ ସତ୍ୟଲୋକରୁ ଆପଣ,
ଖଣ୍ଡପରଶୁ ପରାୟେ ବଡ଼ ହଙ୍କପଣ,
ଅହେ, ଖଗଗତିବଦ,
ଖମଣି * ସିଦ୍ଧାନ୍ତ ସ୍ଥିତି ଅଗମ ବୋଧଦ । ୨ ।

* ଖମଣି—ସୂର୍ଯ୍ୟ ।

ଗଲ୍ସ ଦନ୍ତ ଗୃହ ତେଜି ଶ୍ରୀପୁରୁଷୋତ୍ତମ,
ଗତସ୍ନେହ ହେଲ୍ସ ଦେହ ହେ ପୁରୁଷୋତ୍ତମ,
ଅହେ, ଗଣକମୁକୁଟ,
ଗଗନ ନ କରେ ତୁମ୍ଭ ମନୋମାର୍ଗେ କୁଟ । ୩ ।
ଘରେ ରହିବାର ମୋର ମାନସ ନ ଥିଲ୍ସ,
ଘନାଘନ (୧) ପ୍ରାୟେ ଘୋର ଦଇବ ମନ୍ତ୍ରିଲ୍ସ,
ଅହେ, ଘନତନ୍ତୁବଗେ,
ଘଟ ତେଜି ଗଲ ତାଙ୍କ ଶ୍ରୀଅଙ୍ଗରେ ଲଗି । ୪ ।
ଙଉଁଥିଲ୍ସ ପୂର୍ଣ୍ଣଇନ୍ଦୁ ଅବନୀ ତଳରେ,
ଙଅଁସ ହୋଇଲ୍ସ ଏବେ ବଳଯୁ କାଳରେ,
ଅହେ, ଙଲତବଗୁର,
ଙଣ୍ଡିଲେ ନ ଦେଖେଁ ମୁହିଁ କାହିଁ ସେ ଅଗୁର । ୫ ।
ଚକ୍ଷୁ ଥାଉ ଥାଉ ଅନ୍ଧ ପରିୟେ ହେଉଛି,
ଚରିତମାନ ତୁମ୍ଭର ବଦନେ ଗାଉଛି,
ଅହେ, ଚନ୍ଦ୍ରଶେଖର,
ଚରଣ ଦାସକୁ ରଖ ଆପଣା ପାଖର । ୬ ।
ଛପିଯିବା ବେଳେ ଭ୍ରିବ ଚଳବ ପାଶରେ,
ଛନ୍ନ ହୋଇଅଛି ଏହ ଦୁରାଶା ପାଶରେ,
ଅହେ, ଛନ୍ଦପଣ୍ଡମାନ୍ୟ,
ଛଦ୍ମ ତୁଚ୍ଛ ସ୍ୱଚ୍ଛମନା ତୁମ୍ଭେ କ ସାମାନ୍ୟ । ୭ ।
ଜଳୁଛି ହୃଦୟବନ ସନ୍ତାପ-ଶିଖୀରେ,
ଜଣେ ହୋଇ ଲେଖା ମୁହିଁ ଦୁଃସହ ଦୁଃଖୀରେ,
ଅହେ, ଜଗତ-ବନ୍ଦିତ,
ଜମ୍ବୁଦ୍ୱୀପୁରେ ଯଶ ଚନ୍ଦ୍ରମା ଉଦିତ । ୮ ।

(୧) ଘନାଘନ—ମତ୍ତହସ୍ତୀ ।

ଝରଇ ନୟନୁ ଯାର କରଇ ସ୍ମରଣ,
ଝଡ଼ଇ ବଜ୍ରହ୍ବବଳ ଲୋଡ଼ଇ ମରଣ,
ଅହେ, ଝଷରୂପଭବ,
ଝଟିଛି ଜୀବନ ଯାଉ ଗୁଣଗଣ ଭବ । ୯ ।
ନରଲୋକେ ସୁରଗୁରୁ-ଅଂଶ ଅବତାର,
ନ ରହିଲ ବନ୍ଧୁ ଭେଦ ଗଲ ସବତାର,
ଅହେ, ନନ୍ଦନବତ୍ସଳ,
ନ ଥାଏ ହୃଦୟେ ଅଣୁ ପ୍ରମାଣ ମତ୍ସର । ୧୦ ।
ଟଙ୍କଧର ରିପୁ ଅଦ ବାଧାଙ୍କି ଛଣିଲ,
ଟଙ୍କା ବନା ବଚନରେ ମାନସ କିଣିଲ,
ଅହେ, ଟଙ୍କିତପ୍ରବନ୍ଧ,
ଟଳପଡ଼ିଲ ଛୁଟାଇ ଦେଇ ଭବବନ୍ଧ । ୧୧ ।
ଠକ ବାଧ୍ୟ ବନ୍ଧ ଦେଲ ଏ ମନ୍ଦ ହୃଦକୁ,
ଠକିଛି ମୁଁ ନିଷ୍ଠୁର ଯେନ ବିଷାଦକୁ,
ଅହେ, ଠଣପଦ୍ମପାଦ,
ଠ ଆକାର ସୁବିଷଦ କାରଠ ସମ୍ପଦ । ୧୨ ।
ଡକାଇତ ନୁହଁଲ ତ କପାଁ ଛଡ଼ିଗଲ,
ଢକାଇ ତ ନେଲ ନାହିଁ ଥିଲା ଅମଙ୍ଗଳ,
ଅହେ, ଡରବିନାଶନ,
ଡମରୁଧର ପ୍ରିୟକୁ କଲ ଦରଶନ । ୧୩ ।
ଢଳଗଲା ସ୍ନେହସୁଧାନିଧି ବିଚ୍ଛେଦରେ,
ଢମପଣ ଦୂର ହେଲା ଜନ-ଅନାଦରେ,
ଅହେ, ଢକ୍କାବଜାଧୀର,
ଢଳ ଢଳ ନେତ୍ରେ ଯାର ହେଉଛି ଅଧୀର । ୧୪ ।

ନବଗ୍ରହ ବଳାବଳ ସାଧନ ବିବେଶି,
ନ ଥିଲେ କି ଲୋକେ ତୁମ୍ଭ ସଦ୍ଗୁଣ ହେବେ କି,
ଅହେ, ନବଶାସ୍ତ୍ରକାର,
ନମ୍ରଭାବ କେତେ ଥାଇଁ ପ୍ରଭୁ ଅଧିକାର । ୧୫ ।
ତନୁତ୍ୟାଗ କାଳେ ସେତ ନ ଥିଲି ପାଖରେ,
ତନୁପୁଣ୍ୟ ମୋର ମନ ନ ଯାଏଁ ଦୁଃଖରେ ।
ଅହେ, ତପସ୍ୱୀସମାନ,
ତଥ୍ୟତର ଅଟେ ଏକ ତବ ଅନୁମାନ । ୧୬ ।
ଥୟ ରହୁଥାଏ ମତି ଶ୍ରୀପତି ପୟରେ,
ଥରେ ହେଲେ ନ ଭୁଲଇ ଅନ ବିଷୟରେ,
ଅହେ, ସ୍ଥଳସିଦ୍ଧିକର,
ଥରଇ କୃତାନ୍ତ ଭୟେ ତନ୍ତ୍ରଜ୍ଞକଙ୍କର । ୧୭ ।
ଦରହାସ୍ୟ ମୃଦୁଭାଷ ମଧୁର ଭାରତୀ,
ଦନ୍ତପନ୍ତି କୁରୁବିନ୍ଦ କିରଣ ସ୍ଫୁରନ୍ତି,
ଅହେ, ଦକ୍ଷବୃନ୍ଦବର,
ଦମ ଶମରେ ତୋଷିଲ ଜଳଧିଜାବର । ୧୮ ।
ଧିରାଧରଧୀର ସିନ୍ଧୁ ଅଗାଧ ହୃଦୟ,
ଧିର ହୋଇଥାଏ ତହିଁ ପ୍ରେମସମୁଦୟ,
ଅହେ, ଧରଣୀମଣ୍ଡନ,
ଧରମ ପାଳନ ପାପ ପ୍ରତାପ ଖଣ୍ଡନ । ୧୯ ।
ନକ୍ଷତ୍ର ଯୁଗଳ ଯୋଗ ରବିଚନ୍ଦ୍ର ଗ୍ରହ,
ନୟନ ଗୋଚର କୃତେ ବିଶେଷ ଅଗ୍ରହ,
ଅହେ, ନରେଶବଂଶିକ,
ନଳଚରିତାଦ-କାବ୍ୟନାଟକ-ରସିକ । ୨୦ ।

ପରିଣତ କାଳଯାଏଁ ଏକତାନେ ବସି,
ପରିଶ୍ରମ କରୁଥାଅ ଏକାସନେ ବଶୀ,
ଅହେ, ପରହୃଦହାରୀ,
ପରମପୁରୁଷଧାମ ପ୍ରାସାଦ-ବିହାରୀ । ୨୧ ।
ଫକ୍କର-ବଇର-ମିଥ୍ୟା-ଲାଳସା-ରହିତ,
ଫରକ୍ଷ ଅଃଇ ଶୁଣ ଏ ଫସାରହିତ,
ଅହେ, ଫଳଗ୍ରନ୍ଥଦୁଣ,
ଫଣିଭବତନ୍ତ୍ର (୧) ଜ୍ଞାତା ଭଣନା ସଦ୍ଗୁଣ । ୨୨ ।
ବକ୍ତା ତୁମ୍ଭେ ବନ୍ଧୁ ତୁମ୍ଭେ ତୁମ୍ଭେ ଜ୍ଞାନଧନ,
କର୍ତ୍ତିଅଛ ଯାହା ଆହା ଶୁଣିଲି ନିଧନ,
ଅହେ, ବରବିଶାରଦ,
ବହୁଳତମ ନୀରଦ ଭେଦନ ଶରଦ । ୨୩ ।
ଭବେ ପଡ଼ିଅଛି ବୁଡ଼ି ବିଷୟ-ଜଳରେ,
ଭଉଁରୀପରି ଏ ମୋହ ଭ୍ରମାଏ ବଳରେ,
ଅହେ, ଭଗଛବତ୍ତମ,
ଭଗବାନ ପାଦପଦ୍ମ-ଭ୍ରମର-ସତ୍ତମ । ୨୪ ।
ମଞ୍ଜୁଳ ବାକ୍ୟ ଅବଳ ବଳ-ବସୁଧାରୁ,
ମହାପ୍ରଭୁ ଆହା ଚେଳଗଲେ ବସୁଧାରୁ,
ଅହେ, ମନୋଜ୍ଞପଣ୍ଡିତ,
ମହାମହୋପାଧ୍ୟାୟ ଉପାଧି ମଣ୍ଡିତ । ୨୫ ।
ଯଥପଥବତ ଅଥ ସ୍ୱସାଧ୍ୟ-ନିରତ,
ଯଦୁନାଥ ନାମଗୁଣ ଗୁଣ ଅବିରତ,
ଅହେ, ଯଶଶଶିଧର,
ଯତନ କର କପର ସୁତକୁ ଉଦ୍ଧର । ୨୬ ।

(୧) ଫଣିଭବତନ୍ତ୍ର—ବ୍ୟାକରଣ ।

ରଥରଜ୍ଜୁ ଧରି ବଡ଼ଦାଣ୍ଡରେ ଯିବାର,
ରମାପତି ମୁଖ ଦେଖି ପୁଲକ ହେବାର,
ଅହେ, ରଜତମଭଞ୍ଜ,
ରଜନୀ ଧବସ୍ମ ସ୍ତବ ହୃଦ ହୁଏ ଭଞ୍ଜ । ୨୭ ।
ଲକ୍ଷିତ ଉର୍ଦ୍ଧ୍ୱରେଖିକା ଶ୍ରୀପଦ ଯୁଗରେ,
ଲକ୍ଷଣବନ୍ତ ପୁରୁଷ ଗଲେ କି ବେଗରେ,
ଅହେ, ଲଳିତଚରିତ,
ଲଭେ ହେଲେ ଲଭିନାହିଁ ଏ ଜନ୍ମେ ଦୁରିତ । ୨୮ ।
ବପୁ ବିଦ୍ୟା ବାସୁଦେବ ଜ୍ଞାନ ଦାନ କରି,
ବର୍ଣ୍ଣନା କଲେ ନ ସରେ ସେ ଗୁଣନିକର,
ଅହେ, ବନଜଲୋଚନ—
ବଦନ ଦର୍ଶନେ ସଦା ପାପ ବିମୋଚନ । ୨୯ ।
ଶମନ ରଖିଛି କପାଁ ପ୍ରାଣ ଏ ପିଣ୍ଡରେ,
ଶତଧାର ନ ପଡ଼ଇ କାହିଁକି ମୁଣ୍ଡରେ,
ଅହେ, ଶରଣରକ୍ଷଣ,
ଶରମୂଳ ତହୁଁ ତବ ବୁଦ୍ଧି ସୁତୀକ୍ଷଣ । ୩୦ ।
ଷଟ୍‌ପଦପରି ଲୋଳ ମାଧବ ରସରେ,
ଷଡ଼ାନନ ସମବୀର ସାଧକ ବଶରେ,
ଅହେ, ଷଡ଼୍‌ବନ୍ଧୁ (୧) ବରତୀ,
ଷଡ଼ (୨) ଅରି କୃତ୍ତିଭବ ନାଶି ନ ପାରନ୍ତି । ୩୧ ।
ସନ୍ତତେ ସେବିବା ବାଞ୍ଛା ଥିଲା ମୋ ଚିତ୍ତରେ,
ସଙ୍ଗ ଛଡ଼ାଇଲ କାହିଁ ବିବେଧୀ ପ୍ରାନ୍ତରେ,
ଅହେ, ସନ୍ତଶିରୋମଣି,
ସହୃଦୟ ହୃଦମ୍ବୁଜ-ହାସେ ଦିନମଣି । ୩୨ ।

---

(୧) ନାରାୟଣ । (୨) କାମକ୍ରୋଧାଦି ଷଡ଼ରିପୁ ।

ହଟିଲ୍ଲ ମୋର ସ୍ୱକୃତ ଘୋଟିଲା ବିପଦ,
ହଜିଲ୍ଲ ହରଚନ୍ଦନ ମହାପାତ୍ର ପଦ,
ଅହେ, ହରଷକାରକ,
ହରିଭକ୍ତ ସୁକ୍ତ ଧୀର-କଣ୍ଠ-ଧାରକ । ୩୩ ।

କ୍ଷଣେ ହେଲେ ନ ବସୁରେଁ ଶୋକସ୍ରୋତେ ଭସେ,
କ୍ଷତ୍ରିୟକୁଳ ଅଧମ ପୀତାମ୍ବର ଭଣେ,
ଅହେ, କ୍ଷମାଶୀଳସାର,
କ୍ଷମାପଛ ଅନୁରାଗ ପାରସ କାସାର । ୩୪ ।

ସ୍ୱୀୟ ପିତୃଦେବଙ୍କର ମୃତ୍ୟୁ ଉପଲକ୍ଷରେ ସ୍ୱର୍ଗୀୟ ପୀତାମ୍ବର ସିଂହ ସାମନ୍ତଙ୍କ କର୍ତ୍ତୃକ ରଚିତ ସଂସ୍କୃତ ଶ୍ଳୋକାବଳୀ । ଏହି ଶ୍ଳୋକ ସମୂହ ପୀତାମ୍ବର ପ୍ରତ୍ୟହ ପୂର୍ବାହ୍ନରେ ନିତ୍ୟକର୍ମ ସମୟରେ ପାଠ କରୁଥିଲେ ।

ସିଦ୍ଧାନ୍ତ ବୋଦ୍ଧର ଲସଦ୍ଧରିଭବ ହୃଦ୍ୟେ
ଶ୍ରୀଚନ୍ଦ୍ରଶେଖରହରୌ ଶିବଦେଽନବଦ୍ୟେ ।
ଦାକ୍ଷିଣ୍ୟମାନ ବିନୟପ୍ରିୟ ବାଙ୍‍ମନୋଜ୍ଞ—
କାବ୍ୟାର୍ଥଶାସ୍ତ୍ର ରଚନାଧୃତୟୋ ଜୟନ୍ତି । ୧ ।

ଉତ୍କଳାନୁବାଦ—ସିଦ୍ଧାନ୍ତଜ୍ଞ ଈଶ୍ୱରଭକ୍ତ ମଙ୍ଗଳଦାୟୀ ସର୍ବଥା ଅନିନ୍ଦନୀୟ ଶ୍ରୀ ଚନ୍ଦ୍ରଶେଖରଙ୍କଠାରେ ସାରଲ୍ୟ, ମହତ୍ତ୍ୱ, ନମ୍ରତା, ପ୍ରିୟବାକ୍ୟ, ମନୋହର କାବ୍ୟାର୍ଥ, ଗ୍ରନ୍ଥରଚନା ଓ ଧୈର୍ଯ୍ୟ, ଏମାନେ ସତତ ବିରାଜିତ ଥାନ୍ତି । ୧ ।

ଯେନାମକ୍ଷିପ୍ରସ୍ରଣପ୍ରଭୂଷସବେଶଙ୍କସ୍ରଭବୋଲ୍ଲତେ
ର୍ଯନ୍ନୋନ୍ମୀଲଛ ଲକ୍ଷ୍ୟତେ ଚ ଭୁବନାମ୍ଭୋଜବ୍ରଜୋ ଭୂରଶଃ
ମାର୍ତ୍ତଣ୍ଡାତ୍ମଜ ଚଣ୍ଡ ତାପଦମନେ ଯାପ୍ୟଦ୍ରସେ ନିର୍ମଲେ
ସ୍ଥୀତେ ଚନ୍ଦ୍ରିଣି ତତ୍ପଦାବ୍ଜରଜସା ପୂତୋଽସ୍ମି ପୀତାମ୍ବରଃ ।୨।

ଅନୁବାଦ—ଯେଉଁ ପୁରାଣ ପୁରୁଷ ଯମଦୂତମାନଙ୍କର ବଳବିନାଶୀ ଅଟନ୍ତି ଓ ଯେଉଁ ସର୍ବୋତ୍କୃଷ୍ଟ ସୂର୍ଯ୍ୟଜାତ ପ୍ରଖର ସନ୍ତାପର ଅପହାରୀ ଅଟନ୍ତି; ଯାହାଙ୍କଠାରେ ଭକ୍ତିରସର ସଞ୍ଚାର ହୁଏ ଓ ଯହିଁରେ ଜଳ ପୂର୍ଣ୍ଣ ଥାଏ;ଯେ ଦୋଷଶୂନ୍ୟ ଅଟନ୍ତି ଓ ଯେ ସ୍ୱଚ୍ଛ ଅଟନ୍ତି; ଯେ ମହତ୍ ଅଟନ୍ତି ଓ ଯେ ବିସ୍ତୃତ ଅଟନ୍ତି; ସୁଦର୍ଶନଚକ୍ର ଯାହାଙ୍କର ଆୟୁଧ ଅଟେ ଓ ଯହିଁରେ ଚକ୍ରବାକମାନେ ଥାନ୍ତି ଏବଂ ଯନ୍ମଧ୍ୟରେ ସଂସାରରୂପ ପଦ୍ମସମୂହ ବନ୍ଧୁବାର ଉନ୍ମୀଳିତ ଓ ଲୀନ ହୁଏ; ସେହି ଜଗଦୀଶ୍ୱରରୂପ ସରୋବର ମଧ୍ୟରେ ଯେଉଁ ମହାତ୍ମା ନିଜର ଭାବୋତ୍କର୍ଷ ହେତୁରୁ ମଗ୍ନ ହୋଇଥିଲେ, ତାହାଙ୍କ ପାଦପଦ୍ମ-ଧୂଳିଦ୍ୱାରା ପୀତାମ୍ବର ପବିତ୍ର ହୋଇଅଛି । ୨ ।

ଶ୍ରୀମନ୍ନୀଳାଚଳବିଳାସୀନ୍ଦିରାହୃଦୟକୈରବେନ୍ଦୁପଦାମୃତନିସ୍ୟନ୍ଦ-ପାନମୋଦମାନମାନସସୁଲୋଚନସ୍ୟ ନିଖିଳ ଜ୍ୟୋତିଃସନ୍ଦର୍ଭସୌରଭଗର୍ଭାଗାରନିର୍ଭରବିଳାସିନୋ ବିବିଧସ୍ମୃତିମତମୀମାଂସାପ୍ରତିପାଦିତ ଧର୍ମମର୍ମବିଦୋ ବ୍ୟାକରଣପ୍ରକରଣାଳଙ୍କରଣପୁରାଣସାରପାରଦୃଶ୍ୱନଃ-ଶମଦମତିତିକ୍ଷାଦିବାଞ୍ଛିତ-ସ୍ୱୋତ୍କଳକୁଳୋତ୍ଥ ଲହାଟକଙ୍କଣାୟୁତ-ମହୀପାଳ-କୁଳହାରକନାୟକସ୍ୟ ଶ୍ରୀମତୋ ହରିଚନ୍ଦନମହାପାତ୍ରମହାମହୋପାଧ୍ୟାୟଚନ୍ଦ୍ରଶେଖରସାମନ୍ତସିଂହ ବର୍ମଣ ସ୍ତୁତିଭିର୍ବ ପ୍ରଥମଂ ମାଂ ମହାଜନାଃ ପରିଚିନ୍ୱନ୍ତୁ । ଭୋ ଭୋ ତାତପାଦସହୃଦୟଶିରୋମଣୟଃ, ତଦ୍ବିରହଦହନଦଗ୍ଧହୃଦୟେନ ଯଦ୍-ବିଳପିତଂ ତତ୍ସଦୟଂ ଶୃଣ୍ୱନ୍ତୁ ।

ଅନୁବାଦ—ଯାହାଙ୍କର ମାନସରୂପ ଚକୋର ଶ୍ରୀମନ୍ନୀଳାଚଳ-ବିଳାସିନୀ ଲକ୍ଷ୍ମୀଙ୍କର ହୃଦୟ-କୁମୁଦର ଚନ୍ଦ୍ରସ୍ୱରୂପୀ ପରମେଶ୍ୱରଙ୍କର ପାଦନିଃସୃତ ଅମୃତ ପ୍ରବାହ ପାନରେ ଆନନ୍ଦିତ ହୁଏ, ଯେ ସମଗ୍ର ଜ୍ୟୋତିଃ ଶାସ୍ତ୍ରର ତତ୍ତ୍ୱରୂପ ଗମ୍ଭୀର ଗୃହରେ ସର୍ବଦା ବିଳାସ କରନ୍ତି, ଯେ ବିବିଧ ସ୍ମୃତିମତର ମୀମାଂସାଦ୍ୱାରା ପ୍ରତିପାଦିତ ଧର୍ମର ମର୍ମଜ୍ଞ ଅଟନ୍ତି, ଯେ

ବ୍ୟାକରଣ, ପ୍ରକରଣ, ଅଳଙ୍କାର ଓ ପୁରାଣମାନଙ୍କର ପାରଗାମୀ ଅଟନ୍ତି, ଯେ ଶମଦମତିତିକ୍ଷାଦିରେ ବାସିତ ଅଟନ୍ତି ଓ ଯେ ଉତ୍କଳ ଚୂଡ଼ାର ଉଜ୍ଜ୍ୱଳ ସ୍ୱର୍ଣ୍ଣ କଳସ ତୁଲ୍ୟ ରାଜବଂଶର ଶ୍ରେଷ୍ଠ ହୀରକ ସ୍ୱରୂପ ଅଟନ୍ତି; ସେହି ଶ୍ରୀଯୁକ୍ତ ହରିଚନ୍ଦନମହାପାତ୍ର ମହାମହୋପାଧ୍ୟାୟ ଚନ୍ଦ୍ରଶେଖର ସାମନ୍ତସିଂହ ବର୍ମାଙ୍କର ମୁଁ ଜ୍ୟେଷ୍ଠପୁତ୍ର ହୋଇଥିବାରୁ ମହାଜନମାନଙ୍କ ନିକଟରେ ପରିଚୟ ଦେଉଅଛି ।

ହେ ତାତପାଦ ସହୃଦୟବୃନ୍ଦ, ତଦୀୟ ବିରହାନଳଦ୍ୱାରା ଦଗ୍ଧ-ହୃଦୟ ହୋଇ ଯେଉଁ ବିଳାପ କରୁଅଛି ଆପଣମାନେ ସଦୟ ହୋଇ ତାହା ଶ୍ରବଣ କରନ୍ତୁ ।

ଅୟେ ତାତପ୍ରାୟୋ ମୟି ତବ କୃପା ସମ୍ପ୍ରତି କଥଂ
ବିହାୟୈନଂ ଦାନଂ ସପଦି ଗତବାନ୍ ମାଧବପୁରୀମ୍ ।
ବ୍ରୁବେ ଶୋକାକ୍ରାନ୍ତଃ ପ୍ରବଲ ବିରହବ୍ୟାଧିତମନା
ଜନୋ ଦୈବାଧୀନୋ ଜଗତିହ ନ ଭର୍ତ୍ସ୍ୟୋଽସ୍ମି ଭବତା । ୧ ।

ଅନୁବାଦ—ହେ ଜ୍ଞାନମୂର୍ତ୍ତି ପିତଃ ! ମୋହଠାରେ ଆପଣଙ୍କର ବିଶେଷ କୃପା ଥିଲା । ସମ୍ପ୍ରତି ଏହି ଦାନକୁ ପରିତ୍ୟାଗ କରି ହଠାତ୍ କିପରି ମାଧବଙ୍କ ନିକଟକୁ ପ୍ରସ୍ଥାନ କଲ ? ମୁଁ ପ୍ରବଳବିରହାକୁଳିତମନରେ ଶୋକାକ୍ରାନ୍ତ ହୋଇ ଏହା କହୁଅଛି । କିନ୍ତୁ ଆପଣ ମୋତେ ଭର୍ତ୍ସନା କରି ନାହାନ୍ତି, ଯେହେତୁ ଲୋକ ଦୈବାଧୀନ ଅଟେ । ୧ ।

ଋତଂ ସ୍ନେହାଭିବ୍ୟକ୍ତଂ ମୃଦୁସୁମଧୁରଂ ଭୂଷିତପଦଂ
ତଥା ତାରଂ ଦୂରେ ବସତି ମୟି ଗୃହାନକବଚନମ୍ ।
ଜଗନ୍ନାଥ-ବ୍ରହ୍ମାମୃତ-ପରମତତ୍ତ୍ୱପ୍ରକଥନଂ
ବିଶୁଦ୍ଧାତ୍ମନ୍ ଧ୍ୟାତ୍ୱା ବଦନମପି ପଶ୍ୟାମି ଭବତଃ । ୨ ।

ଅନୁବାଦ—ହେ ବିଶୁଦ୍ଧାତ୍ମନ୍, ଆପଣଙ୍କର ସତ୍ୟ, ସ୍ନେହଯୁକ୍ତ କୋମଳ ଓ ସୁମଧୁର ବଚନ, ମୁଁ ଦୂରରେ ଥିବା ସମୟରେ ମୋହପ୍ରତି ଉକ୍ତ ଆହ୍ୱାନବାକ୍ୟ ଓ ଜଗନ୍ନାଥ ବ୍ରହ୍ମଙ୍କର ଅମୃତମୟ ପରମତତ୍ତ୍ୱ କଥନ ପ୍ରଭୃତି ସ୍ମରଣ କରି ସମ୍ପ୍ରତି ଆପଣଙ୍କର ଶ୍ରୀମୁଖ ଦର୍ଶନ କରୁଅଛି । ୨ ।

କଲୌକାଲେ ଘୋରେ ଦୁରିତ ରହିତୋ ଧର୍ମ ଭରିତ
ସ୍ୱବାକ୍ୟୈର୍ଧୀରାଣାଂ ଭ୍ରମସମୁଦୟଭ୍ରଂଶନକର ।
ଭବାନ୍ ଭୂବେଶ୍ୟା ଭବୈଃ ସ୍ୱରଘୁରସୌ କିଂ ନୃପକୁଲେ
ସମୁଦ୍‌ଭୂତଃ କିମ୍ବା ମନୁଜବପୁରାସାଦ୍ୟ ମିହିରଃ । ୩ ।

ଅନୁବାଦ—ଏହି ଘୋର କଳିକାଳରେ ଆପଣଙ୍କୁ ନିଷ୍ପାପ, ପରମଧାର୍ମିକ ଓ ନିଜବାକ୍ୟଦ୍ୱାରା ପଣ୍ଡିତମାନଙ୍କର ଭ୍ରମବିନାଶକାରୀ ଦେଖି ଏହି ରାଜବଂଶରେ କୁହସ୍ତି ଜାତ ହୋଇଛନ୍ତି କି ? କିମ୍ବା ସୂର୍ଯ୍ୟ ମାନବଶରୀର ଧାରଣ କରି ଅବତୀର୍ଣ୍ଣ ହୋଇଅଛନ୍ତି କି ? ସାଧୁମାନେ ଏହା ଭାବନା କରିବେ । ୩ ।

ଅନୁତ୍ସାହଂ ଚେତଃ ସଦନ ମପଯାତୋତ୍ସବ ମିଦଂ
ଶ୍ରିୟାଶୂନ୍ୟଂ ଗାତ୍ରଂ ପ୍ରଣୟପରିହୀଣ ପରିଜନଃ ।
ଜଗନ୍ନାଥଭକ୍ତାବ୍ଧୌ ଭବତି ବଲୟଂ ଯାତି ବତ ହା
ହୃଦମ୍ଭୋଜାସୀନୋ ହରିରପି ମନାଗ୍‌ଭୂଦ କରୁଣଃ । ୪ ।

ଅନୁବାଦ—ଆପଣଙ୍କର କୀର୍ତ୍ତି ଜଗଦ୍‌ବିଦିତ ଅଟେ । ଅହା ! ଆପଣ ବଳୟପ୍ରାପ୍ତ ହେବାରୁ ମୋହର ଚିତ୍ତ ଅନୁତ୍ସାହ ହୋଇଅଛି ଏବଂ ଗୃହ ଉତ୍ସବଶୂନ୍ୟ ହୋଇଅଛି, ଆମ୍ଭମାନଙ୍କର ଶରୀରସବୁ ଶ୍ରୀହୀନ ହୋଇଅଛି ଓ ଭୃତ୍ୟବର୍ଗ ସ୍ନେହବିହୀନ ହୋଇଅଛନ୍ତି । ମଦୀୟ ହୃତ୍‌ପଦ୍ମାସୀନ ହରି ମଧ୍ୟ ମୋହପ୍ରତି ନିର୍ଦ୍ଦୟ ହୋଇଅଛନ୍ତି । ୪ ।

କର୍ବୈରସ୍ୟ ନରସ୍ତବୈରିବସୱାରସ୍ୟ ସାରସ୍ୟତେ
ଧୀଗ୍ରେସର ରସ୍ୟପୂତଯଶସଃ ଶ୍ରୀନାଥକସ୍ୟାପ୍ୟନଃ ।
ଶୁଶ୍ରୂୟନ୍ତେ ଶରଦନ୍ଦୁମଣ୍ଡଳମିଳଚ୍ଛାନ୍ଦ୍ରୀଭ୍ବଚନ୍ଦ୍ରିକା—
ସନ୍ଦୋହୋଜ୍ଜ୍ୱଳକାନ୍ତୟୋ ଜଳନଧିଂ ଲଲଂଘ୍ୟନ୍ତୋ ଗୁଣାଃ ।୫।

ଅନୁବାଦ—ହେ ଧୀବ୍ରଗଣ୍ୟ, ଅପଣ ଶତ୍ରୁଶୂନ୍ୟ, କାମକୋଧାଦ ଷଡ୍‌ରିପୁର ବନାଶକାରୀ, ପବତ୍ରଯଶା ଓ ଈଶ୍ୱରନଷ୍ଠ ଅଟନ୍ତି ଏବ ଶରତ୍କାଳୀନ ଚନ୍ଦ୍ରକରଣସମୂହତୁଲ୍ୟ ଉଜ୍ଜ୍ୱଳକାନ୍ତବଶିଷ୍ଟ ଅପଣଙ୍କର ଗୁଣମାନେ ସମୁଦ୍ରର ଅପରପାର୍ଶ୍ୱରେ ଶୁଣାଯାଉଅଛନ୍ତି । ୫ ।

ବ୍ୟକ୍ତୀଭୂତ ଖଗୋଳଭୂମିବଳୟଃ ସ୍ୱଚ୍ଛାକୃତଭର୍ବ୍ୟକୃ—
ଚ୍ଛ୍ରୀମଙ୍ଗଳକୃତାକୃତଃ ସୁଘଟିତ ସ୍ଫାରଃ ପ୍ରକାଶାନ୍ୱିତଃ ।
ନାନାଶାସ୍ତ୍ରବଦସ୍ତବୈଷ ଜଗତୀଚକ୍ରେ ଜୟତ୍ୟୁମ୍ୟତେ
ସ୍ଫୂର୍ଜତ୍ସୂର୍ଯ୍ୟାରୁଷାରଭତ୍ରୁଦଗଣଃ ସିଦ୍ଧାନ୍ତବାଗ୍ଦର୍ପଣଃ । ୬ ।

ଅନୁବାଦ—ଯେଉଁ ବୃହତ୍ ସିଦ୍ଧାନ୍ତଦର୍ପଣରେ ଖଗୋଳ ଓ ଭୂଗୋଳ ବଷୟ ବର୍ଣ୍ଣିତ ହୋଇଅଛି ଓ ଯେଉଁ ପ୍ରଶସ୍ତଦର୍ପଣରେ ଆକାଶମଣ୍ଡଳ ଓ ଭୂମଣ୍ଡଳ ପ୍ରକାଶିତ ହୁଏ; ଯେଉଁ ଗ୍ରନ୍ଥ ନର୍ଦୋଷ ଅଟେ ଓ ଯେଉଁ ଦର୍ପଣ ସ୍ୱଚ୍ଛ ଅଟେ; ଯେଉଁ ଶାସ୍ତ୍ର ବଶୁଦ୍ଧବ୍ୟବସ୍ଥା ଦାନ କରିବାରୁ ମଙ୍ଗଳକାରୀ ଅଟେ ଓ ଯେଉଁ ଦର୍ପଣର ମଙ୍ଗଳକରତ୍ୱ ଶାସ୍ତ୍ରାନୁମୋଦତ ଅଟେ; ଯେଉଁ ଗ୍ରନ୍ଥ ବାଗ୍‌ବଭବଶାଳୀ ନକ୍ଷତ୍ରଦ୍ରଷ୍ଟା ଜ୍ୟୋତଷିକମାନଙ୍କଦ୍ୱାରା ଅଦୃତ ଅଟେ ଓ ଯେଉଁ ଦର୍ପଣ ସୁନ୍ଦର ଉଜ୍ଜ୍ୱଳ ଜଳୀକାଯୁକ୍ତ ନେତ୍ରବଶିଷ୍ଟ ଲୋକମାନଙ୍କଦ୍ୱାରା ଅଦୃତ ହୁଏ; ଯେଉଁ ଶାସ୍ତ୍ର ବଶୁଦ୍ଧରୂପେ ରଚତ ହୋଇଅଛି ଓ ଯେଉଁ ଦର୍ପଣ ଉତ୍ତମରୂପେ ନର୍ମିତ ହୋଇଥାଏ; ଯେଉଁ ଗ୍ରନ୍ଥ ଦ୍ୱାବଂଶପ୍ରକାଶଯୁକ୍ତ ଅଟେ ଓ ଯେଉଁ ଦର୍ପଣରେ ଅବୃତ

ଉତ୍ତମରୂପେ ପ୍ରକାଶିତ ହୁଏ; ଯେଉଁ ଗ୍ରନ୍ଥରେ ସୂର୍ଯ୍ୟ ଓ ଚନ୍ଦ୍ରର ଦ୍ୱାଦଶରାଶି-ପରିବର୍ତ୍ତନ ପ୍ରକାଶିତ ହୁଏ ଏବଂ ଯେଉଁ ଦର୍ପଣରେ ସୂର୍ଯ୍ୟ, ଚନ୍ଦ୍ର ଓ ନକ୍ଷତ୍ରସମୂହ ପ୍ରକାଶିତ ହୁଅନ୍ତି, ନାନାଶାସ୍ତ୍ରବେତ୍ତା ଆପଣଙ୍କର ସେହି ସିଦ୍ଧାନ୍ତବାକ୍ୟରୂପ ଦର୍ପଣ ଜଗନ୍ମଣ୍ଡଳରେ ଚାକ୍ଚକ୍ୟମାନ ହୋଇଅଛି । ୬

ଅଶେଷବିଦ ଭକ୍ତତାପରିଜନେଽନୁକମ୍ପୋଦୟୋ
ରିପୌ ସୁହୃଦି ତୁଲ୍ୟତା ବିପୁଲସୌଖ୍ୟଦୁଃଖେ ସମେ ।
କୃତାଗସି ସହିଷ୍ଣୁତା କୁଟିଳଚେତସି ସ୍ୱାର୍ଜବଂ
ମଲୀମସତରେ ଶୁଚୌ ବପିନରେଽନୁରାଗସ୍ତବ । ୭ ।

ଅନୁବାଦ—ହେ ପିତଃ, ଆପଣଙ୍କର ଈଶ୍ୱରଙ୍କଠାରେ ଭକ୍ତି, ଭୃତ୍ୟବର୍ଗଠାରେ ଅନୁକମ୍ପା, ଶତ୍ରୁ ଓ ମିତ୍ରଠାରେ ସମାନ ଜ୍ଞାନ, ସୁଖ ଓ ଦୁଃଖରେ ସମଭାବ, ଅପରାଧୀ ବ୍ୟକ୍ତିଠାରେ ସହିଷ୍ଣୁତା, କୁଟିଳବ୍ୟକ୍ତିଠାରେ ସରଳତା ଏବଂ ପରିଷ୍କୃତ ଓ ଅପରିଷ୍କୃତ ଉଭୟ ବ୍ୟକ୍ତିଠାରେ ସମାନ ଅନୁରାଗ ଦେଖାଯାଏ । ୭ ।

ପ୍ରସନ୍ନତାଭୃଦ୍ଭବଦାସ୍ୟଚନ୍ଦ୍ରମଃସ୍ରବତ୍ସୁଧାପୂରଧୁରନ୍ଧରାଗିରଃ ।
ବିଶୁଦ୍ଧବର୍ଣ୍ଣା ମମକର୍ଣ୍ଣକୂପଗାଃ ସ୍ମୃତାସ୍ତତାଃ ସମ୍ପ୍ରତିବୋଧୟନ୍ତିମାମ୍ । ୮ ।

ଅନୁବାଦ—ବିଶୁଦ୍ଧବର୍ଣ୍ଣଯୁକ୍ତ ଭବଦୀୟ ପ୍ରସନ୍ନମୁଖଚନ୍ଦ୍ରନିଃସୃତ ଅମୃତମୟ ଯେଉଁ ବାକ୍ୟାବଳୀ ମୋହର କର୍ଣ୍ଣବିବରରେ ପ୍ରବିଷ୍ଟ ହୋଇଥିଲେ, ସମ୍ପ୍ରତି ସେମାନେ ସ୍ମୃତିପଥାରୂଢ଼ ହୋଇ ମୋତେ ଜାଗ୍ରତ କରି ଦେଉଅଛନ୍ତି । ୮ ।

ଯୁଗେଽସ୍ମିନ୍ ଦୁରନ୍ତର ପୁଣ୍ଡ୍ରାଭବଦୀୟଦ୍
ଭବତ୍ପାଦପଦ୍ମଦ୍ୱୟାଯୋଗଦାନା ।
ପ୍ରକମ୍ପାକୁଳା ସର୍ବସମ୍ବଳକର୍ତ୍ତ୍ରୀ
ଦ୍ୱିଧାଭୂଦ୍ଧରାଧୀର ନବାଣ ବଙ୍ଗ । ୯ ।

ଅନୁବାଦ—ହେ ଧୀର, ଏହି କଳିଯୁଗରେ ଦୁର୍ବ୍ୟବହାରପୂର୍ଣ୍ଣା ଧରିତ୍ରୀଦେବୀ ଆପଣଙ୍କର ପାଦପଦ୍ମ ବିଯୋଗ ହେବାର ଜାଣିପାରି ନିତାନ୍ତ ଦୁଃଖିତା ହୋଇ ଭୂମିକମ୍ପଛଳରେ ପ୍ରକମ୍ପିତା ହୋଇ ଘର୍ଘରଧ୍ୱନିରୂପ କ୍ରନ୍ଦନପୂର୍ବକ ବିଘୂର୍ଣ୍ଣା ହୋଇଥିଲେ ।*

ନ ଦୁଯ୍ୟେ ଭୋ ତାତ ହତମପି ଧନଂ ଯୌବନବୟଃ
ସୁଖଂ ତେଜୋ ଧୈର୍ଯ୍ୟଂ ଭ୍ରମଣମପି ଚେତୋ ବିହରଣମ୍ ।
ଜଗତ୍ପ୍ରେମାବାସେ ତ୍ୱୟି ଚଳତି ସୁଧାପଡପଦଂ
ସ୍ମୃତପ୍ରାପ୍ୟୋଦେହୋ ଭରଭବସଦୈବ ବ୍ୟଥୟତି । ୧୦ ।

ଅନୁବାଦ—ହେ ତାତ ! ଧନ, ଯୌବନ, ବୟସ, ସୁଖ, ତେଜ, ଧୈର୍ଯ୍ୟ, ଉଦ୍ୟାନଭ୍ରମଣ ଓ ମନୋବିନୋଦ ନଷ୍ଟ ହେଲା ବୋଲି ମୁଁ ଦୁଃଖିତ ହେଉନାହିଁ । କିନ୍ତୁ ଜଗତ୍ପ୍ରେମାଧାରସ୍ୱରୂପ ଆପଣ ଶ୍ରୀକୃଷ୍ଣ ଚରଣାରବିନ୍ଦକୁ ପ୍ରାପ୍ତ ହେଲା ପରେ ଯାହା ମୋହର ଦେହ ମୃତତୁଲ୍ୟ ହୋଇ ରହିଅଛି ତାହାହିଁ ଭାରବତ୍ ସର୍ବଦା ବ୍ୟଥା ଦେଉଅଛି । ୧୦ ।

ଗତେ ବୈକୁଣ୍ଠାଖ୍ୟଂ ପଦମଜିତ ପାଦାମ୍ବୁଜରସା
ଦଶେଷାଘଂ ହିତ୍ୱାପିତରି ମମ ହାହା ସବିତରି ।
ତମୋରାଶିସ୍ତାସୀତ୍ତ୍ୱଦୟଗଗନାଚ୍ଛାଦନପଟୁଃ
ଖଳୋଲୂକାଳାପୈଃ ଶ୍ରବଣବିବରଂ ଖାଳତମଭୂତ୍ । ୧୧ ।

ଅନୁବାଦ—ସୂର୍ଯ୍ୟସ୍ୱରୂପ ମୋହର ପିତା ଈଶ୍ୱର ଚରଣାରବିନ୍ଦ ରସପାନଦ୍ୱାରା ଅଶେଷ ପାପ ତ୍ୟାଗ କରି ବୈକୁଣ୍ଠକୁ ଗମନ କଲାରୁ ଅଜ୍ଞାନାନ୍ଧକାରସମୂହ ହୃଦୟାକାଶକୁ ଆଚ୍ଛାଦନ କଲା ଏବଂ ଖଳରୂପୀ ଉଲୁକମାନଙ୍କର କୋଳାହଳଦ୍ୱାରା କର୍ଣ୍ଣକୁହର ପୂର୍ଣ୍ଣ ହେଲା । ୧୧ ।

* ସାମନ୍ତଙ୍କ ମୃତ୍ୟୁର ଦୁଇମାସ ପୂର୍ବରୁ ଘୋର ଭୂମିକମ୍ପ ହୋଇଥିଲା ।

ଇଷ୍ଟଜନକ ବିଯୋଗଜାତଶୋକଂ
ସମୁଦିତଦୁର୍ବିଧିଖିନ୍ନବନ୍ଧୁଲୋକମ୍ ।
ସ୍ୱପଦସରସିଜାଙ୍ଘ୍ରିଦାନାତ୍
ନୟତୁ ପିତୁଃ ସବିଧଂ ଧରାଧିନାଥଃ । ୧୨ ।

ଅନୁବାଦ—ମୁଁ ଏହିପରି ପିତୃବିୟୋଗ ହେତୁରୁ ଅତ୍ୟନ୍ତ ଶୋକାକୁଳ ହୋଇଅଛି ଏବଂ ମଦୀୟ ଦାରିଦ୍ର୍ୟ ବଶତଃ ପରିଜନମାନେ କ୍ଲେଶ ଭୋଗ କରୁଅଛନ୍ତି । ଜଗଦୀଶ୍ୱର ମୋତେ ସ୍ୱପାଦ ବନ୍ଧ ପ୍ରଦାନ କରି ମତ୍ପିତାଙ୍କ ନିକଟକୁ ଘେନିଯାନ୍ତୁ, ଏହାହିଁ ପ୍ରାର୍ଥନା କରେଁ । ୧୨ ।

ସାମନ୍ତ ଚନ୍ଦ୍ରଶେଖରଙ୍କର ମାନବଲୀଳା ସମ୍ବରଣ ପରେ ତଦୀୟ ମଧ୍ୟମ ପୁତ୍ର ଶ୍ରୀଯୁକ୍ତ ଗଦାଧର ସିଂହ ସାମନ୍ତଙ୍କ କଳ୍ପିତ ରଚିତ—

## ଶୋକ-ଶତକ

ଶ୍ରୀ ନୀଳଭୁଧର— ପ୍ରଭୁପାଦ ଅର—
ବିନ୍ଦ-ମିଳନ ହେ ତାତ ।
ସ୍ୱର୍ଗେ ଥିଲ ରହି ନରଦେହ ବହି
ମର୍ତ୍ତ୍ୟରେ ହୋଇଲ ଜାତ । ୧ ।
ଉତ୍କଳମାତାର ତୁମ୍ଭେ ଏକା ସାର
ସୁତ ବୋଲୁଛନ୍ତି ଜନେ ।
ମୁଁ ଅଧମ ପୁତ୍ର ତୁମ୍ଭର ପବିତ୍ର
ଚରିତ ଶଲିଭି ମନେ । ୨ ।
ଖଣ୍ଡପଡ଼ାନର ସପ୍ତମ ନୃବର
ନୃସିଂହ ଭ୍ରମରବର ।
ତାହାଙ୍କର ସୁତ ଶ୍ୟାମବନ୍ଧୁ ହୁତ—
ବଦ୍ୟ ସେ ପିତା ତୁମ୍ଭର । ୩ ।

ଧବଳକୋଟେଶ୍ୱର— ବଂଶଜା ତୁମ୍ଭର
ଜନମ ଯେ ତାଙ୍କୁ ପିତା ।
ପୁଷ୍ପଦରଶନ ପୂର୍ବୁ ଦେଇ ମନ
କରାଇଲେ ପରିଣୀତା । ୪ ।
ଅନୁଗୁଳ ରାଜ୍ୟ— ଧୃପଙ୍କ ବଂଶଜା
ତୁମ୍ଭ ଜାୟା ସେ ମୋ ମାତା ।
ଶାଶୁ ବୋହୂଙ୍କର କ୍ରମରେ କହର
ନାମ ବିଷ୍ଣୁମାଳୀ ସୀତା । ୫ ।
ବହୁତ ଦୁହିତା ଜନ୍ମିବାରୁ ମାତା
କରୁଥାନ୍ତି ନାନା ବ୍ରତ ।
ହରୁଥାନ୍ତି ଅଛ ଦୁଃଖେ ଦିନ ରାତି
ସ୍ମରୁଥାନ୍ତି ଉମାକାନ୍ତ । ୬ ।
ଦିନେ ରାମେଶ୍ୱର* ମହା ଶମ୍ଭୁଙ୍କର
ଶକ୍ତ ସମୀପ ଅଣ୍ଡାଳ ।
ଗୋଟିଏ ଚକ୍କଣ ସ୍ଥୂଳ ଶିଳାକଣ
ପାଇ ତାହା ଦେଲେ ଗିଳ । ୭ ।
ଭାବିଲେ ମୋହର ଶୁଣିଲେ ଗୁହାର
କୈଳାସ-ବିହାରୀ ଏବେ ।
ହେଉଛୁ ପରତେ ଦୟା କର ମୋତେ
ବାଳକରତ୍ନକୁ ଦେବେ । ୮ ।
କିଛି ଦିନ ପରେ ତାହାଙ୍କ ଉଦରେ
ଅପଣ ଯେ କଲ ଘର ।

* ଖଣ୍ଡପଡ଼ାର ଅନ୍ତର୍ଗତ ଗଡ଼ଠାରୁ ପ୍ରାୟ ଦୁଇକୋଶ ଦୂରରେ ଅବସ୍ଥିତ ଝୁଣ୍ଟପଡ଼ା ନାମକ ଗ୍ରାମରେ ରାମେଶ୍ୱର ଶିବଲିଙ୍ଗ ବିଦ୍ୟମାନ ।

ଯେଣୁ ପୂର୍ଣ୍ଣକାମ        ତେଣୁ ତୁମ୍ଭ ନାମ
ହୋଇଲା ଚନ୍ଦ୍ରଶେଖର । ୯ ।
ଅହେ ମହାଗୁରୁ,        ନଷ୍ଟ ହୋଇବାରୁ
ତୁମ୍ଭ ଉପରେ ସନ୍ତତ ।
ଦେଶ ସ୍ୱିତ ଯେତେ        ଜନକ ଜନନୀ
ପଠାଣିନାମେ ଡାକନ୍ତି । ୧୦ ।
ପୌଗଣ୍ଡ ବୟସେ        ପିତାଙ୍କର ପାଶେ
ଉତ୍ସୁକମାନସେ ବସି ।
ପ୍ରଶ୍ନ କରି ତାଙ୍କୁ        ଗ୍ରହ ନକ୍ଷତ୍ରଙ୍କୁ
ଚିହ୍ନୁଥାଅ ପ୍ରତି ନିଶି । ୧୧ ।
ପାଠେ ଅତି ଶ୍ରାନ୍ତ        ଦେଖି ବୋଲୁଥାନ୍ତି
ତୁମ୍ଭ ମାତା ଗେଲେ ଗେଲେ ।
ଆସ ମୋର ବାବୁ        ବେଗୀ ହୋଇଯିବୁ
ଖେଳ ତୁ ଟିକଏ ହେଲେ । ୧୨ ।
କ୍ରମେ କ୍ରମେ ଅଙ୍କ        ପଢ଼ିବାରେ ରଙ୍କ
ହୋଇଲା ତୁମ୍ଭର ଚିତ୍ତ ।
ଲୀଳାବତୀ ବୀଜ—        ଗଣିତରୁ ନିଜ
ଶକ୍ତିରେ କଲ ଅଯୁତ । ୧୩ ।
ପ୍ରସିଦ୍ଧ ଶ୍ରୀପତି        ଜାତକ ପଦ୍ଧତି
ସାଧନ ବିଧି ଜାଣିଲ ।
ପ୍ରଧାନ ମୁହୂର୍ତ୍ତି        ଗ୍ରନ୍ଥାଦିର ତତ୍ତ୍ୱ
ବୁଦ୍ଧିରେ ବାନ୍ଧିଅଣିଲ । ୧୪ ।
ହେଲ କୃତ୍ତିବାସ—        ରଥଙ୍କର ଶିଷ୍ୟ
ପ୍ରଥମପାଠେ ଆପଣ ।

ଦଶକ ପର୍ଯ୍ୟନ୍ତ ପଣକିଅ ମାନ
ଜାଣୁଥିଲେ ସେ ବ୍ରାହ୍ମଣ । ୧୫ ।
ହୋଇ ନ ଥିଲ ତ ଦୁରୁହ ସିଦ୍ଧାନ୍ତ
ଗଣନାରେ କାହା ଜ୍ଞାନ ।
ଅଚଣାର ଅପେ ଗୁରୁ ହେଲ, ବାପେ
ତାଗ୍ର ଚହ୍ନାଇଲେ ମାନ । ୧୬ ।
ଶ୍ରୀ ମଧୁସୁଦନ ମହାପାତ୍ର ପୁଣ
ହେଲେ ମନ୍ତ୍ର ଦୀକ୍ଷାଗୁରୁ ।
ସାଷ୍ଟାଙ୍ଗ ପ୍ରଣତ କର ବଦ୍ଧ ଭକ୍ତ
ତାଙ୍କୁ ଦେଖିଦେଲେ ଦୂରୁ । ୧୭ ।
ହସ୍ତୃତେ ଭୁମ୍ବର ଗୁରୁ ହେଲେ ଧୀର
ଅନନ୍ଦ ଖଡ଼ଗରାୟ ।
ଅଜ୍ ନାନା ଶାସ୍ତ୍ର ପଠନରେ ମାନ
ତୁମ୍ଭେ ଭୁମ୍ବର ସହାୟ । ୧୮ ।
ବ୍ୟାକରଣ ସ୍ମୃତି କାବ୍ୟ ଅଲଂକୃତ
ନାଟକ ବେଦାନ୍ତ ଅଦ ।
ପଢ଼ିବା ମଧ୍ୟରେ ଥାଅ ବଶେଷରେ
ଜ୍ୟୋତଷ ଜ୍ଞବ ଅସ୍ୱାଦ । ୧୯ ।
ସ୍ୱକଳ୍ପିତ ମାନ— ଯନ୍ତ୍ରକୁ ପ୍ରଧାନ
କର ତାହା ସାହାଯ୍ୟରେ ।
ଅନେକ ପ୍ରମାଣ ଛାଣିଲ ଅପଣ
ଖଣ୍ଡପତ୍ତନ ବଳ୍ୟରେ । ୨୦ ।
ବଂଶଢ ସରଳ ଶଲାକାରେ ସ୍ଥୂଳ
ଗୋଲ କରାଇ ନର୍ମିତ ।

ତିନ ଶତ ଷାଠି ଅଂଶରେ ତା ପିଠି
କରିଦେଲ ବିଭାଜିତ । ୨୧ ।
ଯାମ୍ୟ ସୌମ୍ୟ ଧ୍ରୁବ ଷଡ଼ବିନ୍ଦୁ ବିଷୁବ
କାନ୍ତ୍ୟାଦି ସକଳ ବୃତ୍ତ ।
ବାର ରାଶି ସପ୍ତ ବିଂଶତି ନକ୍ଷତ୍ର
ଗ୍ରହ ତହିଁ କଲ ଯୁକ୍ତ । ୨୨ ।

କଳ୍ପି ବହୁ କକ୍ଷ ଯନ୍ତ୍ରାଦିକ ଦକ୍ଷ
ହେଲ ଗ୍ରନ୍ଥ ପ୍ରଣୟନେ ।
ଯାହା ଯାହା ଲେଖି— ଅଛ ତାହା ଦେଖି
ଅଛ ବଞ୍ଚନେ ନୟନେ । ୨୩ ।

ପ୍ରାଚୀନ ସିଦ୍ଧାନ୍ତ— ସୂକ୍ଷ୍ମ ବିଗଣିତ
ଫଳ ତାରତମ୍ୟ ଯାକ ।
ଲେଖି ଲେଖି ତାଳ— ପଢ଼େ କେତେ କାଳ
ହରି ନେଲ ହେ ଜନକ । ୨୪ ।

ତେଣୁ ବହୁବିଧ କଳନାରୁ ସିଦ୍ଧ
କରି ଅରମ୍ଭିଲ ଗ୍ରନ୍ଥ
ସିଦ୍ଧାନ୍ତ-ଦର୍ପଣ ନାମେ ତାକୁ ପୁଣ
କରିଦେଲ ଚରିତାର୍ଥ । ୨୫ ।

ସୂକ୍ଷ୍ମ ଗଣନାର ଅନେକ ପ୍ରସ୍ତାର
ତହିଁରେ ନିହିତ କରି ।
ଅମୂଲ୍ୟ ରତନ ଭୂଷିତ ନୂତନ
ବିଷୟୁ ଦେଇଛ ଭରି । ୨୬ ।

ଯାଗ ବ୍ରତ * କର— ଗ୍ରହଣାଦଙ୍କର
ବର୍ଣ୍ଣନ୍ତ ଭବ ଚନ୍ତାରେ ।
ଶ୍ରୀ ମୁକ୍ତ ମଣ୍ଡପ ପଣ୍ଡିତ କଳାପ—
ମତେ ସେ ଗ୍ରନ୍ଥାନୁସାରେ ।
ନୂତନ ଦୃକ୍‌ତୁଲ୍ୟ ପଞ୍ଜିକା ଉତ୍ତଳ
ଦେଶେ ପ୍ରଚଳାଇ ଦେଲ ।
ତଥ୍ୟାଦରେ ବେଦ ଚନ୍ଦ୍ରଦଣ୍ଡେ [୧୪] † ଭେଦ
ଦୁର୍ଘଟନା ହର ନେଲ । ୨୮ ।
ଚନ୍ଦ୍ରାଙ୍କେ ତୁମ୍ଭଙ୍କୁ ଗଭର୍ଣ୍ଣମେଣ୍ଟକୁ
ସେ ମହେଶ † ମହାଶୟ ।
ଦେଲେ ସେ ଉପାଧି ତତ୍ତ୍ୱ ଯଥାବିଧି
ଶ୍ରୀମହାମହୋପାଧ୍ୟାୟ । ୨
ସେ କାଳେ କଟକ ନଗରରେ ଲୁକ
କମିଶନର ଯେ ଥିଲେ ।
ଢେଙ୍କାନାଳ ସାଥ— ଶଯ୍ୟ ପରବତ
ଉଚ୍ଚତା ଜାଣି ପୁଚ୍ଛିଲେ । ୩୦ ।
ପ୍ରଶ୍ନ ହେବା କ୍ଷଣେ ଲଗାଇ ଲକ୍ଷଣେ
ମାନ ଯନ୍ତ୍ର ଧର କରେ ।

---

* କରଗ୍ରହଣାଦ—ବିବାହ ଦ । † ସ୍ଥୂଳପଞ୍ଜିକାରେ ତଥ୍ୟାଦମାନଙ୍କର ପକ୍ଷମଧ୍ୟରେ ପ୍ରକୃତ ସମୟ ଅପେକ୍ଷା ୧୪ ଦଣ୍ଡ ପର୍ଯ୍ୟନ୍ତ ନ୍ୟୂନାଧିକ୍ୟ ହୁଏ । ସିଦ୍ଧାନ୍ତ ଦର୍ପଣର ୭ମ ପ୍ରକାଶ ୩୧ ଶ୍ଳୋକ ।

† ମହେଶଚନ୍ଦ୍ର ନ୍ୟାୟରତ୍ନ କଲିକତା ସଂସ୍କୃତ କଲେଜର ପ୍ରିନ୍‌ସପାଲ ଥିଲେ । ସେ କଟକକୁ ଆସି ସାମନ୍ତଙ୍କର ପରିଚୟ ପାଇ ତଦୀୟ ପାଣ୍ଡିତ୍ୟ ସମ୍ବନ୍ଧରେ ଗଭର୍ଣ୍ଣମେଣ୍ଟଙ୍କୁ ଲେଖିଥିଲେ ।

ପ୍ରକୃତ ଉତ୍ତର ଦେବାକୁ ସତ୍ୱର
ଲେଖି ଖଡ଼ ଖଣ୍ଡକରେ । ୩୧ ।

ସେହୁ ଯନ୍ତ୍ର ତୁଲେ ତୁମ୍ଭଙ୍କୁ ସେକାଳେ
ସାହେବ ସଙ୍ଗମ କରି ।
ଝାପିଲେ ଏ ଗିରି ହେ ଚନ୍ଦ୍ରଶେଖର
ଧନ୍ୟ ପ୍ରତିଭା ତୁମ୍ଭରି । ୩୨ ।

ଅମ୍ବିକା-ଶଙ୍କରେ ରହି ନିଃଶଙ୍କରେ
ମହେନ୍ଦ୍ର * ମାପ ଅଣିଲ ।
ଅନେକ ପ୍ରକାରେ ପରିଚିତ ଗିରି-
ମାନଙ୍କ ମାନ † ଜାଣିଲ । ୩୩ ।

ତୁମ୍ଭଙ୍କୁ ଏ ମାନ କହଇ ବଚନ
ପ୍ରସଙ୍ଗେ କଲି ସୂଚିତ ।
ତୁମ୍ଭର ଭଣିତ ବିଶୁଦ୍ଧ ଗଣିତ
ଲଣ୍ଡନରେ ପରୀକ୍ଷିତ । ୩୪ ।

ଶୁଣିଦଅ ଯାହା ଚିରକାଳ ତାହା
ସ୍ମରଣ-ପଥରେ ଥାଏ ।
ମନ୍ଦ କଥାଗୁଡ଼ି ଏ କାନରେ ପଶି
ସେ କାନରେ ଗଳିଯାଏ । ୩୫ ।

ପର-ହାନିକର ବିଷୟେ ତୁମ୍ଭର
ବଚନ କହେ ପ୍ଳୁତ ।
ଅକାରଣ ଶତ୍ରୁ— ଅପମାନ ହେତୁ
ଚିତ୍ତ ନୁହଇ ଚଳିତ । ୩୬ ।

---

* ମଞ୍ଜୁଷାର ମହେନ୍ଦ୍ର ପର୍ବତ । † ମାନ—ପରିମାଣ ।

ହୃଦୟ ଯେମନ୍ତ — ସନ୍ତୁଷ୍ଟ ତେମନ୍ତ
ଶରୀର ଅଟେ ଡୁମ୍ବର ।
ଦୁର୍ନାମ ଅନ୍ତର— ବୁଦ୍ଧି କରନ୍ତର
ଅଗ୍ନିମାନ୍ଦ୍ୟ ସହଚର । ୩୭ ।
ତପତ ଦୋହର— ତାମ୍ରମୁଦ୍ରା ଧର
ବୁଝି ଶିରର ଛେଦନେ ।
ଠିଅଣ୍ଟେ ଭର — ଦେଲବେଳେ ଗିର*
ଧୂମ ପୂରଇ ସଦନେ । ୩୮ ।
ସେପରି ଦ୍ୱିବାର — ବୁଝନ୍ତି କାହାର
ଅଣୁଏ ନ ନେଇ ଛଳେ ।
ମହା ଧୈର୍ଯ୍ୟ ବନ୍ତ — ଏକା ଥିଲ ରହୁ
ନଷ୍ଟମଣ୍ଟେ ସେକାଳେ । ୩୯ ।
ମହା ଶାନ୍ତମୟ — ଥିବରେ ସଦୟ
ଭବ ଥାଅ ପ୍ରଜାପାଳ ।
ଦୋଷୀ ଜନଠାରେ — ଦଣ୍ଡ ଥାଉ ଦୂରେ
ତୁଣ୍ଡରେ ନ ଅସେ ଗାଳି । ୪୦ ।
ବୟସୁ ଅସାର — ମଣି ଏ ସଂସାର
ପ୍ରାଣୀଙ୍କ ମଙ୍ଗଳ ଭାବ ।
ଈଶ୍ୱର କୃପାରେ — ଥାଏ ତୁମ୍ଭଠାରେ
ବଣ୍ଟର ସୁହୃଦ ଭାବ । ୪୧ ।
ମାନସ ସହସ୍ର — ଶାଖାରେ ଅଜସ୍ର
† ଉଡବରେ ଭ୍ରମୁଥାଏ ।

* ଗିର—ଚିକିତ୍ସା ବ୍ୟବସାୟୀ ବୈଦ୍ୟଙ୍କ ଜାତିବିଶେଷ ।
† ଉଡବ—ଆକାଶଚକ୍ର ।

ଏଣୁକରି ଭବ ବ୍ୟବହାରେ ତବ
ଔଦାସୀନ୍ୟ ଦେଖାଯାଏ । ୪୨ ।
ଗମନେ ଶୟନେ ଭୋଜନାଦିସ୍ଥାନେ
ନବ ଗଣିତ କଳନେ ।
ଶାରୀରିକ ସ୍ୱାସ୍ଥ୍ୟ ନ ଗଣ ଗାର୍ହସ୍ଥ୍ୟ—
ନିପୁଣ ହେ ତୁମ୍ଭେ ମନେ । ୪୩ ।
ଶିଶିର ଋତୁରେ ଅନେକ ରାତିରେ
ଆକାଶକୁ ଗୃହିଁ ଗୃହିଁ ।
ତତ୍ତ୍ୱ ଅବସ୍ଥାର କରୁଥାଅ କାର
ନିଷେଧକୁ ଘେନ ନାହିଁ । ୪୪ ।
ସୂର୍ଯ୍ୟ ଚନ୍ଦ୍ର ଗ୍ରହ(୧) ଗ୍ରହ ତାରା ଗ୍ରହ(୨)
ଗ୍ରହଯୁଦ୍ଧାଦ (୩) ସାଧନେ ।
ହୁଅଇ ଯେ ଭ୍ରାନ୍ତ ସେହ ତୁମ୍ଭ ଶାନ୍ତ
ରୂପ ହୋଇଥାଏ ମନେ । ୪୫ ।
ବାପୁ (୪) ଦେବ ସୁଧା—କର (୫) କେତେ ସୁଦ୍ଧା
ଦେଲେ ପ୍ରଶ୍ନ ପଣ୍ଡିତାଙ୍କୁ ।
ଅଙ୍କରେ ବସୁଧା ଭରିଦେଲ ସୁଧା
ଉତ୍ତର ଛଳେ ତାହାଙ୍କୁ । ୪୬ ।
ତବ ଶିଷ୍ୟ ବୃନ୍ଦ— ତାରି ମଧ୍ୟେ ଚନ୍ଦ୍ର
ଗଦାଧରଙ୍କୁ (୬) ତୋଷରେ
ଯେକାଳେ ଆପଣ ସିଦ୍ଧାନ୍ତ-ଦର୍ପଣ
ପଢ଼ାଉ ଥାଅ ପାଶରେ । ୪୭ ।

---

(୧) ସୂର୍ଯ୍ୟ ଚନ୍ଦ୍ର ଗ୍ରହଣ (୨) ଗ୍ରହ ତାରା ଯୁଜ (୩) ଗ୍ରହ ଗ୍ରହର ଯୁତି (୪) ବାପୁଦେବ ଶାସ୍ତ୍ରୀ (୫) ସୁଧାକର ଦ୍ୱିବେଦୀ (୬) ମଞ୍ଜୁଷାବାସୀ ଗଦାଧର ବିଦ୍ୟାଭୂଷଣ ।

ତାହାଙ୍କର ଦୃଢ଼ ପ୍ରଶ୍ନରୁ ନିଗୂଢ଼
ଜ୍ୟୋତିଷତତ୍ତ୍ୱ ବିବରଣେ ।
ତୁମ୍ଭର ଗମ୍ଭୀର ସୁନିର୍ମଳ ସ୍ୱର
ବିଶ୍ରାମ ନ କରେ କ୍ଷଣେ । ୪୮ ।
ଜ୍ୟେଷ୍ଠ ପୁତ୍ରଙ୍କର ସଂସ୍କୃତ ଈଶ୍ୱର—
ଭକ୍ତି ଗ୍ରନ୍ଥ ଅର୍ଥ କରି ।
ଗଦ ଗଦ ସ୍ୱର ପୁଲକ ନିକର
ଅଶ୍ରୁ ଶୋଭୁ ଥାଅ ଧରି । ୪୯ ।
ସେ ସବୁ ସମୟେ ଲୁଚି ଦେଖୁଥାଏଁ
ମୁଁ ହୋଇଥିବାରୁ ସାନ ।
ଏବେ ତାହା ଖାଲି ହେଉଅଛି କାଳି
ପଶ୍ଚ୍ୟେ ପ୍ରତୀୟମାନ । ୫୦ ।
ପାଇ ସେଗୀତଙ୍କ କନିଷ୍ଠ ପୁତ୍ରଙ୍କ
ଉପରେ ଗୃହଭାରକୁ ।
ସମର୍ପି ଶ୍ରୀକ୍ଷେତ୍ର ଲଭେ ସଦା ମାନ
ରଖିଲି ଶେଷ କାଳକୁ । ୫୧ ।
ନିତ୍ୟ ଅନୁଷ୍ଠାନ କୁଟୁମ୍ବ ପାଳନ
କାର୍ଯ୍ୟରୁ ବଳିଲେ ଦିନ ।
ଅନୁସରି ରହି କିଛି କିଛି ମୁହିଁ
କରୁଥାଏଁ ଅଧ୍ୟୟନ । ୫୨ ।
ଚିରଦିନ ସାଧ ପାଞ୍ଜି କାର୍ଯ୍ୟେ ବାଧ
ହେଲା ତୁମ୍ଭର ଆଦେଶେ ।
ତହୁଁ ତବ ଶାନ୍ତ ଯିବାରୁ ମୋ ପ୍ରତି
ସନ୍ତୁଷ୍ଟ ଥାଅ ବିଶେଷେ । ୫୩ ।

ମୋତେ ନାନାବିଧ ଶାସ୍ତ୍ରୀୟ ଔଷଧ
ନିର୍ବାହକୁ ଫରମାସ ।
ଅଙ୍କ ପ୍ରମାଣରେ ତାହା ନିର୍ମାଣରେ
ନ ଗଣନ୍ତେ ମୁଁ ଆୟାସ । ୫୪ ।

ମୋ ନାମକୁ ଧରି ଉଚ୍ଚଧ୍ୱନି କରି
ଡାକୁଥାଅ କେତେଥର ।
ସେ ଡାକ କି ଆଉ ଶୁଣିବ ଥାଉ ଥାଉ
କର୍ଣ୍ଣରେ ବାଜିବ ମୋର । ୫୫ ।

କୋମଳ ପୟର— ଦ୍ୱୟରେ ତୁମ୍ଭର
ଥିଲା ଊର୍ଦ୍ଧ୍ୱ ରେଖା ବେନି ।
ତେଣୁ ମଣେଁ ଏହା ଜନ୍ମିଥିଲ ମହା—
ପୁରୁଷ ଲକ୍ଷଣ ଘେନି । ୫୬ ।

ଆଉ କି ମିଳିବ ମୋତେ ସେ ପଲ୍ଲବ
ଶ୍ରୀଚରଣ ସମ୍ବାହନ ।
ଭାଙ୍ଗି ମୋ ବଡ଼ାଇ ସେ ସେବା ଛଡ଼ାଇ
ନେଲେ ସୁପର୍ଣ୍ଣବାହନ । ୫୭ ।

ହେଲେ ହେଁ ଦୁର୍ବଳ ତୁମ୍ଭେ ଅମ୍ଭ ବଳ
ଖଳଦଳଙ୍କର ତ୍ରାସ ।
ଏବେ ପଡ଼େ ମାଡ଼ କେଣେ ଗଲ ଛାଡ଼
ହେ ଧର୍ମମଲ୍ଲ ପୁରୁଷ । ୫୮ ।

ସର୍ବ କ୍ଷେତ୍ରୋତ୍ତମ ଶ୍ରୀ ପୁରୁଷୋତ୍ତମ
ଧାମରେ ତେଜିବ ତନୁ ।
ଏ ଦୃଢ଼ ସଂକଳ୍ପ ତୁମ୍ଭର ଅନଳ୍ପ
କାହିଁ ଜନ୍ମିଥିଲା ମନୁ । ୫୯ ।

ସିଦ୍ଧାନ୍ତ-ଦର୍ପଣ    ଗ୍ରନ୍ଥ ସମର୍ପଣ
କଲ୍ ଶ୍ରୀକୃଷ୍ଣ ଚରଣେ ।
ଶେଷ (୧) ଶ୍ଳୋକେ ସ୍ତବ    ବ୍ୟକ୍ତ କଲ ଭବ—
ବିଷୟ-ସିନ୍ଧୁ ତରଣେ । ୬୦ ।

ପତିତପାବନ    କ୍ଷେତ୍ରକୁ ଗମନ
କଲ ତୁମ୍ଭେ ଯେଉଁଦିନ ।
ଯାହାର ସମ୍ଭାର    ଲଗିଲା ଅପାର
ରୁଣ୍ଡ ହେଲେ ବନ୍ଧୁଜନ । ୬୧ ।

ଶଙ୍ଖନାଦ ହୁଳ—    ହୁଳ ଯେ ବହୁଳ
ମଙ୍ଗଳ ଗୀତ ସଙ୍ଗରେ ।
ମଁଳ ନାସ୍ର ଜନ    ଅଶେଷ କ୍ରନ୍ଦନ
କୋଳାହଳ ହେଲା ପୁରେ । ୬୨ ।

ଅଖଣ୍ଡ ତିଳକ    ପାଦ ପଦ୍ମ ଶଙ୍ଖ
ଚକ୍ରାଙ୍କିତ ତନୁ ହୋଇ ।
ରକ୍ତ ଶୁକ୍ଳ ବାସେ    ଗଳାରେ ହରଷେ
ତୁଳସୀ ମାଳା ଲମ୍ବାଇ । ୬୩ ।

ଶୁଭକ୍ଷଣ ଜାଣି    ହୋଇଲ ମେଲାଣି
ଇଷ୍ଟଦେବଙ୍କ ଆଗରୁ ।
ଯଷ୍ଟି ଖଣ୍ଡେ ଧରି    ଯୁଧିଷ୍ଠିର ପରି
ବାହାର ପଡ଼ିଲ ଘରୁ । ୬୪ ।

ସେକାଳେ କାହାର    ଅଶ୍ରୁଜଳଧାର
କେଜନ୍ମୁ ନ ପଡ଼ୁଛି ବହି ।

(୧) ଶେଷ ଶ୍ଳୋକେ—ସିଦ୍ଧାନ୍ତ ଦର୍ପଣର ଶେଷ ଶ୍ଳୋକରେ ।

ସୁଖାସନେ ବସେ କରିଗଲ ନିଜେ
ସମସ୍ତଙ୍କୁ କହି କହି । ୬୫ ।
ଗହଣରେ ମୋତେ ନେଲ ଶୁଦ୍ଧ ଚିତ୍ତେ
ଅହେ ଅନୁକମ୍ପାମୟି ।
ଜଗନ୍ନାଥ ଷେତ୍ରେ ପରବେଶ ମାତ୍ରେ
ହୋଇଲ ସ୍ଥିରହୃଦୟି । ୬୬ ।
ଶ୍ରୀକର ମୋ କରେ ଦେଇ ଧୀରେ ଧୀରେ
ଚାଲିଲ ନୀଳାଚଳକୁ ।
ଶ୍ରମ ଦରଶନ ଶେଷେ ଗଲ ରତ୍ନ-
ସିଂହାସନର ତଳକୁ । ୬୭ ।
ଚକାନୟନ ଶ୍ରୀହରି ଜଣାଇଲ ତହିଁ
ହେ ପ୍ରଭୋ କ୍ଷମ୍ୟରେ ଅଛି ।
ଏ ମହାପାତକୀ ଏ ଜନ୍ମେ ଏତିକି
ଦର୍ଶନ କରି ଯାଉଛି । ୬୮ ।
ତନୁ ବିସର୍ଜନ ସମୟ ଅସଲ
ହେଲା କି ଏ କଥା ମନେ ।
ଥାଏଁ ମୁଁ ବସିକି ନ ପାରେଁ ପଶିକି
ଭ୍ରମି ଅଣକା ଗହନେ । ୬୯ ।
ତାହୁଁ ଅସି ଜ୍ୱର ହୋଇ ମୃଦୁତର
ଶ୍ରୀଅଙ୍ଗେ ପ୍ରବେଶ କଲା ।
ଗୋପନରେ ରହି ପରିଶେଷେ ସେହି
ନିର୍ଦୋଷ ଅଙ୍ଗକୁ ଗଲା । ୭୦ ।
ମଣୁଛି ଅଯୁଷ ହୋଇବାର ଶେଷ
ତୁମ୍ଭଙ୍କୁ ତ ଥିଲା ଜଣା ।

ତେଣୁ ଭୈଷଜ୍ୟରେ ନ ରଖିଲ ଥରେ
ଅଭି ସେ ପୂର୍ବ ଧାରଣା । ୭୧ ।

କରୁଥାଅ ନାହିଁ ବେଳେ ବେଳେ ମୁହିଁ
ଦଅନ୍ତେ ଔଷଧରାଶି ।
ପ୍ରବଳ ସ୍ରୋତରେ ତୃଣ ପ୍ରକାରେ
ସବୁ ଯାଉଥାଏ ଭାସି । ୭୨ ।

ତେବେ ସଦାତୁର ଥାଏ ବ୍ୟଭତୁର
ନୋହେ ନିତ୍ୟ ଅନୁଷ୍ଠାନେ ।
ଗବାକ୍ଷରେ ନୀଳ— ଚକ୍ଷୁ କେବଳ
ଦୃଷ୍ଟି ବସିଥାଅ ଧ୍ୟାନେ । ୭୩ ।

ନିଧନ ଦ୍ୱିଦିନ ଥାଉଁ ଘନ ଘନ
ଉଠିଲା ଯାମଲ ହିକ୍କା ।
ଅହେ ଧୀରବର ତାହା ଦେଖି ମୋର
ମନ ପଡ଼ିଗଲା ଫିକା । ୭୪ ।

ମୃତ୍ୟୁ ପୂର୍ବ ଦିନ ନିଶ୍ୱାସ ପବନ
ଛାଡ଼ିଲ ଶିଶୁଙ୍କ ପରି ।
ତେବେ ହେଲେ ନିତ୍ୟ ଶାସ୍ତ୍ରସ୍ମୃ କୃତ୍ୟ
କରୁଥାଅ ଥରି ଥରି । ୭୫ ।
ନିର୍ଯ୍ୟାଣ ଦିବସେ ଡାକି ମୋତେ ପାଶେ
କହିଲ ମୋ ମୁଖ ଦୃଷ୍ଟି ।
ଚନ୍ଦ୍ର (୧) ଗଲା ତାର ଲାଗିଅଛି ତାର
ମୁଖରୁ ଉଚ୍ଚାର ନାହିଁ । ୭୬ ।

(୧) ଅଷ୍ଟମ ଚନ୍ଦ୍ର ଓ ନିଧନ ତାର ।

ସେ ସମୟେ କଣ୍ଠେ   ପଡ଼ିଲା କି ତୁଣ୍ଡେ
ଅଦ୍ଭୁତ ବଜ୍ରଦଣ୍ଡ ।
ବିବେକ ହଜିଲା   ମତି କେଣେ ଗଲା
ଧୃତି ହୋଇଲା ଖଣ୍ଡ ଖଣ୍ଡ । ୭୭ ।
ପରିସ୍ଫୁଟ ଗାନ   ହୋଇବାକୁ ମାନ
ଉଦ୍‌ବେଗକୁ ପ୍ରକଟାଇ ।
ହୋଇ ପରତନ୍ତ୍ର   ଉଠିଲ ସମନ୍ତ
ମୃତ୍ତିକା ଦେହେ ଲଗାଇ । ୭୮ ।
ତୁମ୍ଭଙ୍କୁ ମୁଁ ବେନି   ଭରେ ଥିଲି ଘେନି
ଚକ୍ଷୁରେ ଚଉଷ ମୁଦିଲେ ।
ଜଣେ ପରିଜନ   ଶୁଦ୍ଧ ଜଳେ ସ୍ନାନ
କରାଉଥିଲା ସେ କାଳେ । ୭୯ ।
ଘୋଷୁଥିଲି ଧୀରେ   ଧୀରେ ମୃଦୁସ୍ୱରେ
'ଜଗନ୍ନାଥ' ଏହି ନାମ ।
କି ଅନାୟାସରେ   ଅର୍ଦ୍ଧ ନିମେଷରେ
ଗମିଲ ବୈକୁଣ୍ଠ ଧାମ । ୮୦ ।
ଗ୍ରୀବା ଭଙ୍ଗ ଦେଖି   ମନେ ହୋଇ ଦୁଃଖୀ
ଉଚ୍ଚରେ ଡାକିଲି କେତେ ।
ନ ଶୁଣିଲ କିଛି   ମୂର୍ଚ୍ଛା ହୋଇଅଛି
ପରତେ ହୋଇଲା ମୋତେ । ୮୧ ।
ପଦ୍ମଫୁଲ ପରି   ଶ୍ରୀ ମୁଖର ଶିରୀ
ଦିଶୁଥିଲା ସେହିକାଳେ ।
କେ ଜାଣେ ଜନକ   ବିଚ୍ଛେଦ କନକ—
ଗର୍ଭ ( ୧ ) ଲେଖିଛି କପାଳେ । ୮୨ ।

[୧] କନକ ଗର୍ଭ—ବିଧାତା

ହଶଯ୍ୟରେ ପୁଣ ତୁମ୍ଭର ଶ୍ରବଣ
ଫୁଙ୍କି ଫୁଙ୍କି ଗଲ ଥକ ।
ଜାଣିଲି ମୋ ପାଣି— ଗତ ଚମତ୍କାଣି
ଧାତା ନେଇଗଲା ଠକ । ୮୩ ।

ଯେ କଳ୍ପ ପାଦପ ଦବ୍ୟ ଅନାତପ
ମିଳିଥିଲା ପୁଣ୍ୟ ବଳେ ।
କେ ଖଳ ସ୍ୱଭାବେ ତାକୁ ତାଡ଼ି ଏବେ
ପକାଇ ଦେଇଛ ତଳେ । ୮୪ ।

ପୁଣି ଧରି ଧୈର୍ଯ୍ୟ ତୁମ୍ଭ ଅନ୍ତକାର୍ଯ୍ୟ
ଶେଷ କଲି ଯଥାବିଧି ।
କେତେ ମନୋରଥ ହୋଇଗଲା ବ୍ୟର୍ଥ
ମୋହର ହେ କୃପାନିଧି । ୮୫ ।

ତେରଦିନ ମାତ୍ର ଭଳି ପୁଣ୍ୟକ୍ଷେତ୍ର
ହେ କ୍ଷତ୍ରିୟକୁଳ-ଇନ୍ଦୁ ।
ପୋଛି ନେଇଗଲ ମୋ ଜନନୀ ଭାଲ
ସୁନ୍ଦର ସିନ୍ଦୂର ବିନ୍ଦୁ । ୮୬ ।

ତୁଭାତରେ ଗଙ୍ଗ— ଶିଉଳି ସ୍ରୋତଙ୍ଗ
ଭଙ୍ଗେ ଫୁଲ ଝଡ଼ୁ ଯଥା ।
ବୁଣିଦେଇ ସିଥି ପରେ ଅଳଙ୍କୃତ
ଜନୟିତ୍ରୀ ହେଲେ ତଥା । ୮୭ ।

କଷ୍ଟତ ଭୋଗ ସେ ନ ରଖି ମାନସେ
ହୋଇଛନ୍ତି ତପସ୍ୱିନୀ ।
ତୁମ୍ଭ ଗୁଣଗାନେ ପୁଣ ହରିଧ୍ୟାନେ
ସାରନ୍ତି ଦିନ ଯାମିନୀ । ୮୮ ।

ପରିବାର ବନ୍ଧୁ ସହୃଦୟ ସାଧୁ
ସନ୍ଦୋହଙ୍କୁ ବନ୍ଦାଇଲ ।
ଏବେ ଶ୍ରୀ ଗୋବିନ୍ଦ ଚରଣାରବିନ୍ଦ
ଯୁଗଳକୁ ବନ୍ଦାଇଲ । ୮୯ ।
କାନ୍ଦିଲି ଉତ୍କଳ ଜନନୀ ବିକଳ
ଖବରେ ତୁମ୍ଭଙ୍କ ଚିନ୍ତ ।
ସକଳ ଜଣାରେ ଲୋତକ-ତୁଷାରେ
ତା ହୃଦ ଯାଉଛି ଛିନ୍ନ । ୯୦ ।
କାନ୍ଦିଲି ଅଚଳ କାନ୍ଦେ ତରୁକୁଳ
କାନ୍ଦୁଛନ୍ତି ଗୁଳ୍ମ ଲତା ।
କାନ୍ଦୁଛନ୍ତି ପଶୁ ପକ୍ଷୀଏ ଅଶ୍ରୁ
ଅଛି ମୋତେ ଅହେ ପିତା । ୯୧ ।
ଫିଟାଇ ପସରା ବସିଥିଲା ଧରା
ବଣିକରାଜରମଣୀ ।
ଧୀର ରତ୍ନରାଶି ମଧ୍ୟରୁ କେ ଆସି
ହରିନେଲା ହୀରା ମଣି । ୯୨ ।
ଶ୍ରୀ ପୁରୁଷୋତ୍ତମ ମାସରେ ଉତ୍ତମ
ବିଶ୍ୱାସ ଥାଏ ତୁମ୍ଭର ।
ପ୍ରବେଶିଲେ ସେହି ବ୍ରତୀ ହୋଇ ତହିଁ
ଅଖଣ୍ଡ ବିଧି ଆଚର । ୯୩ ।
ହେ ପୁଣ୍ୟତପୂର ଏଣୁ ଯେ ମାସର
ଶ୍ରୀ ପୁରୁଷୋତ୍ତମ ପଢ଼ ।
ସେ ପୁରୁଷୋତ୍ତମେ ଶ୍ରୀ ପୁରୁଷୋତ୍ତମେ
ତାଙ୍କ ପାଖେ କଲ ଗଢ଼ । ୯୪ ।

ତୁମ୍ଭର ଜନନ ଶକାବ୍ଦ ପ୍ରମାଣ
ସତରଶ ସତାବନ୍ ।
ପୁଣ ଅଠରଶ ଛବଶେ ଉମେଶ
ପୁରକୁ କଲ ଗମନ । ୯୫ ।
ତବ ପ୍ରତିମୂର୍ତ୍ତି ହସ୍ତାକ୍ଷର ପନ୍ତ
ଦେଖି ଧୃତି ଯାଏ ଟଳି ।
ଅଖଣ୍ଡ ଭାରତ ଭିତରେ ଭରତ
କରି ଦେଇ ଗଲ ଚଳି । ୯୬ ।
ତୁମ୍ଭେ ପୁଣ୍ୟମୟ ତୁମ୍ଭ ଗୁଣଚୟ
ଗାନେ ହେବ ପାପ କ୍ଷୟ
ତେଣୁ ଦେଇ ମନ କିଛି ବିରଚନ
କଲି ଅହେ ମହୋଦୟ । ୯୭ ।
ବର୍ଣ୍ଣିବାକୁ ତବ ପ୍ରଶଂସା ବୈଭବ
ମୋର ଅବା ବୁଦ୍ଧି କେତେ ।
ବର୍ଣ୍ଣିଲେ ହେଁ ତାତ ! ନ ଶୋଭିବ ତା'ତ
ପ୍ରସିଦ୍ଧି ବୋଲି ଜଗତେ । ୯୮ ।
ଏ ସଂସାର ବାଜି ନ ଲାଗନ୍ତା ଆଜି
ଏହା ଗୁଣି ଗୁଣି ଅହା ।
ରହିଥିଲ ଠାକ ନେଲେ ଏବେ ଡାକ
ସ୍ୱ ପୁରକୁ ଲକ୍ଷ୍ମୀକାନ୍ତା । ୯୯ ।
ଯେଉଁ ଦେଶେ ଜାତ ହୋଇ ଗାନପାତ
କଲ ଯାଇ ମୋକ୍ଷସ୍ଥଳେ ।
ସେ ଦେଶର ହିତେ କହୁଥାଅ ନିତ୍ୟେ
ପ୍ରଭୁ ପାଦପଦ୍ମ ତଳେ । ୧୦୦ ।

---

ସ୍ୱର୍ଗୀୟ ମହାତ୍ମାଙ୍କର ମଧ୍ୟମପୁତ୍ର ଶ୍ରୀଯୁକ୍ତ ଗଦାଧର ସିଂହ ସାମନ୍ତଙ୍କ କର୍ତ୍ତୃକ ବିରଚିତ ସଂସ୍କୃତ ପଦ୍ୟାବଳୀ :—

## ଶୋକ-ସ୍ମୃତିଃ

ଶ୍ରୀ ନୀଳଶୈଳବର ମୌଳି କଳାଧିନାଥ
ପାଥୋଜ ଜନ୍ମବର ପଦାନୁଗତଃ ସଦା ଯଃ ।
ସ ତ୍ୱଂ ବଘେଲକୁଳ କାନନ ଚନ୍ଦନ ଦ୍ରୋ
କ୍ୱାସି ପ୍ରସୀଦ ଜନକ ବ୍ରଜତୁ ବ୍ୟଥା ନଃ । ୧ ।

ଅର୍ଥ :—ହେ ପିତଃ ! ଆପଣ ଶ୍ରୀ ନୀଳାଦ୍ରିଚନ୍ଦ୍ର ଜଗନ୍ନାଥଙ୍କର ପଦ୍ମପାଦରେ ସର୍ବଦା ଅନୁଗତ ଥିଲେ ଏବଂ ବଘେଲବଂଶରୂପ ବନର ଚନ୍ଦନବୃକ୍ଷ ସ୍ୱରୂପ ଥିଲେ । ବର୍ତ୍ତମାନ ଆପଣ କେଉଁଠାରେ ଅଛନ୍ତି ? ଆପଣ ଆମ୍ଭମାନଙ୍କଠାରେ ପ୍ରସନ୍ନ ହୁଅନ୍ତୁ; ତଦ୍ଦ୍ୱାରା ଆମ୍ଭମାନଙ୍କର ବ୍ୟଥା ଦୂର ହେଉ । ୧ ।

ଗୋ ବିପ୍ର ଦେବ ଗୁରୁଭକ୍ତିଭରାନୁରକ୍ତ
ଦୀନ ପ୍ରପନ୍ନ ଜନ ପାଳନ ସକ୍ତ ଚେତଃ ।
ଉଲ୍ଲଂଘିତାମ୍ବୁଧି ସମୁଜ୍ଜ୍ୱଳ କୀର୍ତ୍ତିରାଶେ
କ୍ୱାସି ପ୍ରସୀଦ ଜନକ ବ୍ରଜତୁ ବ୍ୟଥା ନଃ । ୨ ।

ଅର୍ଥ :—ହେ ତାତ ! ଆପଣ ଗୋରୁ, ବ୍ରାହ୍ମଣ, ଦେବତା ଏବଂ ଗୁରୁ ଏମାନଙ୍କ ପ୍ରତି ବିଶେଷ ଭକ୍ତି କରୁଥିଲେ ଏବଂ ଦୀନ ଓ ଶରଣାଗତ ବ୍ୟକ୍ତିମାନଙ୍କର ପାଳନ ବିଷୟରେ ଅତ୍ୟନ୍ତ ଆସକ୍ତ ଥିଲେ । ଆପଣଙ୍କର ସମୁଜ୍ଜ୍ୱଳ କୀର୍ତ୍ତିରାଶି ସମୁଦ୍ର ଲଙ୍ଘନ କରିଥିଲା । ବର୍ତ୍ତମାନ ଆପଣ କେଉଁଠାରେ ଅଛନ୍ତି ? ଆପଣ ଆମ୍ଭମାନଙ୍କଠାରେ ପ୍ରସନ୍ନ ହୁଅନ୍ତୁ; ତଦ୍ଦ୍ୱାରା ଆମ୍ଭମାନଙ୍କର ବ୍ୟଥା ଦୂର ହେଉ । ୨ ।

ସ୍ୱୀୟୋଽଭଃ ପ୍ରଥତଯୁକ୍ତାଭୁତ ତତ୍ତ୍ୱନନ୍ଦ
ସିଦ୍ଧାନ୍ତଦର୍ପଣ ସମର୍ପଣ ମଚ୍ୟୁତସ୍ୟ ।
ଅଚ୍ଛଦ୍ୱମଧରୁଣ ପଦ୍ମପଦଂ ବଧାସ୍ୱ
କ୍ୱାସି ପ୍ରସୀଦ ଜନକ ବ୍ରଜତୁ ବ୍ୟଥା ନଃ । ୩ ।

ଅର୍ଥ :—ହେ ଜନକ ! ଆପଣ ସ୍ୱକୀୟ ଅତୁଳନୀୟ ପ୍ରତିଭାବଳରେ ଅଦ୍ଭୁତ ତତ୍ତ୍ୱ ନିହିତ କରି ଯେଉଁ ସିଦ୍ଧାନ୍ତ ଦର୍ପଣ ଗ୍ରନ୍ଥ ପ୍ରଣୟନ କରିଅଛନ୍ତି ତାହା ଅଚ୍ୟୁତଙ୍କର ସ୍ୱଚ୍ଛ ଅରୁଣବର୍ଣ୍ଣ ପାଦପଦ୍ମରେ ସମର୍ପଣ କରିଅଛନ୍ତି । ବର୍ତ୍ତମାନ ଆପଣ କେଉଁଠାରେ ଅଛନ୍ତି ? ଆପଣ ଆମ୍ଭମାନଙ୍କଠାରେ ପ୍ରସନ୍ନ ହୁଅନ୍ତୁ; ତଦ୍ୱାରା ଆମ୍ଭମାନଙ୍କର ବ୍ୟଥା ଦୂର ହେଉ । ୩ ।

ସଦ୍ଧର୍ମଶାସ୍ତ୍ର ସମୁଦୀରିତ କର୍ମ୍ମ ମର୍ମ୍ମ
ବିଜ୍ଞାନ ଶର୍ମ୍ମ ପରିପୂରିତ ମାନସସ୍ୟ ।
ତେ ସଂଶୟଚ୍ଛିଦଃ ସ୍ୱଜନା ରୁଦନ୍ତି
କ୍ୱାସି ପ୍ରସୀଦ ଜନକ ବ୍ରଜତୁ ବ୍ୟଥା ନଃ । ୪ ।

ଅର୍ଥ :—ହେ ପିତୃଦେବ ! ଆପଣଙ୍କର ଚିତ୍ତ ସକଳ ଧର୍ମଶାସ୍ତ୍ର କଥିତ କର୍ମ ସମୂହର ତତ୍ତ୍ୱଜ୍ଞାନରେ ପରିପୂର୍ଣ୍ଣ ଥିଲା ଏବଂ ଆପଣ ସଂଶୟ ସନ୍ଦେହ ମୋଚନ କରୁଥିଲେ । ଆପଣଙ୍କ ବିରହରେ ସ୍ୱଜନମାନେ ରୋଦନ କରୁଅଛନ୍ତି । ବର୍ତ୍ତମାନ ଆପଣ କେଉଁଠାରେ ଅଛନ୍ତି ? ଆପଣ ଆମ୍ଭମାନଙ୍କଠାରେ ପ୍ରସନ୍ନ ହୁଅନ୍ତୁ; ତଦ୍ୱାରା ଆମ୍ଭମାନଙ୍କର ବ୍ୟଥା ଦୂର ହେଉ । ୪ ।

ନୈବାପି ସୁନ୍ଦର ତନୁ ର୍ଗୁଣ ସୁନ୍ଦର ସ୍ତ୍ୱଂ
ଯଲ୍ଲୋ ଦୃଶାଂ ନନ୍ତୁ ଦୃଶାଂ ତମଭୂର୍ମନୋଭୂଃ ।

ତ୍ୱଂ ଗୃଣିଲ ସ୍ମ ଭପଥାଭଥିରେବ ଭୂମୌ
କ୍ୱାସି ପ୍ରସୀଦ ଜନକ ବ୍ରଜଭୂ ବ୍ୟଥା ନଃ । ୫ ।

ଅର୍ଥ :—ହେ ପିତଃ ! ଅପଣ ଅଙ୍ଗରେ ସୁନ୍ଦର ହୋଇ ନ ଥିଲେହେଁ ଗୁଣସମୂହଦ୍ୱାରା ଅତ୍ୟନ୍ତ ସୁନ୍ଦର ଥିଲେ ଏବଂ ମାତୃଗଣ ବ୍ୟକ୍ତିମାନଙ୍କର ଚକ୍ଷୁଃ ସମୀପରେ କନ୍ଦର୍ପ ତୁଲ୍ୟ ସ୍ୱରୂପ ଥିଲେ । ଏହି ପୃଥିବୀରେ ଆପଣହିଁ ଆମ୍ଭମାନଙ୍କ ସ୍ମୃତିପଥର ଏକମାତ୍ର ପଥିକ ଅଟନ୍ତି । ବର୍ତ୍ତମାନ ଅପଣ କେଉଁଠାରେ ଅଛନ୍ତି ? ଅପଣ ଆମ୍ଭମାନଙ୍କଠାରେ ପ୍ରସନ୍ନ ହୁଅନ୍ତୁ, ତଦ୍ୱାରା ଆମ୍ଭମାନଙ୍କର ବ୍ୟଥା ଦୂର ହେଉ । ୫ ।

ଗ୍ରନ୍ଥେଷୁ ଯୋ ହ ଭଗବଦ୍ ବିଷୟଂ ପଠିତ୍ୱା
ତତ୍ତ୍ୱାଭିଶଯ୍ୟ ଜନ ସାତ୍ତ୍ୱିକରୁଦ୍ଧକଣ୍ଠଃ ।
ଆନନ୍ଦ ଲୋତକ ପରିପ୍ଲୁତଦୃକ୍ ସଚତ୍ୱଂ
କ୍ୱାସି ପ୍ରସୀଦ ଜନକ ବ୍ରଜଭୂ ବ୍ୟଥା ନଃ । ୬ ।

ଅର୍ଥ :—ହେ ମହାଗୁରୋ ! ଭକ୍ତିଗ୍ରନ୍ଥମାନଙ୍କର ଭଗବଦ୍ ବିଷୟ ପାଠ କରିବା ସମୟରେ ସମଧିକ ତତ୍ତ୍ୱଜ୍ଞାନ ବଶତଃ ସାତ୍ତ୍ୱିକ ଭାବଦ୍ୱାରା ଆପଣଙ୍କର କଣ୍ଠ ରୁଦ୍ଧ ହେଉଥିଲା ଏବଂ ଚକ୍ଷୁ ଆନନ୍ଦାଶ୍ରୁରେ ପରିପୂର୍ଣ୍ଣ ହେଉଥିଲା । ବର୍ତ୍ତମାନ ଆପଣ କେଉଁଠାରେ ଅଛନ୍ତି ? ଆପଣ ଆମ୍ଭମାନଙ୍କଠାରେ ପ୍ରସନ୍ନ ହୁଅନ୍ତୁ; ତଦ୍ୱାରା ଆମ୍ଭମାନଙ୍କର ବ୍ୟଥା ଦୂର ହେଉ । ୬ ।

ଶୈଳାଟବୀବ୍ରଜ ଜଳ ସ୍ଥଳ ଯାନମାର୍ଗ
ପୌରାଙ୍ଗ ବୃନ୍ଦେଷୁ ନିର୍ଭୃତ ମାନଯନ୍ତଃ ।
ଅବସ୍ଥିତଂ ବହୁବଧାଂ ଗଣିତସ୍ୟ କୃତ୍ୱା
କ୍ୱାସି ପ୍ରସୀଦ ଜନକ ବ୍ରଜଭୂ ବ୍ୟଥା ନଃ । ୭ ।

ଅର୍ଥ:—ହେ ଜନକ ! ଆପଣ ସ୍ୱକୀୟ ମାନଯନ୍ତ୍ର ଧାରଣପୂର୍ବକ ପର୍ବତ, ଅରଣ୍ୟ, ଜଳ, ସ୍ଥଳ, ଯାତାୟାତ ମାର୍ଗ ଓ ପୌରାଙ୍ଗନମାନଙ୍କରେ ଗଣିତ ସମ୍ବନ୍ଧୀୟ ବହୁବିଧ ଅବସ୍ଥାର କରିଥିଲେ । ବର୍ତ୍ତମାନ ଆପଣ କେଉଁଠାରେ ଅଛନ୍ତି ? ଆପଣ ଆମ୍ଭମାନଙ୍କଠାରେ ପ୍ରସନ୍ନ ହୁଅନ୍ତୁ; ତଦ୍ଦ୍ୱାରା ଆମ୍ଭମାନଙ୍କର ବ୍ୟଥା ଦୂର ହେଉ । ୭ ।

ଶ୍ରୀଭାରତାଧିପତି ଦତ୍ତ ମହା ମହୋପା—
ଧ୍ୟାୟ ପ୍ରଶସ୍ତ ପଦମାପ୍ତ ବତୋଽପି ଚତ୍ତେ ।
ନୈବା ବକାଶମଗମଦ୍ ଭବ ଗର୍ବଲେଶଃ
କ୍ୱାସି ପ୍ରସୀଦ ଜନକ ବ୍ରଜତୁ ବ୍ୟଥା ନଃ । ୮ ।

ଅର୍ଥ:—ହେ ତାତ ! ଶ୍ରୀ ଭାରତାଧିପତି ଆପଣଙ୍କୁ ପ୍ରଶସ୍ତ ମହା-ମହୋପାଧ୍ୟାୟ ଉପାଧିରେ ଭୂଷିତ କରିଥିଲେ ହେଁ ଆପଣଙ୍କ ହୃଦୟରେ ସାଂସାରିକ ଗର୍ବ ଲବ ମାତ୍ର ସ୍ଥାନ ପାଇ ନ ଥିଲା । ବର୍ତ୍ତମାନ ଆପଣ କେଉଁଠାରେ ଅଛନ୍ତି ? ଆପଣ ଆମ୍ଭମାନଙ୍କଠାରେ ପ୍ରସନ୍ନ ହୁଅନ୍ତୁ; ତଦ୍ଦ୍ୱାରା ଆମ୍ଭମାନଙ୍କର ବ୍ୟଥା ଦୂର ହେଉ । ୮ ।

ପ୍ରଶ୍ନେ କୃତେହ ଭବତା ଭ୍ରମଭଞ୍ଜକେନ
ଗମ୍ଭୀର ଭାଷଣ ଭରସ୍ୟ ସଦୁତ୍ତରସ୍ୟ ।
ଅପ୍ୟାଶୁ ମୂର୍ଖ ହୃଦୟଙ୍ଗମତା ବଭେନେ
କ୍ୱାସି ପ୍ରସୀଦ ଜନକ ବ୍ରଜତୁ ବ୍ୟଥା ନଃ । ୯ ।

ଅର୍ଥ:—ହେ ପିତଃ ! କେହି ଆପଣଙ୍କୁ କୌଣସି ପ୍ରଶ୍ନ କଲେ ଆପଣ ଗମ୍ଭୀର ଓ ସ୍ପଷ୍ଟ ଭାବରେ ତାହାର ଏପରି ସଦୁତ୍ତର ପ୍ରଦାନ କରୁଥିଲେ ଯେ ସେଥିରେ ମୂର୍ଖମାନଙ୍କର ସୁଦ୍ଧା ହୃଦୟରୁ ସନ୍ଦେହ ଦୂର ହେଉଥିଲା । ବର୍ତ୍ତମାନ ଆପଣ କେଉଁଠାରେ ଅଛନ୍ତି ? ଆପଣ

ଅସ୍ମାନଙ୍କଠାରେ ପ୍ରସନ୍ନ ହୁଅନ୍ତୁ; ତଦ୍ଦ୍ୱାରା ଅସ୍ମାନଙ୍କର ବ୍ୟଥା ଦୂର ହେଉ । ୯ ।

କ୍ୱାତେଽପି ତେ ପ୍ରଚୁର ଶାସ୍ତ୍ର ସୁପଣ୍ଡିତତ୍ୱେ
ମୂଢାଚ କଣ୍ଠଦବଗନ୍ତୁ ମପୀଚ୍ଛୁକୋଽଭୂଃ ।
ଧୂର୍ତ୍ତାଭିମାନ ଲବମାନସ ହେ ସୁବେ ତ୍ୱଂ
କ୍ୱାସି ପ୍ରସୀଦ ଜନକ ବ୍ରଜତୁ ବ୍ୟଥା ନଃ । ୧୦ ।

ଅର୍ଥ—ହେ ସୁବେ । ବହୁ ଶାସ୍ତ୍ରରେ ଆପଣଙ୍କର ପ୍ରଭୁତ ପାଣ୍ଡିତ୍ୟ ଥିଲେ ହେଁ ମୂର୍ଖଠାରୁ ସୁଦ୍ଧା କଛି ଶିକ୍ଷଣୀୟ ଥିଲେ ତାହା ଅବଗତ ହେବା ନିମିତ୍ତ ଆପଣ ଇଚ୍ଛୁକ ଥିଲେ ଏବଂ ଲବ ମାତ୍ର ପାଣ୍ଡିତ୍ୟାଭିମାନ ଭବଦୀୟ ହୃଦୟରେ ସ୍ଥାନ ପାଇ ନ ଥିଲା । ବର୍ତ୍ତମାନ ଆପଣ କେଉଁଠାରେ ଅଛନ୍ତି ? ଆପଣ ଅସ୍ମାନଙ୍କଠାରେ ପ୍ରସନ୍ନ ହୁଅନ୍ତୁ; ତଦ୍ଦ୍ୱାରା ଅସ୍ମାନଙ୍କର ବ୍ୟଥା ଦୂର ହେଉ । ୧୦ ।

କଲ୍ୟାଦ ନକ୍ତଶୟନାନ୍ତ ସମସ୍ତ କର୍ମ
ମନ୍ତ୍ରଂ ବିନୈବ ବହୃତଂ ଭବତା ନ ନିତ୍ୟମ୍ ।
ଗାର୍ହସ୍ଥ୍ୟବାନପି ଭବାନରିଷଟ୍କ ଜେତା
କ୍ୱାସି ପ୍ରସୀଦ ଜନକ ବ୍ରଜତୁ ବ୍ୟଥା ନଃ । ୧୧ ।

ଅର୍ଥ—ହେ ଜନକ । ଆପଣ ପ୍ରାତଃକାଳରୁ ଆରମ୍ଭ କରି ରାତିରେ ଶୟନ ପର୍ଯ୍ୟନ୍ତ ସମସ୍ତ କାର୍ଯ୍ୟ ମନ୍ତ୍ର ପାଠପୂର୍ବକ ସମାଧାନ କରୁଥିଲେ । ବିନା ମନ୍ତ୍ରରେ ଆପଣଙ୍କର କୌଣସି କାର୍ଯ୍ୟ ଅନୁଷ୍ଠିତ ହେଉ ନ ଥିଲା । ଆପଣ ଜଣେ ପ୍ରଧାନ ଗୃହସ୍ଥ ହେଲେ ହେଁ କାମ କ୍ରୋଧାଦ ଷଡ଼୍‌ରିପୁକୁ ଜୟ କରିଥିଲେ । ବର୍ତ୍ତମାନ ଆପଣ କେଉଁଠାରେ

ଅଛନ୍ତି ? ଆପଣ ଆମ୍ଭମାନଙ୍କଠାରେ ପ୍ରସନ୍ନ ହୁଅନ୍ତୁ; ତଦ୍ଦ୍ୱାରା ଆମ୍ଭମାନଙ୍କର ବ୍ୟଥା ଦୂର ହେଉ । ୧୧ ।

ଦତ୍ତ୍ୱା ବ୍ରିଟୀଶପତିନା ସ୍ୱଚସ୍ବଯୁ ମୁଦ୍ରା
ଯାସ୍ତାଃ ସମାହୃ ଶବ୍ଦତେଛି ନୃପୋ ଜଗାଦ ।
କିନ୍ତୁ ତ୍ୱଦୀୟହୃଦ ଲୁଠକଡଂ ନ କଞ୍ଚିତ୍
କ୍ୱାସି ପ୍ରସୀଦ ଜନକ ବ୍ରଜତୁ ବ୍ୟଥା ନଃ । ୧୨ ।

ଅର୍ଥ:—ହେ ଜନକ ! ବ୍ରିଟୀଶାଧିପତି ଆପଣଙ୍କୁ ଜୀବନକାଳାବଧି ପେନ୍ସନ ସ୍ୱରୂପ ମାସିକ ଟ ୫୦୯ ପ୍ରଦାନ କରିଥିଲେ । ପରଶୁରାମ ନରବର ସିଂହ ତାହା ଶୁଣିପାରି ଅନ୍ୟପ୍ରଦତ୍ତ ଧନ ବିଷ୍ଠାସଦୃଶ ବୋଲି କହିଥିଲେ ହେଁ ଆପଣଙ୍କର ଗମ୍ଭୀର ହୃଦୟ ସେଥିରେ ବିଚଳିତ ହୋଇ ନ ଥିଲା । ବର୍ତ୍ତମାନ ଆପଣ କେଉଁଠାରେ ଅଛନ୍ତି ? ଆପଣ ଆମ୍ଭମାନଙ୍କଠାରେ ପ୍ରସନ୍ନ ହୁଅନ୍ତୁ; ତଦ୍ଦ୍ୱାରା ଆମ୍ଭମାନଙ୍କର ବ୍ୟଥା ଦୂର ହେଉ । ୧୨ ।

ସତ୍ୟଂ ବଚ୍ଚେ ଭଣିତୁ ମାର୍ଯ୍ୟ ଯଥା ପ୍ରସନ୍ନୋ
ମିଥ୍ୟା କଥାଂ କଥୟିତୁଂ ଚ ତଥା ବିଷଣ୍ଣଃ ।
ଏତଂ ସ୍ୱ ପୈତୃକଗୁଣଂ ଧୃତବାନ୍ ସଚ ତ୍ୱଂ
କ୍ୱାସି ପ୍ରସୀଦ ଜନକ ବ୍ରଜତୁ ବ୍ୟଥା ନଃ । ୧୩ ।

ଅର୍ଥ:—ହେ ପିତଃ ! ସତ୍ୟବାକ୍ୟ କହିବା ବିଷୟରେ ଆପଣ ଯେପରି ପ୍ରସନ୍ନ ଥିଲେ କେହି ମିଥ୍ୟା କହିବାକୁ ଅନୁରୋଧ କଲେ ସେଥିପାଇଁ ସେହିପରି ବିଷଣ୍ଣ ହେଉଥିଲେ । ଆପଣଙ୍କର ପିତା ସତ୍ୟବାଦୀ ଥିବାରୁ ଆପଣ ସେହି ପୈତୃକ ଗୁଣ ଧାରଣ କରିଥିଲେ । ବର୍ତ୍ତମାନ ଆପଣ କେଉଁଠାରେ ଅଛନ୍ତି ? ଆପଣ ଆମ୍ଭମାନଙ୍କଠାରେ ପ୍ରସନ୍ନ ହୁଅନ୍ତୁ; ତଦ୍ଦ୍ୱାରା ଆମ୍ଭମାନଙ୍କର ବ୍ୟଥା ଦୂର ହେଉ । ୧୩ ।

ଅର୍ଶୋଽଲ୍ପବୃଦ୍ଧ୍ୟନଲମାନ୍ଦ୍ୟଭବ ବେଗଯୁକ୍ତଃ
କାଲେ ଜ୍ୱରବ୍ୟଥନଶ୍ଚ ତଥୋଽପି ଖିନ୍ନଃ ।
ବାକ୍କାୟମାନସଭବଶ୍ରମସାଧକ ସ୍ତ୍ୱଂ
କ୍ୱାସି ପ୍ରସୀଦ ଜନକ ବ୍ରଜତୁ ବ୍ୟଥା ନଃ । ୧୪ ।

ଅର୍ଥ:—ହେ ଗୁରୋ ! ଆପଣ ଅର୍ଶ, ଅଳ୍ପବୃଦ୍ଧି ଓ ଅଗ୍ନିମାନ୍ଦ୍ୟ ବେଗରେ ଆକ୍ରାନ୍ତ ହୋଇଥିଲେହେଁ ଏବଂ ସମୟେ ସମୟେ ଜ୍ୱର ବେଗରେ ପୀଡ଼ିତ ହେଉଥିଲେହେଁ ଯନ୍ତ୍ରନିର୍ମାଣଜନିତ କାୟିକ, ପ୍ରଶ୍ନୋତ୍ତର ଦାନଜନିତ ବାଚିକ ଏବଂ ତତ୍ତ୍ୱାନ୍ୱେଷଣଜନିତ ମାନସିକ ପରିଶ୍ରମରୁ ବିରତ ହେଉ ନ ଥିଲେ । ବର୍ତ୍ତମାନ ଆପଣ କେଉଁଠାରେ ଅଛନ୍ତି ? ଆପଣ ଆମ୍ଭମାନଙ୍କଠାରେ ପ୍ରସନ୍ନ ହୁଅନ୍ତୁ; ତଦ୍ଦ୍ୱାରା ଆମ୍ଭମାନଙ୍କର ବ୍ୟଥା ଦୂର ହେଉ । ୧୪ ।

ଆସୀତ୍ ସଦୈବ ସବଧେ ତବ ଦୁର୍ବିଧତ୍ୱଂ
କୋଽପି ପ୍ରଭୁସ୍ତଦପନେତୁମହୋ ନ ଦକ୍ଷଃ ।
ତସ୍ମାତ୍ତ୍ୱଦୀୟହୃଦୟଂ ନହି ଦୂୟତେ ସ୍ମ
କ୍ୱାସି ପ୍ରସୀଦ ଜନକ ବ୍ରଜତୁ ବ୍ୟଥା ନଃ । ୧୫ ।

ଅର୍ଥ:—ହେ ପିତୃଦେବ ! ଦାରିଦ୍ର୍ୟ ସର୍ବଦା ଆପଣଙ୍କର ସହଚର ହୋଇଥିଲା । ତାହା ଦୂର କରିବାକୁ କେହି ସମର୍ଥ ହୋଇ ନ ଥିଲେ । ତଥାପି ସେଥିପାଇଁ ଆପଣଙ୍କର ମନ ଦୁଃଖିତ ହେଉ ନ ଥିଲା । ବର୍ତ୍ତମାନ ଆପଣ କେଉଁଠାରେ ଅଛନ୍ତି ? ଆପଣ ଆମ୍ଭମାନଙ୍କଠାରେ ପ୍ରସନ୍ନ ହୁଅନ୍ତୁ; ତଦ୍ଦ୍ୱାରା ଆମ୍ଭମାନଙ୍କର ବ୍ୟଥା ଦୂର ହେଉ । ୧୫ ।

ବର୍ଷଦ୍ୱୟଂ ସମ ମହାର୍ଣ ମୟୁ ତ୍ୱୟୈବ
ପଞ୍ଜୀ ସମଗ୍ରଗଣନୋତ୍କଳ ଦେଶ ଯୋଗ୍ୟା ।

ମତ୍ପ୍ରଚ୍ଛିନ୍ନତ୍ତ୍ୱ ସମୟଃ ସ ଗତଃ ସ୍ମୃତଃ ସନ୍
କ୍ୱାସି ପ୍ରସୀଦ ଜନକ ବ୍ରଜତୁ ବ୍ୟଥା ନଃ । ୧୬ ।

ଅର୍ଥ:—ହେ ପିତଃ । ମୁଁ ଆପଣଙ୍କ ସହିତ ଦୁଇବର୍ଷକାଳ ଉତ୍କଳର ଉପଯୋଗୀ ସମଗ୍ର ପଞ୍ଜିକାର ଗଣନା କରିଥିଲି । ସେହି ସମୟ ଅତୀତ ହୋଇଥିଲେହେଁ ସମ୍ପ୍ରତି ସ୍ମୃତିପଥାରୂଢ଼ ହୋଇ ମୋହର ମର୍ମବେଦନା ଜାତ କରୁଅଛି । ବର୍ତ୍ତମାନ ଆପଣ କେଉଁଠାରେ ଅଛନ୍ତି ? ଆପଣ ଆମ୍ଭମାନଙ୍କଠାରେ ପ୍ରସନ୍ନ ହୁଅନ୍ତୁ; ତଦ୍ଦ୍ୱାରା ଆମ୍ଭମାନଙ୍କର ବ୍ୟଥା ଦୂର ହେଉ ।

ଷୋଢ଼ାପ୍ରଭେଦ ଉଦିତୋ ମୁନିଭିଃ ସ ଭୂମ୍ନା
ଶ୍ରାଦ୍ଧେ ତିଥୌ ନିବସତି ସ୍ୱନିବନ୍ଧପଞ୍ଜ୍ୟାମ୍ ।
ନାନ୍ୟତ୍ର ତଦ୍ଧି ଉବତୋତ୍କଳ ଏବ ଧନ୍ୟଃ
କ୍ୱାସି ପ୍ରସୀଦ ଜନକ ବ୍ରଜତୁ ବ୍ୟଥା ନଃ । ୧୭ ।

ଅର୍ଥ:—ହେ ଜନକ । ଶ୍ରାଦ୍ଧତିଥି ବିଷୟରେ ମୁନିମାନଙ୍କ କର୍ତ୍ତୃକ ପ୍ରଦର୍ଶିତ ଛଅପ୍ରକାର ପ୍ରଭେଦ ଭବଦୀୟ ପଞ୍ଜିକାରେ ସ୍ୱୀକୃତ ହୋଇଅଛି । ତାହା ଅନ୍ୟସ୍ଥାନର ପଞ୍ଜିକାରେ ଦେଖାଯାଏ ନାହିଁ । ଏଣୁ ଆପଣଙ୍କୁ ପାଇ ଉତ୍କଳ ଧନ୍ୟ ହୋଇଥିଲା । ବର୍ତ୍ତମାନ ଆପଣ କେଉଁଠାରେ ଅଛନ୍ତି ? ଆପଣ ଆମ୍ଭମାନଙ୍କଠାରେ ପ୍ରସନ୍ନ ହୁଅନ୍ତୁ; ତଦ୍ଦ୍ୱାରା ଆମ୍ଭମାନଙ୍କର ବ୍ୟଥା ଦୂର ହେଉ । ୧୭ ।

ମତ୍ପାଣି ଦତ୍ତକର ମଧ୍ୱନି କାଲକନ୍ୟା—
କ୍ଲାନ୍ତଂ ସ୍ମୃତେଽଗମୟ୍ ପିତ୍ୟ ସକୃଦ୍‌ଭବନ୍ତମ୍ ।
ଫଦ୍ଗୁଣ୍ୟତୋଽଦ୍ୟ ପରତନ୍ତ୍ରବ ଶୀର୍ଣ୍ଣମୂର୍ତ୍ତିଃ
କ୍ୱାସି ପ୍ରସୀଦ ଜନକ ବ୍ରଜତୁ ବ୍ୟଥା ନଃ । ୧୮ ।

ଅର୍ଥ:—ହେ ତାତ । ଆପଣ ଜରଜାନ୍ତ ହୋଇଥିବାରୁ ମୁଁ ହସ୍ତଧାରଣପୂର୍ବକ ଆପଣଙ୍କୁ ଅନେକବାର ମାର୍ଗରେ ଚଳାଉଥିଲି । ତାହା

ସ୍ମରଣ କରିବାରୁ ଅଦ୍ୟ ଚତୁର୍ଦ୍ଦିଗରେ ମୋତେ ଭବଦୀୟ ଶୀର୍ଣ୍ଣମୂର୍ତ୍ତି ଦେଖାଯାଉଅଛି । ବର୍ତ୍ତମାନ ଆପଣ କେଉଁଠାରେ ଅଛନ୍ତି ? ଆପଣ ଆମ୍ଭମାନଙ୍କଠାରେ ପ୍ରସନ୍ନ ହୁଅନ୍ତୁ; ତଦ୍ଦ୍ୱାରା ଆମ୍ଭମାନଙ୍କର ବ୍ୟଥା ଦୂର ହେଉ । ୧୮ ।

ନୀଳାଚଳସ୍ଥ ପୁରୁଷୋତ୍ତମ ସେବକସ୍ୟ
ତନ୍ମାସି ତତ୍ଭୁବି ଚ ବିଚ୍ୟୁତ ବିଗ୍ରହସ୍ୟ
ଅସ୍ତ୍ୟେଽଧୁନା ତବ ଜରତ୍ପ୍ରତିମୂର୍ତ୍ତିରେବ
କ୍ୱାସି ପ୍ରସୀଦ ଜନକ ବ୍ରଜତୁ ବ୍ୟଥା ନଃ । ୧୯ ।

ଅର୍ଥ:—ହେ ପିତୃଦେବ ! ଆପଣ ନୀଳାଚଳବାସୀ ଶ୍ରୀପୁରୁଷୋତ୍ତମଙ୍କର ସେବକ୍ସ ଥିବାରୁ ସେହି ପୁରୁଷୋତ୍ତମ କ୍ଷେତ୍ରରେ ଓ ପୁରୁଷୋତ୍ତମ ମାସରେ ଦେହ ତ୍ୟାଗ କଲେ । ଅଧୁନା ଆପଣଙ୍କର ସେହି ଶୀର୍ଣ୍ଣ ପ୍ରତିମୂର୍ତ୍ତି ବିଦ୍ୟମାନ ରହିଅଛି । ବର୍ତ୍ତମାନ ଆପଣ କେଉଁଠାରେ ଅଛନ୍ତି ? ଆପଣ ଆମ୍ଭମାନଙ୍କଠାରେ ପ୍ରସନ୍ନ ହୁଅନ୍ତୁ; ତଦ୍ଦ୍ୱାରା ଆମ୍ଭମାନଙ୍କର ବ୍ୟଥା ଦୂର ହେଉ । ୧୯ ।

ଆବାଳ ବୃଦ୍ଧ ବନିତା ଶ୍ରୁତ ବକ୍ତ୍ର ହୃଦ୍ଭିଃ
ଘର୍ଣୀଲତା ତବ ସିତାଭ୍ରସିତାଧୁନୈବ ।
ବର୍ତ୍ତି କୀର୍ତ୍ତିରବନୀବଲୟେ ସମସ୍ତା
କ୍ୱାସି ପ୍ରସୀଦ ଜନକ ବ୍ରଜତୁ ବ୍ୟଥା ନଃ । ୨୦ ।

ଅର୍ଥ:—ହେ ପିତଃ ! ଆପଣଙ୍କର ସେହି କର୍ପୂର-ଶୁଭ୍ର କୀର୍ତ୍ତିକୁ ଆବାଳବୃଦ୍ଧବନିତା ସମସ୍ତେ କର୍ଣ୍ଣରେ ଶୁଣୁଅଛନ୍ତି, ମୁଖରେ କୀର୍ତ୍ତନ କରୁଅଛନ୍ତି ଏବଂ ହୃଦୟରେ ଅନୁଭବ କରୁଅଛନ୍ତି । ସୁତରାଂ ସେହି କୀର୍ତ୍ତି ପୃଥିବୀର ସର୍ବତ୍ର ବିଦ୍ୟମାନ ରହିଅଛି । ବର୍ତ୍ତମାନ ଆପଣ କେଉଁଠାରେ ଅଛନ୍ତି ? ଆପଣ ଆମ୍ଭମାନଙ୍କଠାରେ ପ୍ରସନ୍ନ ହୁଅନ୍ତୁ; ତଦ୍ଦ୍ୱାରା ଆମ୍ଭମାନଙ୍କର ବ୍ୟଥା ଦୂର ହେଉ । ୨୦ ।

ଲବ୍ଧାସୀମଗୁଣଂ ପରର୍ଜିତବପଦ୍‌ବଦ୍ଧାମୃତତ୍ୱଂ ସଦା
ବଦ୍ଧାନନ୍ତପଥଂ ନଗୂଢ଼ ଗଣିତସ୍ୟୋଦ୍ଧାର କର୍ମକ୍ଷମମ୍ ।
ବୋଦ୍ଧାରଂ ଶ୍ରୁତକର୍ମଣାମପି ଗୁରୌବଦ୍ଧାଞ୍ଜଳିଂ ସାଙ୍ଗକ—
ଶ୍ରାଦ୍ଧାଦ୍ୟୁନ୍ନନସ୍ତ ସ୍ମରାମିପିତରଂ ସିଦ୍ଧାନ୍ତଚୂଡ଼ାମଣିମ୍ । ୨୧ ।

ଅର୍ଥ:—ଯେ ଅସୀମ ଗୁଣଲାଭ କରିଥିଲେ, ଶତ୍ରୁର ସୃଷ୍ଟ ବିପଦ ଦେଖିଲେ ଯାହାଙ୍କର ଶତ୍ତ୍ୱ ଅହତ ହେଉଥିଲା, ଯେ ଜ୍ଞାନଦ୍ୱାରା ଅନନ୍ତମାର୍ଗକୁ ପରିପୂର୍ଣ୍ଣ କରିଥିଲେ, ଯେ ନିଗୂଢ଼ ଗଣିତର ଉଦ୍ଧାରକାର୍ଯ୍ୟରେ ସମର୍ଥ ଥିଲେ, ଯେ ବେଦବିହିତ କର୍ମମାନଙ୍କ ବିଷୟରେ ଅଭିଜ୍ଞ ଥିଲେ, ଯେ ଗୁରୁଜନଙ୍କ ନିକଟରେ ସର୍ବଦା ବଦ୍ଧକରମୁଷ୍ଟ ହୋଇ ରହୁଥିଲେ ଏବଂ ଯେ ଶ୍ରାଦ୍ଧାଦିକାର୍ଯ୍ୟର ପୂର୍ଣ୍ଣତାନିମିତ୍ତ ଉତ୍କଣ୍ଠିତମନା ଥିଲେ ସେହି ସର୍ବଶ୍ରେଷ୍ଠ ସିଦ୍ଧାନ୍ତୀ ମହାଶୟ ପିତୃଦେବଙ୍କୁ ସ୍ମରଣ କରୁଅଛି । ୨୧ ।

ସ୍ପର୍ଦ୍ଧାଲେଶବିବର୍ଜିତଂ ପରଗୁଣଶ୍ରଦ୍ଧାସ୍ପଦଂ ନିତ୍ୟଶୋ
ମୂର୍ଦ୍ଧାସେବିତ ବିପ୍ରପାଦରଜସଂ ବୃଦ୍ଧାଳିବାକ୍ୟାନୁଗମ୍ ।
ଅଦ୍ଧା ଶ୍ୟାମଲଶୈଳନାଥ କରୁଣାସିଦ୍ଧାସ୍ମପୂର୍ବାଶୟଂ
ଶୁଦ୍ଧାନ୍ତଃକରଣଂ ସ୍ମରାମିପିତରଂ ସିଦ୍ଧାନ୍ତଚୂଡ଼ାମଣିମ୍ । ୨୨ ।

ଅର୍ଥ:—ଯାହାଙ୍କ ହୃଦୟରେ ଅନ୍ୟକୁ ପରାଭବ କରିବାର ଭାବ ଲବ ମାତ୍ର ନ ଥିଲା, ଯେ ପରଗୁଣରେ ଶ୍ରଦ୍ଧାଳୁ ଥିଲେ, ଯେ ସର୍ବଦା ବ୍ରାହ୍ମଣ-ପାଦଧୂଳିକୁ ମସ୍ତକରେ ଧାରଣ କରୁଥିଲେ, ଯେ ବୃଦ୍ଧସମୂହର ବାକ୍ୟପାଳନରେ ତତ୍ପର ଥିଲେ, ନୀଳାଦ୍ରିନାଥ ଜଗନ୍ନାଥଙ୍କ କୃପାରୁ ଯାହାଙ୍କର ପୂର୍ବବାସନା ଯଥାର୍ଥଭାବରେ ସଫଳ ହୋଇଥିଲା ଏବଂ ଯାହାଙ୍କର ମନ ସର୍ବଦା ପବିତ୍ର ଥିଲା ସେହି ସର୍ବଶ୍ରେଷ୍ଠ ସିଦ୍ଧାନ୍ତୀ ମହାଶୟ ପିତୃଦେବଙ୍କୁ ସ୍ମରଣ କରୁଅଛି । ୨୨ ।

**ସମାପ୍ତ**